# ଭୀମରାଓ

ସଂପାଦନା :
ବସନ୍ତକୁମାର ମଲିକ



ପେଜ୍‌ମେକର ପବ୍ଲିକେଶନ୍
ଓ
ଓଡ଼ିଶା ଗଣସାହିତ୍ୟ ଏକାଡେମୀ
ଭୁବନେଶ୍ୱର

# ଭୀମରାଓ

ସଂପାଦକ :
ବସନ୍ତକୁମାର ମଲିକ
ଇତିହାସ ପ୍ରଫେସର ଓ
ନିର୍ଦ୍ଦେଶକ ଆମ୍ବେଦକର ଅଧ୍ୟୟନ କେନ୍ଦ୍ର
ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର, ଭୁବନେଶ୍ୱର-୭୫୧୦୦୪

ପ୍ରକାଶକ : ପେଜ୍‌ମେକର ପବ୍ଲିକେଶନ୍
୧୧୭, ବାପୁଜୀନଗର, ଭୁବନେଶ୍ୱର - ୭୫୧୦୦୯
ଏବଂ
ଓଡ଼ିଶା ଗଣସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର-୭୫୧୦୦୪

ସତ୍ତ୍ୱାଧିକାରୀ- ବସନ୍ତକୁମାର ମଲିକ

ପ୍ରଥମ ସଂସ୍କରଣ : ୨୦୧୩
ମୂଲ୍ୟ - ଟ. ୧୬୦.୦୦ ମାତ୍ର

**BHIMARAO**

A Collection of Essays

**Edited by :**
Basanta Kumar Mallik
Professor of History and Director Centre for Ambedkar Studies, Utkal University, Vani Vihar
Bhubaneswar-751004

Published by : Pagemaker Publication
117, Bapuji Nagar, Bhubaneswar -751009
&
Odisha Gana Sahitya Akademi,
Bhubaneswar- 751004

Copy Right: Basanta Kumar Mallik

1st Edition : 2013
Price : Rs. 160/- (One hundred sixty only)
ISBN: 978-81-920052-9-8

# ମୁଖବଂଧ

୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ପୃଥିବୀ ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ଦିବସ। ଏହି ଦିନ ପୃଥିବୀର ଏକ ସ୍ୱାଧୀନ ଦେଶ ଭାବରେ ପରିଚିତ ହେଲା ଭାରତବର୍ଷ। ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ଭାରତର ସୁପରିଚାଳନା ଓ ସର୍ବାଙ୍ଗୀନ ଉନ୍ନତି ନିମନ୍ତେ ଏକ ଶାସନ ଖସଡ଼ା ବା ସମ୍ୱିଧାନ ପ୍ରସ୍ତୁତ କରିବାକୁ ସମ୍ୱିଧାନ ପ୍ରଣୟନ ସଭା ଗଠନ କରାଯାଇଥିଲା। ଏହି ସମ୍ୱିଧାନ ନିର୍ମାତା ସଭା ସମ୍ୱିଧାନ ପ୍ରସ୍ତୁତିର ମୁଖ୍ୟ ଦାୟିତ୍ୱ ନ୍ୟସ୍ତ କରିଥିଲା ଭାରତର ପ୍ରଥମ ଆଇନ୍ ମନ୍ତ୍ରୀ ଡକ୍ଟର ଭୀମରାଓ ରାମଜୀ ଆମ୍ବେଦ୍‌କରଙ୍କ ଉପରେ। ଡକ୍ଟର ଆମ୍ବେଦ୍‌କର ନିଜର ଗଭୀର ଜ୍ଞାନ, ଅଦ୍ଭୁତପୂର୍ବ ବାଗ୍ମୀତା, ଧୈର୍ଯ୍ୟ ଓ ନିଷ୍ଠାର ସହ ଏହି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟଟିକୁ ସମ୍ପାଦନ କରିଥିଲେ।

ଏହି ମହାନ୍ ବ୍ୟକ୍ତିଙ୍କର ଜନ୍ମ ହୋଇଥିଲା ୧୮୯୧ ମସିହା ଏପ୍ରିଲ ୧୪ ତାରିଖ ଦିନ ମହାରାଷ୍ଟ୍ରର ରତ୍ନଗିରି ଜିଲ୍ଲାସ୍ଥ ଏକ ଦରିଦ୍ର ମହର ପରିବାରରେ। ତାଙ୍କ ପିତାଙ୍କ ନାମ ରାମଜୀ ସକ୍‌ପାଲ୍ ଓ ମାତାଙ୍କ ନାମ ଭୀମାବାଈ। ତୁଳସୀ ଦୁଇ ପତ୍ରରୁ ବାସିଲା ପରି ପିଲାଦିନରୁ ଭୀମରାଓଙ୍କ ଜ୍ଞାନ ଓ ଚରିତ୍ରର ମହାନତା ସ୍ପଷ୍ଟ ଜଣାପଡ଼ିଥିଲା। କିନ୍ତୁ ସେ ସମୟର ଜାତିପ୍ରଥା ଓ ଅସ୍ପୃଶ୍ୟତା ତାଙ୍କ ବିଦ୍ୟାର୍ଜ୍ଜନରେ ଯଥେଷ୍ଟ ଅନ୍ତରାୟ ସୃଷ୍ଟି କରିଥିଲା। ବିଦ୍ୟାଳୟର ଶ୍ରେଣୀ ଗୃହରେ ତାଙ୍କୁ ତଥାକଥିତ ଉଚ୍ଚ ବର୍ଣ୍ଣର ଛାତ୍ରମାନଙ୍କଠାରୁ ଅଲଗା ବସିବାକୁ ପଡୁଥିଲା। ବିଦ୍ୟାଳୟରେ ଥିବା ପାତ୍ରରୁ ପାନୀୟ ଜଳ ନେବାପାଇଁ ମଧ୍ୟ ତାଙ୍କୁ ଅନୁମତି ଦିଆଯାଉନଥିଲା। ଦୁଃଖ, ଦୈନ୍ୟ ଓ ବିଭିନ୍ନ ଅସୁବିଧା ସତ୍ତ୍ୱେ ଭୀମରାଓ ପାଠପଢ଼ାରେ ମନୋନିବେଶ କରି ବମ୍ବେର ଏଲ୍‌ଫିନ୍‌ଷ୍ଟୋନ୍ ହାଇସ୍କୁଲରୁ ୧୯୦୭ ମସିହାରେ ମାଟ୍ରିକ୍ ପାଶ୍ କଲେ।

ଆମ୍ବେଦ୍‌କର ସେ ସମୟରେ ମାଟ୍ରିକ୍ ପାଶ୍ କରିବା ଏକ ପ୍ରଶଂସାର ବିଷୟ। ସେ କଲେଜରେ ପଢ଼ି ଉଚ୍ଚଶିକ୍ଷା ଲାଭ କରିବାକୁ ପ୍ରବଳ ଆଗ୍ରହୀ ଥିଲେ। କିନ୍ତୁ ଦାରିଦ୍ର୍ୟ ଓ ଅନଟନ ତାଙ୍କର ପ୍ରତ୍ୟେକ ପ୍ରଗତି ପଥରେ ବାଧା ସୃଷ୍ଟି କରୁଥାଏ। ଏତଦ୍‌ବ୍ୟତୀତ ଆମ୍ବେଦ୍‌କରଙ୍କୁ ତାଙ୍କର ଅନ୍ୟ ଦୁଇଜଣ ଶିକ୍ଷକ ମଧ୍ୟ ସାହାଯ୍ୟ କରିଥିଲେ। ସେମାନେ ହେଲେ କ୍ରିଷ୍ଣଜୀ ଅର୍ଜ୍ଜୁନ କେଲୁସ୍କର ଓ ପ୍ରଫେସର୍ ମୂଲର୍। ଆମ୍ବେଦ୍‌କରଙ୍କର ବମ୍ବେର ଏଲ୍‌ଫିନ୍‌ଷ୍ଟୋନ୍ କଲେଜରେ ପାଠପଢ଼ା ସାରି ୧୯୧୨ ମସିହାରେ ବି.ଏ. ପାସ୍ କଲେ। ଏହି ସମୟରେ ବଡ଼ୋଦାର ମହାରାଜା ଶୟାଜୀରାଓ ଗାଏକ୍‌ୱାଡ୍ କେତେକ ମେଧାବୀ

ଛାତ୍ରଙ୍କୁ ଉଚ୍ଚଶିକ୍ଷା ନିମନ୍ତେ ବିଲାତ ପଠାଉଥାନ୍ତି । ସେଥିପାଇଁ ଗୋଟିଏ ସର୍ତ୍ତ ଥିଲା ଯେ ଉଚ୍ଚଶିକ୍ଷା ଲାଭ ପରେ ସେହି ଯୁବକମାନେ ଫେରି ଆସି ବଡ଼ୋଦାର ଦେଓ୍ୱାନୀରେ କାର୍ଯ୍ୟ କରିବେ । ଏହି ସର୍ତ୍ତରେ ରାଜି ହୋଇ ଆମ୍ବେଦ୍‌କର ବିଲାତ ଯିବାପାଇଁ ବଡ଼ୋଦା ମହାରାଜାଙ୍କର ସାହାଯ୍ୟ ପାଇଲେ । ବଡ଼ୋଦା ମହାରାଜାଙ୍କ ସାହଯ୍ୟ ତାଙ୍କପାଇଁ ଏକ ଆଶୀର୍ବାଦ ଥିଲା । ଉଦାରଚେତା ମହାରାଜା ଶୟାଜୀରାଓ ଗାଏକ୍‌ୱ୍ୟାଡ୍ ଆମ୍ବେଦ୍‌କରଙ୍କର ମେଧା ଓ ଧୀଶକ୍ତିକୁ ପ୍ରଶଂସା କରି ତାଙ୍କୁ ବିଲାତରେ ପଢ଼ିବା ନିମନ୍ତେ ମାସିକ ପଚିଶ ଟଙ୍କା ଲେଖାଏଁ ଏକ ଛାତ୍ରବୃତ୍ତି ଦେଲେ । ଭୀମରାଓ ଉଚ୍ଚଶିକ୍ଷା ନିମନ୍ତେ ୧୯୧୩ ମସିହା ଜୁନ୍ ୧୨ ତାରିଖ ଦିନ ନିଉୟର୍କରେ ପହଞ୍ଚିଲେ । ସେ ଏବେ ଆମେରିକାର କଲମ୍ବିଆ ବିଶ୍ୱବିଦ୍ୟାଳୟରେ ପଢ଼ି ୧୯୧୬ ମସିହାରେ ଅର୍ଥନୀତିରେ ଏମ୍.ଏ. ଓ ପି.ଏଚ୍.ଡି. ଡିଗ୍ରୀ ପାଇବାପାଇଁ ଯୋଗ୍ୟ ବିବେଚିତ ହେଲେ । ସମୟ ଓ ଅର୍ଥର ଅଭାବ ଯୋଗୁଁ ତାଙ୍କୁ ଶୀଘ୍ର ପାଠପଢ଼ା ସାରି ଭାରତକୁ ଫେରି ଆସିବାକୁ ମହାରାଜାଙ୍କର ନିର୍ଦ୍ଦେଶ ଥିଲା । ତେଣୁ ସେ ଯଥାସମ୍ଭବ ପି.ଏଚ୍.ଡି. ସାରି ଭାରତକୁ ଫେରି ଆସିବାକୁ ଚାହିଁଥିଲେ । ଏଥିପାଇଁ ତାଙ୍କର ଜୀବନୀକାର ଡକ୍ଟର୍ ଧନଞ୍ଜୟ କୀର୍‌ଙ୍କ ମତରେ ଆମ୍ବେଦ୍‌କର ଦିନକୁ ଅଠର ଘଣ୍ଟା ଅଧ୍ୟୟନରତ ରହୁଥିଲେ ।

ପୃଥିବୀ ପ୍ରସିଦ୍ଧ କଲମ୍ବିଆ ବିଶ୍ୱବିଦ୍ୟାଳୟରୁ ଉଚ୍ଚଶିକ୍ଷା ଲାଭ କରି ଡକ୍ଟର୍ ଆମ୍ବେଦ୍‌କର ସର୍ତ୍ତ ଅନୁଯାୟୀ ମହାରାଜା ଗାଏକ୍‌ୱ୍ୟାଡ୍‌ଙ୍କ ଦେଓ୍ୱାନୀରେ ବଡ଼ୋଦା ରାଜ୍ୟର ସାମରିକ ସଚିବ ଭାବେ ନିଯୁକ୍ତି ପାଇଲେ । କିନ୍ତୁ ଦୁଃଖର କଥା ତାଙ୍କର ଉଚ୍ଚଶିକ୍ଷା ସତ୍ତ୍ୱେ ଅସ୍ପୃଶ୍ୟତାର କଳଙ୍କରୁ ସେ ମୁକ୍ତ ହୋଇ ନଥିଲେ । ହିନ୍ଦୁ ସମାଜରେ ଅଜ୍ଞତା, ଅନ୍ଧ ବିଶ୍ୱାସ. ଅହମିକା ଓ ଅନଗ୍ରସରତା ଯୋଗୁଁ କେତେକ ଯୋଗ୍ୟ ବ୍ୟକ୍ତି ମାନବିକ ଅଧିକାର ପାଉ ନଥିଲେ ସେ ସମୟରେ । ବଡ଼ୋଦା ଦେଓ୍ୱାନୀର ସମସ୍ତ ଅମଲା ଓ କର୍ମଚାରୀମାନେ ଜଣେ ଅସ୍ପୃଶ୍ୟ ସଚିବଙ୍କ ଅଧିନରେ କାର୍ଯ୍ୟ ନକରିବାକୁ ଏକ ପ୍ରକାର ପ୍ରତିବାଦମୂଳକ ଧର୍ମଘଟ ଆରମ୍ଭ କଲେ । ଏପରିକି ଡକ୍ଟର ଆମ୍ବେଦ୍‌କରଙ୍କପାଇଁ ନିଯୁକ୍ତ ହୋଇଥିବା ପିଅନ ମଧ୍ୟ ତାଙ୍କ ଅଫିସ୍ ଭିତରକୁ ପ୍ରବେଶ ନକରି ବାହାରୁ ଟେବୁଲ୍ ଉପରକୁ ଫାଇଲଗୁଡ଼ିକ ଫିଙ୍ଗି ଦେଉଥିଲା । ଏପରି ଔପହାସ୍ୟ ପରିସ୍ଥିତିର ମୁକାବିଲା କରିବା ପାଇଁ ଡକ୍ଟର ଆମ୍ବେଦ୍‌କର ମହାରାଜାଙ୍କୁ ଅନୁରୋଧ କଲେ । ମହାରାଜା ନିଜର ଅସାମର୍ଥ୍ୟ ପ୍ରକାଶ କରିବାରୁ ସେ କାର୍ଯ୍ୟରୁ ଇସ୍ତଫା ଦେଇଥିଲେ ।

ଏହି ସମୟରେ ବମ୍ବେର ସିଂଦେନହାମ୍ କଲେଜର ଅର୍ଥନୀତି ବିଭାଗରେ ଜଣେ ପ୍ରଫେସରଙ୍କ ସ୍ଥାନ ଖାଲି ଥାଏ । ଡକ୍ଟର ଆମ୍ବେଦ୍‌କର ସେଥିପାଇଁ ଆବେଦନ କରି ସେହି

ସ୍ଥାନ ପୂରଣ କରିବାକ୍ ଯୋଗ୍ୟ ବିବେଚିତ ହେଲେ । ସେ ସେଠାରେ ପଲିଟିକାଲ ଇକୋନୋମି ପଢ଼ାଉଥାନ୍ତି । କିନ୍ତୁ ସମାଜର ଦୂଷିତ ବାତାବରଣ, ଉଚ୍ଚନୀଚ ମନୋଭାବ, ସାମାଜିକ ଶୋଷଣ ଓ ଅନ୍ୟାୟ ଯୋଗୁଁ ସେ କିଛି ଅର୍ଥ ସଞ୍ଚୟ କରି ଉଚ୍ଚଶିକ୍ଷା ନିମିତ୍ତ ଲଣ୍ଡନ ଯିବା ପାଇଁ ଭାବିଥାନ୍ତି । ୧୯୨୦ ମସିହାରେ ସେ ଇଂଲଣ୍ଡ ଯାଇ London School of Economics ରେ ଅର୍ଥନୀତିରେ ଏମ୍.ଏସ୍.ସି. ପାଇଁ ଆବେଦନ କଲେ । ଲଣ୍ଡନ ବିଶ୍ୱବିଦ୍ୟାଳୟର ପ୍ରଫେସରମାନେ ଡକ୍ଟର ଆମ୍ବେଦ୍କରଙ୍କ ଅର୍ଥନୀତି ଶାସ୍ତ୍ରରେ ଗଭୀର ଜ୍ଞାନ ଦେଖି ଏମ୍.ଏସ୍.ସି. ପରେ ତାଙ୍କୁ Doctor of Science (D.Sc) ରେ ପ୍ରବେଶ କରାଇଦେଲେ । ଏହି ସମୟରେ ଡକ୍ଟର୍ ଆମ୍ବେଦକର୍ ମଧ୍ୟ ଆଇନ ଶାସ୍ତ୍ରରେ ଜ୍ଞାନ ଅର୍ଜନ କରିବାକୁ ପ୍ରବଳ ଆଗ୍ରହୀ ହୋଇ ପଡ଼ିଥିଲେ । ତେଣୁ ସେ ଲଣ୍ଡନର Gray's Inn ରେ Bar-at-Law ପଢ଼ିବା ପାଇଁ ଯୋଗ ଦେଲେ । ସେ ବ୍ରିଟିସ୍ ମ୍ୟୁଜିୟମ୍ ଲାଇବ୍ରେରୀରେ ବହୁ ପୁସ୍ତକ ଅଧ୍ୟୟନ କରି ଅର୍ଥନୀତି ଶାସ୍ତ୍ର, ଆଇନ ଓ ବିଚାର ଶାସ୍ତ୍ର, ରାଜନୀତି ବିଜ୍ଞାନ, ଇତିହାସ, ନୃତତ୍ତ୍ୱ ଓ ସମାଜ ବିଜ୍ଞାନ ଆଦି ବିଷୟରେ ଗଭୀର ଜ୍ଞାନ ଅର୍ଜନ କରିଥିଲେ ଯେଉଁଠାରେ ପୂର୍ବରୁ ପୃଥିବୀର ପ୍ରସିଦ୍ଧ ବିଜ୍ଞ ବ୍ୟକ୍ତିମାନେ ଯଥା: କାର୍ଲ ମାର୍କ୍ସ, ଲେନିନ୍, ମାଜିନୀ ଓ ବୀର ସଭରକର୍ ଇତ୍ୟାଦି ଅଧ୍ୟୟନ କରିଥିଲେ । ଫଳତଃ ଡକ୍ଟର୍ ଆମ୍ବେଦ୍କର ୧୯୨୧ ମସିହାରେ ଅର୍ଥନୀତିରେ ଏମ୍.ଏସ୍.ସି ୧୯୨୨ରେ Bar-at-Law ତଥା ଅର୍ଥନୀତିରେ ଡି.ଏସ୍.ସି ଡିଗ୍ରୀରେ ଭୂଷିତ ହେଲେ । London School of Economics ରୁ ଡି.ଏସ୍.ସି ଡିଗ୍ରୀ ପାଇବା ପାଇଁ ସେ ଥିଲେ ପ୍ରଥମ ଭାରତୀୟ ।

ପୃଥିବୀର ପ୍ରସିଦ୍ଧ ବିଶ୍ୱବିଦ୍ୟାଳୟରୁ ଉଚ୍ଚଶିକ୍ଷା ଲାଭ ପରେ ଭାରତକୁ ଫେରି ଆସି ଡକ୍ଟର ଅମ୍ବେଦ୍କର କିଛି ଦିନପାଇଁ ବମ୍ବେ ହାଇକୋର୍ଟରେ ଓକିଲାତି କରିଥିଲେ । ଆଇନ ବ୍ୟବସାୟ ଦ୍ୱାରା ଅର୍ଥ ଉପାର୍ଜନ କରିବା ତାଙ୍କ ଜୀବନର ଲକ୍ଷ୍ୟ ନଥିଲା ବା ସେ ଏଥିରେ ଶାନ୍ତି ପାଉ ନଥିଲେ । ଭାରତର ଲକ୍ଷ ଲକ୍ଷ ଅସ୍ପୃଶ୍ୟମାନଙ୍କର ଦୈନ୍ୟ, ଦୁର୍ବିପାକ ଓ ଅଜ୍ଞତା ସର୍ବଦା ତାଙ୍କ ଆଖି ଆଗରେ ନାଚି ଉଠୁଥାଏ । ଦୁଃଖ କଷ୍ଟରେ ପୀଡ଼ିତ ଦଳିତମାନଙ୍କୁ ନିଜ ମାତୃଭୂମିର ପାଣି, ପବନ ଓ ରାସ୍ତାଘାଟ ଉପରେ ଅଧିକାର ଦେବା ଓ ସେମାନଙ୍କର ରାଜନୈତିକ ଅଧିକାର ସାବ୍ୟସ୍ତ କରିବାକୁ ସେ ଏକ ସଂଗ୍ରାମ ଆରମ୍ଭ କଲେ । ମହଦ ସତ୍ୟାଗ୍ରହ (୧୯୨୭) ସେଥି ମଧ୍ୟରୁ ସର୍ବ ପ୍ରଧାନ । ଏତ୍‌ଦବ୍ୟତୀତ ଦଳିତମାନଙ୍କୁ ଅନ୍ୟ ହିନ୍ଦୁମାନଙ୍କ ପରି ସାମାଜିକ ଓ ଧର୍ମନୈତିକ ଅଧିକାର ଦେବା ନିମନ୍ତେ ସେ କେତେକ ମନ୍ଦିର ପ୍ରବେଶ ଅଭିଯାନ ମଧ୍ୟ ଆରମ୍ଭ କରିଥିଲେ । ତନ୍ମଧ୍ୟରୁ ନାସିକ୍ର

କଳାରାମ ମନ୍ଦିର ପ୍ରବେଶ ଅଭିଯାନ ପ୍ରଧାନ। ଅବଶ୍ୟ, ସମାଜରେ ଏକ ସଂସ୍କାରମୂଳକ ପରିବର୍ତ୍ତନ ଆଣିବାକୁ ସେ ଦଳିତମାନଙ୍କର ମନ୍ଦିର ପ୍ରବେଶ ଆନ୍ଦୋଳନ ଆରମ୍ଭ କରିଥିଲେ। କିନ୍ତୁ ଏହା ସେମାନଙ୍କର ପ୍ରକୃତ ଉନ୍ନତିର ପଥ ନଥିବାରୁ ଏହି କାର୍ଯ୍ୟକ୍ରମ ପରେ ସେ ବନ୍ଦ କରି ଦେଇଥିଲେ।

ଦଳିତମାନଙ୍କର ରାଜନୈତିକ ଅଧିକାର ସମ୍ବନ୍ଧରେ ତାଙ୍କର ଭୂମିକା ଅବିସ୍ମରଣୀୟ। ଲଣ୍ଡନରେ ଅନୁଷ୍ଠିତ ପ୍ରଥମ ଓ ଦ୍ୱିତୀୟ ଗୋଲ୍‌ଟେବୁଲ ବୈଠକ (୧୯୩୦-୩୧)ରେ ଦଳିତଶ୍ରେଣୀର ରାଜନୈତିକ ଅଧିକାର ନିମିତ୍ତ ସେ ଦୃଢ଼ ଦାବୀ ଉପସ୍ଥାପିତ କରିଥିଲେ। ଦଳିତମାନେ ହିନ୍ଦୁମାନଙ୍କଠାରୁ ସମ୍ପୂର୍ଣ୍ଣ ଅଲଗା ଏବଂ ଶିଖ୍, ମୁସଲମାନ୍ ଓ ଖ୍ରୀଷ୍ଟିଆନ୍‌ମାନଙ୍କୁ ଯେଉଁଭଳି ସମ୍ପ୍ରଦାୟ ଭିତ୍ତିକ ସୁବିଧାସୁଯୋଗ ଦିଆଯାଉଥିଲା, ସେମାନଙ୍କୁ ସେହିଭଳି ସୁବିଧାସୁଯୋଗ ଦିଆଯିବାପାଇଁ ସେ ଯୁକ୍ତି ବାଢ଼ିଥିଲେ। ଏଥିପାଇଁ ମହାତ୍ମାଗାନ୍ଧି ଓ ଡକ୍ଟର ଆମ୍ବେଦ୍‌କରଙ୍କ ମଧ୍ୟରେ ଦ୍ୱୈତ ମତ ଦେଖା ଦେଇଥିଲା। କିନ୍ତୁ ଗୋଲ୍‌ଟେବୁଲ ବୈଠକର ନିଷ୍ପତ୍ତି ଅନୁଯାୟୀ ଦଳିତମାନଙ୍କୁ ଶିଖ୍, ମୁସଲମାନ୍ ଓ ଖ୍ରୀଷ୍ଟିଆନଙ୍କ ଭଳି ଅଲଗା ନିର୍ବାଚକ (Separate Electorate) ଭାବେ ଘୋଷଣା କରାଗଲା। ଏହାଦ୍ୱାରା ସେମାନେ ନିଜ ସମ୍ପ୍ରଦାୟ ଭିତରୁ ଜଣେ ବିଧାୟକକୁ ନିର୍ବାଚିତ କରିବା ସହିତ ଅନ୍ୟ ଜଣେ ସାଧାରଣ ବିଧାୟକଙ୍କୁ ମଧ୍ୟ ନିର୍ବାଚିତ କରିବାର ଅଧିକାର ପାଇଥାନ୍ତେ ଏବଂ ଏହି ଦ୍ୱୈତ ମତଦାନ ଅଧିକାର ସେମାନଙ୍କର ସାମାଜିକ, ଅର୍ଥନୈତିକ, ରାଜନୈତିକ ଓ ଶିକ୍ଷାଗତ ଅବସ୍ଥାର ଉତ୍ଥାନପାଇଁ ଅବଶ୍ୟମ୍ଭାବୀ ହୋଇଥାନ୍ତା। କିନ୍ତୁ ଏହି 'ସମ୍ପ୍ରଦାୟିକ ପୁରସ୍କାର' ଘୋଷଣା ଫେରାଇ ନେବାକୁ ଦାବୀ କରି ମହାତ୍ମାଗାନ୍ଧି ଆରମ୍ଭ କରିଥିଲେ ଆମରଣ ଅନଶନ। ତାଙ୍କର ଦୂରଦୃଷ୍ଟି ଥିଲା ଯେ ଅସ୍ପୃଶ୍ୟମାନେ ଅଲଗା ନିର୍ବାଚକ ହେଲେ ଭବିଷ୍ୟତରେ ହିନ୍ଦୁ ଧର୍ମ ଓ ହିନ୍ଦୁ ସମାଜ ଖଣ୍ଡ ଖଣ୍ଡ ହୋଇ ଧ୍ୱଂସାଭିମୁଖୀ ହେବ। ଗାନ୍ଧିଜୀଙ୍କର ଆମରଣ ଅନଶନ ସାରା ଭାରତରେ ଚହଳ ପକାଇଥିଲା ଓ ବିଶିଷ୍ଟ କଂଗ୍ରେସ ନେତାମାନେ ଡକ୍ଟର ଆମ୍ବେଦ୍‌କରଙ୍କୁ ତାଙ୍କର ଦାବୀ ପ୍ରତ୍ୟାହାର କରି ନେବାକୁ ଅନୁରୋଧ କରିଥିଲେ। ଶେଷରେ ମହାତ୍ମାଗାନ୍ଧିଙ୍କର ଜୀବନ ରକ୍ଷା ତଥା ସମଗ୍ର ହିନ୍ଦୁ ସମାଜର ଭବିଷ୍ୟତକୁ ଲକ୍ଷ୍ୟ କରି ନିଜର ଦାବୀ ସଙ୍କୁଚିତ କରିବା ପାଇଁ ବାଧ୍ୟ ହୋଇଥିଲେ ଡଃ ଆମ୍ବେଦକର। ୧୯୩୨ ମସିହା ସେପ୍ଟେମ୍ବର ୨୪ ତାରିଖ ଦିନ ଡକ୍ଟର ଆମ୍ବେଦ୍‌କର ଓ ମହାତ୍ମାଗାନ୍ଧିଙ୍କ ତରଫରୁ ପଣ୍ଡିତ ମଦନମୋହନ ମାଳବ୍ୟଙ୍କ ମଧ୍ୟରେ ଏକ ଐତିହାସିକ ରାଜିନାମା ସ୍ୱାକ୍ଷରିତ ହେଲା। ଏହି ରାଜିନାମା 'ପୁନାଚୁକ୍ତି' ଭାବେ ସର୍ବବିଦିତ। ଏହି ରାଜିନାମା ଅନୁଯାୟୀ ଅସ୍ପୃଶ୍ୟମାନଙ୍କପାଇଁ 'ଅଲଗା ନିର୍ବାଚନ ମଣ୍ଡଳୀ' ପରିବର୍ତ୍ତେ 'ସ୍ଥାନ ସଂରକ୍ଷଣ' ବ୍ୟବସ୍ଥା ଆରମ୍ଭ କରାଗଲା।

ଏହା ପରେ ଡକ୍ଟର ଆମ୍ବେଦ୍କର ୧୯୪୨ ରୁ ୧୯୪୬ ମସିହା ପର୍ଯ୍ୟନ୍ତ ଭାଇସ୍‌ରାୟ୍‌ଙ୍କର 'କାର୍ଯ୍ୟକାରିଣୀ ପରିଷଦ'ର ଶ୍ରମ ସଦସ୍ୟ ଭାବେ କାର୍ଯ୍ୟ କରିଥିଲେ। ଶ୍ରମ ସଦସ୍ୟ ଭାବେ ସେ ଭାରତୀୟ ଶ୍ରମିକମାନଙ୍କର ମଜୁରୀ ସମସ୍ୟା, ମାଲିକ ଓ ଶ୍ରମିକମାନଙ୍କ ମଧ୍ୟରେ ସମ୍ପର୍କ ତଥା ଶ୍ରମିକମାନଙ୍କର ଜୀବନର ମାନଦଣ୍ଡ ବୃଦ୍ଧି ପାଇଁ କରିଥିବା କାର୍ଯ୍ୟକ୍ରମ ବର୍ତ୍ତମାନ ଶ୍ରମିକ ହିତୈଷୀ ବିଲ୍‌ଗୁଡ଼ିକର ପଥ ପ୍ରଦର୍ଶକ ହୋଇ ରହିଛି।

ଭାରତ ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ପଣ୍ଡିତ ନେହେରୁଙ୍କ ଅଧିନାୟକତ୍ୱରେ ମଧ୍ୟବର୍ତ୍ତୀକାଳୀନ ସରକାର ଗଠନ କରାଯାଇଥିଲା। ଡକ୍ଟର ଆମ୍ବେଦକରଙ୍କ ଭଳି ଜଣେ ଆଇନଜ୍ଞ, ରାଜନୀତି, ଅର୍ଥନୀତି, ସମାଜ ଶାସ୍ତ୍ର ଓ ଭାରତର ଐତିହ୍ୟ ଓ ସଂସ୍କୃତିରେ ବିଶେଷ ଜ୍ଞାନ ଥିବା ଜଣେ ନିପୁଣ ବ୍ୟକ୍ତିଙ୍କର ଆବଶ୍ୟକ ଥିଲା। ସେ ଭାରତର ପ୍ରଥମ ଆଇନ ମନ୍ତ୍ରୀ ହେଲେ।

ଡକ୍ଟର ଆମ୍ବେଦ୍କର ଜଣେ ସାଧାରଣ ସଦସ୍ୟ ଭାବେ 'ସମ୍ବିଧାନ ନିର୍ମାତା ସଭା'ରେ ଯୋଗ ଦେଇଥିଲେ। ସେ ଆଶ୍ଚର୍ଯ୍ୟ ହୋଇଥିଲେ ତାଙ୍କୁ ଯେତେବେଳେ ଡ୍ରାଫ୍‌ଟିଙ୍ଗ୍ କମିଟିର ସଦସ୍ୟ ଭାବେ ନିର୍ବାଚିତ କରାଗଲା। ସେ ଆହୁରି ଆଶ୍ଚର୍ଯ୍ୟ ହୋଇଥିଲେ ତାଙ୍କୁ ଯେତେବେଳେ 'ଡ୍ରାଫ୍‌ଟିଙ୍ଗ୍ କମିଟି'ର ଚେୟାରମେନ୍ ଭାବେ ନିର୍ବାଚିତ କରାଗଲା ୧୯୪୭ ମସିହା ଅଗଷ୍ଟ ୨୯ ତାରିଖ ଦିନ। ଭାରତ ସମ୍ବିଧାନ ପ୍ରସ୍ତୁତ କରିବା ନିମିତ୍ତ ସର୍ବମୋଟ ୨ ବର୍ଷ ୧୧ ମାସ ଓ ୧୭ ଦିନ ଲାଗିଥିଲା। ଏହି ଦୀର୍ଘ ସମୟ ମଧ୍ୟରେ ଡକ୍ଟର ଆମ୍ବେଦ୍କର ନିଜର ଆଇନ ଓ ବିଚାର ଶାସ୍ତ୍ର ତଥା ପୃଥିବୀର ବିଭିନ୍ନ ଦେଶର ସମ୍ବିଧାନଗୁଡ଼ିକ ସମ୍ବନ୍ଧୀୟ ବିଭିନ୍ନ ପ୍ରଶ୍ନର ସନ୍ତୋଷଜନକ ଉତ୍ତର ମାଧ୍ୟମରେ ସୁଚାରୁ ରୂପେ ସମ୍ବିଧାନ ପ୍ରସ୍ତୁତ କାର୍ଯ୍ୟ ବହନ କରିଥିଲେ। ଲିଖିତ ସମ୍ବିଧାନର ପ୍ରସ୍ତୁତ ନିମିତ୍ତ ତାଙ୍କୁ ହିଁ ସମ୍ପୂର୍ଣ୍ଣ ଦାୟିତ୍ୱ ବହନ କରିବାକୁ ପଡ଼ିଥିଲା। 'ସମ୍ବିଧାନ ନିର୍ମାତା ସଭା'ର ଜଣେ ଅନ୍ୟତମ ସଦସ୍ୟ ମାନ୍ୟବର ଟି.ଟି.କ୍ରିଷ୍ଣାମାଚାରୀଙ୍କ ମତରେ, ଡ୍ରାଫ୍‌ଟିଙ୍ଗ୍ କମିଟି ସାତ ଜଣ ସଦସ୍ୟଙ୍କୁ ନେଇ ଗଠନ କରାଯାଇଥିଲା। ସେମାନଙ୍କ ମଧ୍ୟରୁ ଜଣେ ଇସ୍ତଫା ଦେଇଥିଲେ, ଜଣେ ମୃତ୍ୟୁବରଣ କରିଥିଲେ ଓ ଆଉ ଜଣେ ଆମେରିକାରେ ରହୁଥିଲେ, କିନ୍ତୁ ସେମାନଙ୍କର ସ୍ଥାନ ଅପୂରଣ ରହିଥିଲା। ଆଉ ଜଣେ ନିଜର ରାଜ୍ୟ ବ୍ୟାପାରରେ ବ୍ୟସ୍ତ ରହିଥିଲେ, ଜଣେ ଦୁଇଜଣ ଦିଲ୍ଲୀଠାରୁ ଦୂରରେ ରହୁଥିଲେ। ବୋଧହୁଏ ଅସୁସ୍ଥତାବଶତଃ ସେମାନେ କମିଟିରେ ଉପସ୍ଥିତ ହୋଇପାରୁ ନଥିଲେ। ତେଣୁ ପ୍ରକୃତରେ ଡକ୍ଟର୍ ଆମ୍ବେଦ୍କରଙ୍କୁ ହିଁ ଏକାକୀ ଲିଖିତ ସମ୍ବିଧାନ ପ୍ରସ୍ତୁତ କରିବାକୁ ପଡ଼ିଥିଲା। ଭାରତର ସମ୍ବିଧାନ ପ୍ରସ୍ତୁତ ପରେ ପରେ ତାଙ୍କୁ ହିଁ ପୁଣି ପ୍ରସ୍ତୁତ କରିବାକୁ ପଡ଼ିଥିଲା ବିଖ୍ୟାତ 'ହିନ୍ଦୁ କୋଡ୍ ବିଲ୍'। ଏଥିରେ ପ୍ରାଚୀନ ଆଇନଦାତା ମନୁଙ୍କର ରକ୍ଷଣଶୀଳ ଓ ଭେଦଭାବମୂଳକ ସାମାଜିକ ନୀତି, ପ୍ରଥା

ଓ ପରମ୍ପରାକୁ ପରିବର୍ତ୍ତନ କରି ଆଧୁନିକ ଓ ପରିବର୍ତ୍ତନଶୀଳ ସମାଜରେ ମନୁଷ୍ୟର ଆବଶ୍ୟକତା ନେଇ ସେ 'ହିନ୍ଦୁ କୋଡ୍ ବିଲ୍' ପ୍ରସ୍ତୁତ କରିଥିଲେ । ଏଥପାଇଁ ଯଥାର୍ଥରେ ଜଷ୍ଟିସ୍ ଗଜେନ୍ଦ୍ର ଗଡ୍‌କର୍ ତାଙ୍କୁ ସମ୍ବୋଧନ କରିଥିଲେ 'ଆଧୁନିକ ମନୁ' । ସେ ସମୟରେ ଜଷ୍ଟିସ୍ ଗଜେନ୍ଦ୍ର ଗଡ଼କର ଭାବପ୍ରବଣତାର ସହ ଡକ୍ଟର ଆମ୍ବେଦକରଙ୍କୁ 'ଆଧୁନିକ ମନୁ' ଭାବେ ସମ୍ବୋଧନ କରିଥିଲେ । କିନ୍ତୁ ପ୍ରକୃତରେ ଡକ୍ଟର ଆମ୍ବେଦକରଙ୍କର ପ୍ରଗତିଶୀଳ ସାମାଜିକ ମୂଲ୍ୟବୋଧ ଓ ରାଜନୈତିକ ଦର୍ଶନ ତାଙ୍କ ସମୟ ଠାରୁ ଯଥେଷ୍ଟ ଅଗ୍ରଗାମୀ ଥିଲା । ସେ ମନୁଙ୍କ ଦ୍ୱାରା ପ୍ରତିଷ୍ଠିତ ରକ୍ଷଣଶୀଳ, ନିଶ୍ଚଳ ସାମାଜିକ ଓ ରାଜନୈତିକ ମୂଲ୍ୟବୋଧକୁ ପରିବର୍ତ୍ତନ କରି ଏକ ପ୍ରଗତିଶୀଳ ଓ ଅଗ୍ରଗାମୀ ସୌଧ ଉପରେ ଗଢ଼ି ତୋଳିଥିଲେ ଭାରତବର୍ଷର ନୂତନ ଗଣତାନ୍ତ୍ରିକ ସମ୍ବିଧାନ । ଏହି ଦୃଷ୍ଟିରୁ ବର୍ତ୍ତମାନ ଡକ୍ଟର ଆମ୍ବେଦକରଙ୍କୁ ମନୁଙ୍କ ସହିତ ତୁଳନା କରିବା ବା 'ଆଧୁନିକ ମନୁ' ସମ୍ବୋଧନ କରିବା ଆଦୌ ସମୀଚିନ ନୁହେଁ ।

ସମ୍ବିଧାନ ନିର୍ମାତା ଭାବେ ଡକ୍ଟର ଆମ୍ବେଦ୍‌କରଙ୍କର ଭୂମିକା ଓ ଅବଦାନ ଅଦ୍ୱିତୀୟ । ଏ ସମ୍ବନ୍ଧରେ 'ସମ୍ବିଧାନ ନିର୍ମାତା ସଭା'ର ସଦସ୍ୟ ମାନ୍ୟବର B.Pattabhi Sita Ramaiya ଙ୍କ ମତରେ "I should like to tell Dr. Ambedkar what a steam roller intellect he brought to bear upon this magnificient and tremondous task, irresistible and Uncontrollable. levelling down tale palms and short poppies whatever he felt right he stood by ragardless of consequences."

ଡକ୍ଟର ଆମ୍ବେଦ୍‌କରଙ୍କର ଲିଖିତ ସମ୍ବିଧାନର ପରିଚାଳନା ସମ୍ବନ୍ଧରେ 'ସମ୍ବିଧାନ ନିର୍ମାତା ସଭା'ର ସଭାପତି ଡକ୍ଟର୍ ରଜେନ୍ଦ୍ର ପ୍ରସାଦଙ୍କ ଅନୁଯାୟୀ "Sitting in the chair and watching proceedings from day to day I have realised as nobody else could have with what zeal and devotion, the members of the Drafting Commitee and specially its Chairman Dr. Ambedkar, inspite of his indifferent health have worked. We could never make a decision which was good or could be ever so right as when we put him its Chairman. He has not only justified his selection but has added lustre to the way which he has done."

ସାମ୍ବିଧାନ ବିଶେଷଜ୍ଞ Dr. M.V. Pysle ଙ୍କ ଭାଷାରେ "Ambedkar's contribution to the Constitution is undoubtebly of the highest

order. Indeed he was a 'Modern Manu' and deserves to be called the father or the Chief Arctitect of the Constititution of India."

ଡକ୍ଟର୍ ଆମ୍ବେଦ୍‌କର ଗଣତନ୍ତ୍ର ଓ ସମାଜବାଦର ଜଣେ ଦୃଢ଼ ପ୍ରବକ୍ତା ଥିଲେ । ସେ ଯେ କେବଳ ମଣିଷ ଓ ମଣିଷ ମଧ୍ୟରେ ସମତା ଚାହିଁଥିଲେ, ତା ନୁହେଁ, ସେ ମଧ୍ୟ ଚାହୁଁଥିଲେ ପୁରୁଷ ଓ ସ୍ତ୍ରୀମାନଙ୍କ ମଧ୍ୟରେ ସମତା । ତାଙ୍କର 'ହିନ୍ଦୁ କୋଡ୍ ବିଲ୍' ଏହାର ଜ୍ୱଳନ୍ତ ପ୍ରମାଣ । ସେ ନାରୀମାନଙ୍କର ଶିକ୍ଷାଗତ ଅଧିକାର ସହ ସେମାନଙ୍କର ସମ୍ପତ୍ତି ଉପରେ ଅଧିକାର ଓ ଛାଡ଼ପତ୍ର ନେବାର କ୍ଷମତା ସମ୍ବନ୍ଧରେ ଦୃଢ଼ ଯୁକ୍ତି ବାଢ଼ିଥିଲେ । ଏଥିପାଇଁ ସେ ସମଗ୍ର ଭାରତୀୟ ନାରୀ ସମାଜର ଚିର ସ୍ମରଣୀୟ ।

ଏହି ମହାନ୍ ବ୍ୟକ୍ତିତ୍ୱର ପରିନିର୍ବାଣ ଘଟିଥିଲା ୧୯୫୬ ମସିହା ଡିସେମ୍ବର ୬ ତାରିଖରେ । ପାର୍ଲାମେଣ୍ଟରେ ଅନୁଷ୍ଠିତ ଏକ ଶୋକ ସଭାରେ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ କହିଥିଲେ, "Dr. Ambedkar was a 'symbol of revolt' against all oppressing features of Hinduism. His service to the nation in the form of making Constitution was undoubtedly unique and more than his service rendered to the depressed classes." ଜଣେ ସମାଲୋଚକ ତଥା ଦିଗ୍‌ଦର୍ଶକଙ୍କ ପ୍ରତି ପଣ୍ଡିତ ନେହେରୁଙ୍କର ଏହାଥିଲା ଏକ ଅମୂଲ୍ୟ ଶ୍ରଦ୍ଧାଞ୍ଜଳି ।

ଉକ୍ତ ସଂକଳନଟି ପ୍ରାଗ୍-ସ୍ୱାଧୀନତା କାଳରୁ ସ୍ୱାଧୀନୋତ୍ତର ସମୟ ମଧ୍ୟରେ ଓଡ଼ିଶା ତଥା ଭାରତର ବିଶିଷ୍ଟ ରାଜନେତା, ସମାଜ ସଂସ୍କାରକ, ଅଧ୍ୟାପକ, ପ୍ରଶାସକ, ସଂପାଦକ ଓ ସମାଜସଂଗଠକମାନଙ୍କର ବାବାସାହେବ ଆମ୍ବେଦକରଙ୍କ ଜୀବନ ଓ ଦର୍ଶନ ସମ୍ବନ୍ଧୀୟ ବୌଦ୍ଧିକ କୃତୀଦ୍ୱାରା ସମୃଦ୍ଧ । ଏଥିରେ ପ୍ରକାଶିତ ମତାମତଗୁଡ଼ିକ ସେମାନଙ୍କର ସ୍ୱୀୟ । ବିଭିନ୍ନ ସମୟରେ ବିଭିନ୍ନ ବ୍ୟକ୍ତିଙ୍କ ଦ୍ୱାରା ବାବାସାହେବଙ୍କର ମୂଲ୍ୟାୟନ ଗୋଟିଏ ପୁସ୍ତକରେ ଉପଲବ୍ଧ କରାଇବା ଉକ୍ତ ସଂକଳନଟିର ପ୍ରମୁଖ ଉଦ୍ଦେଶ୍ୟ । ପ୍ରାବନ୍ଧିକମାନଙ୍କର ସେମାନଙ୍କର ଅମୂଲ୍ୟ ଅବଦାନପାଇଁ ମୁଁ ସେମାନଙ୍କ ନିକଟରେ କୃତଜ୍ଞ । ବାବାସାହେବ ଆମ୍ବେଦକରଙ୍କ ମୁଖ୍ୟତଃ ଇଂରାଜୀ ଭାଷାରେ ଲେଖାଯାଇଥିବା ପୁସ୍ତକମାଳା ଓ ପ୍ରବନ୍ଧାବଳୀଗୁଡ଼ିକୁ ଓଡ଼ିଆ ଭାଷାରେ ନିର୍ଭୁଲ ଭାଷାନ୍ତର ଓ ପ୍ରକାଶନ କରିବା 'ଓଡ଼ିଶା ଗଣ ସାହିତ୍ୟ ଆକାଡ଼େମୀ'ର ପ୍ରମୁଖ ଉଦ୍ଦେଶ୍ୟ । ସାଧାରଣ ଲୋକମାନଙ୍କ ନିକଟରେ ବାବାସାହେବଙ୍କର ସାମାଜିକ ପରିବର୍ତ୍ତନର ସନ୍ଦେଶ ପହଞ୍ଚୁ ତାହାହିଁ ଆମ୍ଭର ଅନ୍ୟତମ ଲକ୍ଷ୍ୟ । ଏହି ପୁସ୍ତକଟିର ପରିକଳ୍ପନା, ଅଙ୍ଗସଜ୍ଜା, ଶବ୍ଦ ସଂଶୋଧନ ଓ ବିଭିନ୍ନ ସମୟରେ ଆଲୋଚନାରେ ଅଂଶ ଗ୍ରହଣ କରି ବହୁ ଉପାଦେୟମୂଳକ ପରାମର୍ଶ ଦେଇଥିବାରୁ

ବିଶେଷତଃ ମୋର ପତ୍ନୀ ଓଡ଼ିଶା ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶାଳୟର ଉପନିର୍ଦ୍ଦେଶକ ଓ ସ୍ୱନାମଧନ୍ୟ ଗାଳ୍ପିକା ଶ୍ରୀମତୀ ସୁପ୍ରିୟା ମଲ୍ଲିକ ଓ ଭାରତୀୟ ସାମାଜିକବିଜ୍ଞାନ ଗବେଷଣା ପରିଷଦ ଆନୁକୂଲ୍ୟରେ ତଥା ଉତ୍କଳ ବିଶ୍ୱବିଦ୍ୟାଳୟର ଇତିହାସ ବିଭାଗରେ ପରିଚାଳିତ ଓଡ଼ିଶାର ଦଳିତ ଶିକ୍ଷା ସମ୍ବନ୍ଧୀୟ ଗବେଷଣା ପ୍ରକଳ୍ପର ଗବେଷଣା ତତ୍ତ୍ୱାବଧାରକ ଡକ୍ଟର ରମେଶଚନ୍ଦ୍ର ମଲିକଙ୍କୁ ମୋର ଆନ୍ତରିକ ଧନ୍ୟବାଦ। ଓଡ଼ିଶାର ଆମ୍ବେଦକରବାଦୀମାନଙ୍କର ପ୍ରେରଣା ଏ ପୁସ୍ତକ ସମ୍ବନ୍ଧରେ ଚିନ୍ତା କରିବାକୁ ସୁଯୋଗ ସୃଷ୍ଟି କରିଥିବା ଯୋଗୁଁ ମୁଁ ସେମାନଙ୍କ ନିକଟରେ କୃତଜ୍ଞ। ଓଡ଼ିଶା ଗଣସାହିତ୍ୟ ଏକାଡ଼େମୀର ସମସ୍ତସଦସ୍ୟ ଓ କର୍ମକର୍ତ୍ତାମାନଙ୍କର ଉତ୍ସାହ ଓ ସାହାଯ୍ୟ ସହଯୋଗପାଇଁ ସେମାନଙ୍କୁ ମୋର ହାର୍ଦ୍ଦିକ ଧନ୍ୟବାଦ। ଶେଷୋକ୍ତି ନୁହେଁ, ପେଜ୍‌ମେକର ପବ୍ଲିକେଶନ୍‌ର ପ୍ରୋପ୍ରାଇଟର ଶ୍ରୀଯୁକ୍ତ ବଦ୍ରିପ୍ରସାଦ ଷଡ଼ଙ୍ଗୀ ଉକ୍ତ ପୁସ୍ତକର ମୁଦ୍ରଣ ଦାୟିତ୍ୱ ସମୟାନୁବର୍ତ୍ତୀ ଭାବେ ସଂପନ୍ନ କରିଥିବାରୁ ତାଙ୍କୁ ହାର୍ଦ୍ଦିକ ଧନ୍ୟବାଦ ଜ୍ଞାପନ କରୁଅଛି। ଆଶା କରୁଛି, ଏହି ସଂକଳନଟି ପାଠକମାନଙ୍କଦ୍ୱାରା ଆଦୃତ ହେଲେ ମୋର ଶ୍ରମ ସାର୍ଥକ ହେବ।

ସଂପାଦକ

# ସୂଚୀପତ୍ର

# ଭୀମରାଓଙ୍କ ପିଲାଦିନ ଓ ଛାତ୍ରାବସ୍ଥା

ଶାନ୍ତିପ୍ରିୟା ଜେମା

ଭୀମରାଓ ମହାରାଷ୍ଟ୍ର ରତ୍ନଗିରି ଜିଲ୍ଲାରେ ଆମ୍ବାଭାଡ଼େ ନାମକ ଏକ ଗ୍ରାମରେ ଅନୁନ୍ନତ ପରିବାରରେ ଜନ୍ମ ହୋଇଥିଲେ । ତାଙ୍କ ବାପାଙ୍କ ନାମ ରାମଜୀ ସକପାଲ୍ । ସେ ତାଙ୍କ ପିତାଙ୍କର ଚର୍ତୁଦ୍ଦଶତମ ସନ୍ତାନ ଥିଲେ । ରାମଜୀ ସନ୍ଥ କବିରଙ୍କର ଶିକ୍ଷାର ଅନୁଗାମୀ ଥିଲେ । (କବିରଙ୍କର ଶିକ୍ଷା ହେଲା ଭକ୍ତିମାର୍ଗ ହିଁ ହେଉଛି ଭଗବାନଙ୍କୁ ପାଇବାର ଏକମାତ୍ର ପ୍ରଧାନ ପଥ) । ରାମଜୀ ଧର୍ମ ଓ ଜାତି ଭିତ୍ତିରେ କୌଣସି ଭେଦଭାବକୁ ବିଶ୍ୱାସ କରୁ ନଥିଲେ । ତାଙ୍କର ବିଶ୍ୱାସ ଥିଲା ସମସ୍ତେ ସମାନ ।

ଭୀମରାଓ ୧୮୯୧ ଖ୍ରୀଷ୍ଟାବ୍ଦ ଅପ୍ରେଲ ୧୪ ତାରିଖରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପୁରା ନାମ ଭୀମରାଓ ଆମ୍ବେଦକର । ଆମ୍ବେଦକରଙ୍କୁ ୫ବର୍ଷ ବେଳେ ତାଙ୍କର ମାତୃ ବିୟୋଗ ଘଟିଥିଲେ ସୁଦ୍ଧା ପିତାଙ୍କ ଆଦର ଯତ୍ନରେ ନିର୍ଭୀକ ସତ୍ୟବାଦୀ ହେବାର ପ୍ରେରଣା ବା ଦୃଢ଼ ମନୋଭାବପାଇଁ ଖୋରାକ୍ ଯୋଗାଇ ଥିଲା; ଅବଶ୍ୟ ଅନେକ ସମୟରେ ଅପ୍ରିୟ ସତ୍ୟ ସାଙ୍ଗରେ ଜିଦ୍‌ଖୋର ମନୋଭାବ ପ୍ରକାଶ କରୁଥିଲେ ମଧ୍ୟ ପରିବାରକୁ ନିହାତି ଅସୁବିଧାରେ ପକାଇଲା ଭଳି ମନୋଭାବ ତାଙ୍କର ନଥିଲା । ଅନ୍ୟାୟ ଓ ମିଛକୁ ସେ ପିଲାବେଳୁ ମନ ଭିତରୁ ଫିଙ୍ଗି ଦେବାକୁ ଚେଷ୍ଟା କରିଥିଲେ ।

ସମୟ ଆସିଲା, ଚଟଶାଳୀକୁ ଯିବାର ବେଳ ତାଙ୍କର ହେଲା । ସ୍କୁଲରେ ଯେତେବେଳେ ପହଞ୍ଚିଲେ ଅସ୍ପୃଶ୍ୟତାର ଦଂଶନ ଅନୁଭବ କଲେ । ସବୁପିଲାଙ୍କ ସାଙ୍ଗରେ ଏକାଠି ବସିବା, ପଢ଼ିବା, ଖେଳିବା ଅଧିକାର ତାଙ୍କୁ ଦିଆଗଲା ନାହିଁ । ଏପରିକି ସ୍କୁଲ କୂଅରୁ ପାଣି ମୁନ୍ଦେ କାଢ଼ି ଅନ୍ୟ ପିଲା ତା ହାତରେ ଢାଳୁଥିଲେ । ଛୋଟପିଲା ମନରେ ଏଭଳି ଘଟଣା ବଡ଼ ବିସ୍ମୟ ସୃଷ୍ଟି କରିଥିଲା । ଏସବୁ ଘଟଣାକୁ ବୁଝିବା ପାଇଁ ବୟସ ତୁଳନାରେ ସେ ଅକ୍ଷମ ଥିଲେ । ଏଭଳି ଅନେକ ଘଟଣା ଘଟିଛି, ଏ ସମାଜ ତାଙ୍କୁ ଏତେ ନିର୍ଯ୍ୟାତନା ଦେଇଛି ଯାହାକି ବାଲ୍ୟକାଳରୁ ଭୀମରାଓଙ୍କ ମନରେ ଦାଗଭଳି ରହିଗଲା । ସେଭଳି ଘଟଣାକୁ ନେଇ ସେ ବରଂ ଦୃଢ଼ ଭାବାପନ୍ନ ହୋଇ ପାରିଥିଲେ । ତାଙ୍କର ଦୋଷ ଏତିକି ସେ ମାହାର ପରିବାରରେ ଜନ୍ମଗ୍ରହଣ କରିଥିଲେ । ଯେଉଁ ଜାତି ରକ୍ତ ଦେଇ ସମାଜକୁ ସମ୍ମାନ ଦେଇ ଶିଖିଥିଲା, ଯୋଦ୍ଧାର ବୀର ରକ୍ତ ଯେଉଁମାନଙ୍କର ସ୍ୱଚ୍ଛ ସୋଧିତ ହୋଇ ଦେଶ ଓ ଜାତିକୁ ସମ୍ମାନ ଦେବାପାଇଁ ଯେଉଁ ଜାତି ବଦ୍ଧପରିକର, ଲୋଭ, ମୋହ, କୂଟକପଟ ଓ

ଅନ୍ୟାୟ-ଅନୀତି ଯେଉଁମାନଙ୍କଠାରୁ ଦୂରରେ, ସେହି ଜାତି ହିଁ ଅସ୍ପୃଶ୍ୟ। ତାଙ୍କର ପିତା ରାମଜୀ ମଧ୍ୟ ସୈନ୍ୟବାହିନୀରେ କାର୍ଯ୍ୟ କରୁଥିଲେ। ଏହି ବାଲ୍ୟକାଳରୁ ଆମ୍ବେଦକରଙ୍କ ମନ ଇସ୍ପାତ ଭଳି କଠିନ ଥିଲା। ଆଉ ଦିନକର ଘଟଣା, ସେ ସ୍କୁଲକୁ ଯିବା ବାଟରେ ଭୀଷଣ ବର୍ଷା ହେଲା। ସାଙ୍ଗସାଥୀମାନେ ଫେରି କରି ଘରକୁ ପଳାଇ ଗଲେ। ଜିଦଖୋର ସେହି ବାଳକ ଭୀଷଣ ବର୍ଷାରେ ନିର୍ବିଘ୍ନରେ ସ୍କୁଲରେ ପହଞ୍ଚିଥିଲେ। ସେ ଜାଣିଥିଲେ ଛତା ଖଣ୍ଡେ ପରିବାର ତାଙ୍କୁ ଯୋଗାଇ ପାରିବ ନାହିଁ। ମାତୃହୀନ ଏହି ବାଳକ ଅଭାବଗ୍ରସ୍ତ ଅନୁନ୍ନତ ପରିବାରରେ ଅନେକ ଅସୁବିଧାର ସମ୍ମୁଖୀନ ହେଲେ ମଧ୍ୟ ନିଜକୁ ଦୃଢ଼ ଓ ସଚ୍ଚୋଟ ରଖିବାକୁ ପିଲା ଦିନରୁ ଚେଷ୍ଟା କରିଥିଲେ। ଆମ୍ବେଦକରଙ୍କ ବାପା ସାମରିକ ବାହିନୀରେ କାମ କରୁଥିବାରୁ ତାଙ୍କର ଘରଠାରୁ ଟିକିଏ ଦୂରରେ ରହୁଥିଲେ। ବାପାଙ୍କୁ ଦେଖିବାପାଇଁ ତାଙ୍କର ଭାରି ଇଚ୍ଛା ହେଲା। ତାଙ୍କର ଜଣେ ଭାଇଙ୍କୁ ସାଙ୍ଗରେ ଧରି ଗୋଟିଏ ଶଗଡ଼ରେ ମାସୁରୁ ରେଳ ଷ୍ଟେସନରୁ ଯିବା ପଥରେ ଆଗେଇଲେ। ଛୋଟଛୋଟ ଦୁଇ ପିଲା। ନିଜ ଜାତି, ଗୋତ୍ର ବିଷୟରେ କିଛି ଧାରଣା କରି ନଥିଲେ। କିଛି ଦୂର ଯିବା ପରେ ଗାଡ଼ିଆଳ ଯେତେବେଳେ ଜାଣିଲା ପିଲା ଦୁଇଟି ହେଉଛନ୍ତି ମହାର, ସେତେବେଳେ ଗାଡ଼ିଆଳ ଭୀଷଣ ରାଗି କରି ଏକ ଅସୁବିଧାରେ ସଙ୍କଟପୂର୍ଣ୍ଣ ଜାଗାରେ ଗାଡ଼ିର ଗୋଟିଏ ପାଖ ଏଭଳି ଭାବରେ ଓଲଟାଇ ଦେଲେ ଯେ ପିଲା ଯୋଡ଼ିକ ସାଙ୍ଘାତିକ ମରଣ ମୁଖରୁ ବଞ୍ଚିଗଲେ। ସେତିକିବେଳେ ନିଃସହାୟ ଭାବରେ ଭୟ ଓ ଯନ୍ତ୍ରଣାରେ ପାଖରେ ଥିବା ଲୋକମାନଙ୍କୁ ପାଣି ଟିକିଏ ମାଗି ଦୁଇ ପିଲା ନିରାଶ ହେଲେ। ଗାଡ଼ିଆଳର ଅସଭ୍ୟ କୁଭାଷାର ଗାଳି ଓ ଛୋଟ ପିଲାଙ୍କ ପ୍ରତି ଏଭଳି ନିର୍ମମ ବ୍ୟବହାର ଉପସ୍ଥିତ ଲୋକମାନଙ୍କ ଆଖିରେ ସମାଜ ସ୍ତରରେ ଅସ୍ପୃଶ୍ୟ ନିନ୍ଦନୀୟ ନଥିଲା, ବରଂ ପ୍ରତିଶୋଧମୂଳକ ଥିଲା ଏହି ଛୋଟ ପିଲା ଦୁଇଟିଙ୍କ ଉପରେ। ହୁଏତ ସେତେବେଳେ ସମାଜ କ'ଣ ଚାହିଁଥିଲା ? ଏ ଅନୁନ୍ନତ ଆଦିବାସୀ ଦଳିତ ଜାତି ଅକପଟ, ନିରଳସ, ମଣିଷ କଣ ଶେଷ ହେବା ଚାହେଁ? ତାହେଲେ ବିପଦ ସଙ୍କୁଳ ସମୟ, ଆତ୍ମରକ୍ଷାର ବଡ଼ିମା ନିର୍ମାଣର ମୂଳଦୁଆ କୃଷକର ମାଟିରୁ ସୁନା ଫଳେଇବାପାଇଁ ଶ୍ରମ, ବାଉଁଶ ଉପରେ ପତାକା ପରି ଝୁଲାଇ ପାରନ୍ତି ତ ? କେତେ ଘଣ୍ଟା ପରେ ଗାଡ଼ିଆଳ ତା ନିଜ ବାଟରେ ଚାଲିଗଲା। ଜନତାର ହାଟ କମି ଆସିଲା। ପିଲା ଦୁଇଟିଙ୍କର ମନରେ ଦମ୍ଭ ଆସିଲା। ତଥାପି ପାଣି ଟୋପାଏ ବିନା ପିଲା ଯୋଡ଼ିକ ଛଟପଟ ହୋଇଥିଲେ। ଆଖ ପାଖରେ କୂଅ, ପୋଖରୀ ଖୋଜି ଖୋଜି ଯିବା ବେଳକୁ ସେଥିରୁ ବାରଣ କରାଗଲା।

ଆଉ ଦିନକର ଘଟଣା। ଏଭଳି ନିରାଟ ଖରାବେଳେ କୌଣସି ଏକ ଦୂର ଜାଗାର ଗୋଟିଏ କୂଅରୁ ପାଣି କାଢ଼ି ପିଉଥିବାର ଦେଖି ଲୋକମାନେ ନିର୍ଘୃମ ମାଡ଼

ଦେଇଥିଲେ ଯାହାକି ତାଙ୍କ ମଥାରେ ଆଜୀବନ ଚିହ୍ନ ଓ ମନରେ ଦାଗ ହୋଇ ରହିଗଲା। ଦିନେ ତାଙ୍କ ବାଳ କାଟିବାପାଇଁ ସେ ଅନେକ ସେଲୁନ୍ ଓ ବାରିକ ପାଖକୁ ଗଲେ। ମଇଁଷିର କେଶ ଓ ଲାଞ୍ଜ, ମେଣ୍ଢା ଲୋମ ଏବଂ ରୋଗୀକୁ ଖିଅର କରୁଥିବା ବାରିକ ମଧ୍ୟ ରାଜି ହୋଇ ନଥିଲେ। ସତରେ ସମାଜ ଆଙ୍କୁ କେତେ ନୀଚ ସେବକ କରି ରଖିଛି। ସେଥିରେ ବାରିକ ଜାତି ଅଙ୍କ! ଛାଡ଼ ସମାଜ ଆଉ କିଏ! ରାଜା ଅମଳରେ ଘଟୂକାର ରାଜା ବୋଲାଇଲା ପରି ପାଦର ନଖ କାଟି ପାଦ ଧୂଆଇଲା ପରେ ଠାକୁର ଗାଧୁଆ କାମଟି ଏଇମାନଙ୍କୁ ସମ୍ମାନ ଅଧିକାର ଦେଇଛି ଏ ସମାଜରେ। ବଡ଼ ଆଶ୍ଚର୍ଯ୍ୟ ଏ ସାମାଜିକ ପରମ୍ପରା! କୌଶଳ ମଧ୍ୟ।

ଆଉ ଦିନକର ଘଟଣା। ଆମ୍ବେଦକର ସ୍କୁଲକୁ ଯିବା ବାଟରେ ଅତର୍କିତ ଭାବରେ ଭୀଷଣ ବର୍ଷା ପବନ ମାଡ଼ିଆସିଲା। ପବନର ବେଗ ଏପରି ଥିଲା ଯେ ରାସ୍ତାରେ ଚାଲି କରି ଯିବା ଆମ୍ବେଦକରଙ୍କ ପକ୍ଷେ ଏପରି ସମ୍ଭବ ନଥିଲା। ଅଜାଣତରେ ନିକଟରେ ଥିବା ଏକ ଘରର ବାରଣ୍ଡାରେ ଆଶ୍ରୟ ନେବାକୁ ବାଧ୍ୟ ହେଲେ। ଏହାଦେଖି ଗୃହକର୍ତ୍ତା ଭୀଷଣ ରାଗିଗଲେ। ଧକ୍‌କା ମାରି ସେହି ବର୍ଷା ପବନ କାଦୁଅ ପାଣିରେ ଆମ୍ବେଦକରଙ୍କୁ ମିଶାଇ ଦେବାକୁ ଚେଷ୍ଟା କଲେ। ହୁଏତ ପାଣି କାଦୁଅରେ ପିଲାଟି କଷ୍ଟ ପାଇଲା, ଗୃହକର୍ତ୍ତାଠାରୁ ଆଘାତ ପାଇଲା; କିନ୍ତୁ କିଛି ନ କହି ସେଠୁ ଚାଲିଗଲା। ଏହିପରି ଥରକୁ ଥର ନାନା ଲାଞ୍ଛନା ଓ କଟୁଭାଷାରେ ତପ୍ତ ଭାବରେ ଆଗ୍ନେୟଗିରି ପରି ପରିଣତ ହେବାକୁ ଲାଗିଲା। ନିଜକୁ ଅନେକ ସମୟରେ ତନ୍ନ ତନ୍ନ କରି ଦେଖନ୍ତି କିଛି ଦୋଷ କରିନାହାନ୍ତି ତ? ଦୋଷ ଏତିକି ଅସବର୍ଣ୍ଣ ଜାତିରେ ଜନ୍ମ। ସେ ପୁଣି କ'ଣ? ସେ କ'ଣ ତାଙ୍କ ଅପରାଧ? ଅନାଦର, ଅଛୁଆଁ କରି ରଖିଲେ ଏମାନେ କି ଲାଭ ପାଆନ୍ତି? ଧନୀ ସମ୍ପ୍ରଦାୟରେ ଅଭାବ ପୁଣି ସମାନ ଭାବରେ ଚଳୁଛି, ଶିକ୍ଷିତ ପାଖରେ ମୂର୍ଖ ଅଛୁଆଁଙ୍କର ଭାବ ସୃଷ୍ଟି କରି ପାରୁନି। ତେବେ ମୋର ଦୋଷ? ଏତିକ ମୋ ଜାତି ଅସବର୍ଣ୍ଣ। ଏହି ଆଘାତ ତାଙ୍କୁ ସାମାଜିକ ଆଇନର ସନ୍ଧାନରେ ଯିବାକୁ ବାଧ୍ୟ କରିଥିଲା। ଜୀବନକାଳ ଯାକ ଏହି ଚିନ୍ତା ଓ ଚେଷ୍ଟାରେ ସେ ଅସାଧ୍ୟ ସାଧନ କରିବାର ଗୌରବ ଅର୍ଜନ କରି ପାରିଥିଲେ।

ବୈଦିକ ଯୁଗରେ କୌଣସି ପ୍ରକାରର ଜାତି ଭେଦ ନଥିଲା। ସେତେବେଳେ କୌଣସି ପ୍ରକାରର ଅସ୍ପୃଶ୍ୟତା ଭାବ ନଥିଲା। ତାହେଲେ ହିନ୍ଦୁ ସମାଜ ଭିତରକୁ ଏହି ଜଘନ୍ୟ ପ୍ରଥା କେତେବେଳେ ପ୍ରବେଶ କଲା? ଠିକ୍ ଭାବରେ ଏହା ସ୍ଥିର କରିବା ସମ୍ଭବ ନୁହେଁ। ବୁଦ୍ଧ 'ସର୍ବଧର୍ମ ସମାନତ୍ୱ' ପ୍ରଚାର କରିଥିଲେ। ରାମାନୁଜାଚାର୍ଯ୍ୟ, ଚକ୍ରଧର, ବାସବେଶ୍ୱର, ରାମାନନ୍ଦ, ଚୈତନ୍ୟଦେବ, କବୀର, ଏକନାଥ, ତୁକାରାମ, ରାଜା ରାମମୋହନ ରାୟ ଓ ଅନେକ ମହାନ ବ୍ୟକ୍ତି ଏ ପାପର ପ୍ରାୟଶ୍ଚିତପାଇଁ ବହୁଚେଷ୍ଟା କରିବାର ଶୁଣାଯାଏ।

୧୮୮୩ ମସିହା ବେଳକୁ ଜଣେ ଚିନ୍ତାଶୀଳ ବ୍ୟକ୍ତି ସ୍କୁଲ, କଲେଜରେ ଅସବର୍ଣ୍ଣମାନଙ୍କୁ ବୁଝାଇଥିଲେ । ପ୍ରବେଶ କରାଇ ଥିଲେ । ଭାରତ ସ୍ୱାଧୀନତା ହେବା ପୂର୍ବରୁ ଓ ପରେ ଏହି ବର୍ଣ୍ଣ ବୈଷମ୍ୟ ଦୂର କରିବାପାଇଁ ଚେଷ୍ଟା କରିଥିବା ବ୍ୟକ୍ତିମାନଙ୍କ ମଧ୍ୟରୁ ଭୀମରାଓ ଆମ୍ବେଦକର ଅନ୍ୟତମ । କିନ୍ତୁ ତାଙ୍କପରି କଠିନ ସଂଗ୍ରାମ ଯଦି ହୋଇଥାନ୍ତା ହୁଏତ ଏହାର ବିଲୋପ ନିଶ୍ଚିତ ଭାବରେ ହୋଇ ପାରିଥାନ୍ତା । ସେ ଯାହା ହେଉ, ଏ ଜାତି ସବୁବେଳେ ସମାଜର ଦୟା ଉପରେ ନିର୍ଭର କରେ ଓ କରି ଆସୁଛି ମଧ୍ୟ ।

ସମୟ କ୍ରମେ ଭୀମରାଓ ହାଇସ୍କୁଲର ଛାତ୍ର । ସେହି ସ୍କୁଲର ଜଣେ ବ୍ରାହ୍ମଣ ଶିକ୍ଷକ ଆମ୍ବେଦକରଙ୍କ ମାନସିକ ପ୍ରତିଭାର ପ୍ରଥମ କରି ପ୍ରଶଂସା କରିଥିଲେ । ସେହି ଶିକ୍ଷକଙ୍କର ପରିବାରକୁ ଲୋକେ ଆମ୍ବେଦକର ପରିବାର କହୁଥିଲେ । ଯେତେବେଳେ ଆମ୍ବେଦକରଙ୍କ ପିତା ଦ୍ୱିତୀୟ ଥର ବିବାହ କଲେ ତାଙ୍କ ମନରେ ଘୋର ପରିବର୍ତ୍ତନ ଆସିଲା । ଆମ୍ବେଦକର ଦୃଢ଼ ସଂକଳ୍ପ ନେଲେ ସ୍ୱାଧୀନ, ଚେତନଶୀଳ ଓ ଆତ୍ମନିର୍ଭରଶୀଳ ହେବା ପାଇଁ ହେଲେ ଅଧ୍ୟୟନରେ ସାଫଲ୍ୟ ଅର୍ଜନ କରିବା ଏକମାତ୍ର ବାଟ । ସମୟ ଆସିଲା, ବମ୍ବେରେ ତାଙ୍କର ନାମ ଲେଖା ନିତ୍ୟାନ୍ତ ଲୋଡ଼ା, ପଇସା ନାହିଁ । ତାଙ୍କୁ ସେଥିପାଇଁ ବିଚଳିତ ହେବାକୁ ପଡ଼ିଲା । ରେଳରେ ଯିବାପାଇଁ ଭଡ଼ା ବି ସେ ସଂଗ୍ରହ କରିପାରି ନଥିଲେ । ତିନିଦିନ ଧରି ପଇସା ଚିନ୍ତାରେ ନିରାଶ ହେଲାପରେ ପ୍ରଥମଥରପାଇଁ ତାଙ୍କ ଖୁଡ଼ୀଙ୍କ ପଇସା ମୁଣି ଚୋରି କରିବାପାଇଁ ବାଧ୍ୟ ହେଲେ । କିନ୍ତୁ ସେଥିରେ ଥିଲା ତିନୋଟି ମାତ୍ର ପଇସା । ସେଥିରେ ଆମ୍ବେଦକର ଖୁସି ନହୋଇ ମର୍ମାହତ ଓ ଲଜ୍ଜିତ ହୋଇ ଉଠିଲେ । ଏହା ବୋଧହୁଏ ଥିଲା ଈଶ୍ୱରଙ୍କର ପରୀକ୍ଷା । କାରଣ ତାହାହିଁ ତାଙ୍କୁ ଅର୍ଥ ଲୋଭଠୁଁ ଦୂରେଇ ନେଲା । ସେ ଚାଲିଚାଲି ଦୀର୍ଘ କେତେ କୋଶ ବାଟ ଅତିକ୍ରମ କଲେ । ସେହି ସମୟରେ ହାତଗୋଡ଼ ଥାଇ ପଇସା ଅନାବଶ୍ୟକ ଅନୁଭବ କଲେ । ଆମ୍ବେଦକରଙ୍କପାଇଁ ପୁସ୍ତକ ଥିଲା ଅତି ପ୍ରିୟବସ୍ତୁ ଓ କେବେହେଲେ ସେ ଅଧ୍ୟୟନରେ କ୍ଳାନ୍ତ ହୋଇ ନଥିଲେ । ଏହି ଅଧ୍ୟୟନ ପିପାସା ଶାନ୍ତ କରିବାକୁ ତାଙ୍କ ପିତା ଋଣ କରିବାକୁ କୁଣ୍ଠିତ ହୋଇ ନଥିଲେ ।

ଆମ୍ବେଦକରଙ୍କ ଯିବାପରେ ତାଙ୍କ ବାପା ରହିପାରିଲେ ନାହିଁ । କେଜାଣି କେମିତି ତାଙ୍କ ବିନା ବାତ୍ସଲ୍ୟବତ୍ସଳ ପିତାଙ୍କ ମନ ବିଚଳିତ ହେଲା । ସେ ସାମରିକ ବାହିନୀରେ ରହି ଅନେକ ଦୁଃଖ, ଯାତନା ହଜମ କରିବା ଶକ୍ତି ପାଇ ସାରିଥିଲେ । ତାହାଛଡ଼ା ଆମ୍ବେଦକରଙ୍କ ପ୍ରତିଭା, ଦୃଢ଼ ମନୋବଳ, ଆତ୍ମନିର୍ଭରଶୀଳତା ତାଙ୍କୁ ଅଧିକ ଖୁସି ଓ ଆସକ୍ତ କରିଥିଲା । ମୋ ଠାରୁ ଦୂରରେ ରହି ପିଲା ମୋର ନିଃସହାୟ ମନେ ନକରୁ ଏତିକି ଥିଲା ତାଙ୍କର ମନବଳ । ବମ୍ବେରେ ଏଲ୍‌ଫିନ୍‌ଷ୍ଟୋନ୍ ହାଇସ୍କୁଲରେ ନାମ ଲେଖାଇଲା ବେଳକୁ ପରିବାରରୁ

ବାପା ମାଆ ବମ୍ବେରେ ପହଞ୍ଚିଥିଲେ । ପଇସା ଅଭାବରୁ ଗୋଟିଏ କୁଲି ବସ୍ତିରେ ଏକ ଛୋଟିଆ କୁଡ଼ିଆ ଘର ଯୋଗାଡ଼ କଲେ । ସେ ଗୋଟିଏ କୋଠରୀରେ ରୋଷେଇ, ପଢ଼ିବା, ଶୋଇବା, ରହିବା ଇତ୍ୟାଦି ବଡ଼ କଷ୍ଟକର ମନେହେଉଥିଲା । ଏପରିକି ରାତ୍ରିରେ ଦୁଇଜଣ ଲେଖା ପାଳିକରି ଶୁଅନ୍ତି । ଭୀମରାଓ ଖୁବ୍ ସହଳ ସହଳ ଶୋଇବାକୁ ଯାଉଥିଲେ । ତାଙ୍କ ମୁଣ୍ଡ ଉପରେ ରହୁଥିଲା ଏକ ବଟାବଟିର ଶୀଳ ଓ ପାଦତଳେ ବନ୍ଧା ହୋଇଥିଲା ଏକ ଛେଳି । ସେ ଯାହା ହେଲେ ବି ରାତି ୨ଟାରେ ତାଙ୍କୁ ଉଠିବା ପାଇଁ ପଡୁଥିଲା ବାପାଙ୍କ ଶୋଇବା ସକାଶେ । ସେତିକି ବେଳଠୁଁ ସେ ଡିବିରି ଲଗାଇ ପଢ଼ାପଢ଼ି ଆରମ୍ଭ କରୁଥିଲେ ଓ ଯଥେଷ୍ଟ ପଢୁଥିଲେ ।

ହାଇସ୍କୁଲରେ ସେ ଏପରି ଆଘାତ ପାଇଥିଲେ ଯାହାକି ସେ ସାରା ଜୀବନରେ ଭୁଲି ପାରିନଥିଲେ । ଭୀମଙ୍କର ସଂସ୍କୃତ ପଢ଼ିବାପାଇଁ ଖୁବ୍ ଆଗ୍ରହ ଥିଲା । ସ୍କୁଲର ଅନ୍ୟାନ୍ୟ ହିନ୍ଦୁଛାତ୍ରମାନେ ସଂସ୍କୃତ ପଢ଼ି ପାରୁଥିଲେ; କିନ୍ତୁ ତାଙ୍କୁ ସେ ସୁବିଧାର ସୁଯୋଗ ଦିଆଗଲା ନାହିଁ । ଏପରିକି ଅଣହିନ୍ଦୁ ଛାତ୍ରମାନେ ସେ ସୁବିଧା ପାଇଲା ବେଳେ ତାଙ୍କ ପ୍ରତି ଯେ ଅନ୍ୟାୟ ହୋଇଛି ଏ ତିକ୍ତ ଭାବନା ତାଙ୍କୁ ଆହୁରି ଗଭୀର ଚିନ୍ତାଶୀଳ ହେବାକୁ ସୁଯୋଗ ଆଣିଦେଲା । ପରେ ବର୍ଲିନ୍‌ରେ ଆମ୍ବେଦକର ସଂସ୍କୃତ ପଢ଼ିବାର ସୁଯୋଗ ପାଇଥିଲେ ।

ଆମ୍ବେଦକର ମାଟ୍ରିକୁଲେଶନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ସେତେବେଳେ ତାଙ୍କୁ ୧୭ ବର୍ଷ । ରମାବାଇଙ୍କ ସହିତ ତାଙ୍କର ବିବାହ ସମ୍ପନ୍ନ ହେଲା ବାଇକୁଲା ମାର୍କେଟର ଗୋଟିଏ କୋଠରୀରେ ।

ଆମ୍ବେଦକର ଆଇ.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ୧୯୧୨ରେ ସେ ମଧ୍ୟ ବି.ଏ. ଡିଗ୍ରୀ ହାସଲ କଲେ । ଏଲ୍‌ଫିନ୍‌ଷ୍ଟୋନ୍ କଲେଜରୁ ଡିଗ୍ରୀସହ ପ୍ରଂଶସା ପତ୍ର ନେଇ ବିଦାୟ ନେଲେ । ତାଙ୍କ ଫେରିବାର ବର୍ଷକ ଭିତରେ ତାଙ୍କର ପିତୃ ବିୟୋଗ ଘଟିଲା ୧୯୧୩ରେ । ସେତେବେଳେ ବାଧହୋଇ ବରଦା ମହାରାଜାଙ୍କ ଅଧିନରେ କାର୍ଯ୍ୟକଲେ । ତାଙ୍କ ଜୀବନ ସଂଗ୍ରାମର ପ୍ରଥମ ଗର୍ବର ସମାପ୍ତି ଏହିପରି ଭାବରେ ହେଲା ।

ବରଦା ମହାରାଜାଙ୍କ ଅଧୀନରେ କିଛିଦିନ କାମକଲା ପରେ ପଙ୍କରୁ ପଙ୍କଜ ଭଳି ତାଙ୍କ ପ୍ରତିଭାର ବିକାଶ ପ୍ରସରିତ ହେଲା । ଗୁଣମୁଗ୍ଧ ମହାରାଜା ଆମ୍ବେଦକରଙ୍କୁ ଉଚ୍ଚଶିକ୍ଷା ପାଇଁ ଆମେରିକା ପଠାଇଲେ । ହୁଏତ ଏହା ନିୟତିର ଇଚ୍ଛା ଥିଲା । ଆମେରିକାରେ ଆମ୍ବେଦକର ଏଇ ନୂତନ ଜୀବନର ସ୍ୱାଦ ଅନୁଭବ କଲେ । ସେଠାରେ ଅସ୍ପୃଶ୍ୟତା ବୋଲି କିଛି ନଥିଲା ।

ଏହି ବାତାବରଣରେ ରହି ତାଙ୍କ ବଂଧୁଙ୍କ ନିକଟକୁ ଲିଖିତ ଏକ ପତ୍ରରେ ମହାନ ନାଟ୍ୟକାର ସେକ୍‌ସ୍‌ପିୟରଙ୍କ ଏକ ଉଦ୍ଧୃତି ଦେଇଥିଲେ "ମଣିଷ ଜୀବନରେ

ସମୟ ସମୟରେ ଏକ ଉତ୍ତାଳ ତରଙ୍ଗ ଅସେ; ଯଦି ମଣିଷ ଏହି ସୁଯୋଗର ସଦୁପୋଯୋଗ କରେ ତେବେ ଏହା ତାକୁ ତାର ଭାଗ୍ୟୋଦୟ ଦିଗରେ ବହି ନେଇଯିବ।"

ଆମ୍ବେଦକର ଏଠାରେ ଏକ ଚିନ୍ତାପୂର୍ଣ୍ଣ ଥେସିସ୍ ଲେଖିଥିଲେ ଏବଂ ଏମ୍.ଏ. ଓ ପି.ଏଚ.ଡି ଉପାଧି ଲାଭ କରିଥିଲେ। ୧୯୧୭ ଅଗଷ୍ଟ ୨୧ ତାରିଖରେ ସେ ଭାରତକୁ ପ୍ରତ୍ୟାବର୍ତ୍ତନ କଲେ।

ଆମ୍ବେଦକରଙ୍କ ଅଧ୍ୟୟନ ବ୍ୟାପାରରେ ଆଉ ଏକ ବିଷୟ ଉଲ୍ଲେଖଯୋଗ୍ୟ। ସେ ଭାରତରେ ଇଂରାଜୀ ଓ ପାରସୀ ଭାଷା ଅଧ୍ୟୟନ କରିଥିଲେ। ଆମେରିକାରେ ରାଜନୀତି ବିଜ୍ଞାନ, ଇତିହାସ ନୀତିଶାସ୍ତ୍ର, ନୃତତ୍ତ୍ୱ, ସମାଜ ବିଜ୍ଞାନ ଓ ଅର୍ଥନୀତି ପଢ଼ିଥିଲେ। ଏହି ଭାବରେ ସେ ଅନେକ ବିଷୟ ଅଧ୍ୟୟନ କରିଥିଲେ। ସେ ଡକ୍ଟରେଟ୍ ଉପାଧି ଲାଭ କରିଥିଲେ। ଏପରିକି ସେହି ସମୟରେ ମଧ୍ୟ ଆମ୍ବେଦକରଙ୍କର ମନ ଏକ ବୈପ୍ଳବିକ ମନ ଥିଲା। ତଥାକଥିତ ନୀଚଜାତିଙ୍କ ଉପରେ ହେଉଥିବା ଅନ୍ୟାୟକୁ ପୁରା ନିର୍ମୁଳ କରିବାକୁ ସେ ଏକ ଅଟଳ ସଂକଳ୍ପ ନେଇଥିଲେ। ଏହି ଭାବରେ ହିନ୍ଦୁ ସମାଜରେ ଏକ ବିପ୍ଳବ ଆଣିବା ପାଇଁ ତାଙ୍କର ଥିଲା ପ୍ରଧାନ ଲକ୍ଷ୍ୟ। କିନ୍ତୁ ସେ ଗୁରୁତ୍ୱ ଦେଇଥିଲେ ଯେ ବିପ୍ଳବୀ ହେବା ପୂର୍ବରୁ ଯେପରି ନିଜର ଜ୍ଞାନର ପରିସର ଯଥେଷ୍ଟ ବୃଦ୍ଧି କରନ୍ତି। ଏହି କାରଣରୁ ତାଙ୍କର ଚିନ୍ତା ଧାରା କେବଳ ହାଲୁକା ଭିତ୍ତି ଉପରେ ଛିଡ଼ା ହୋଇ ନଥିଲା; ବିଭିନ୍ନ ତଥ୍ୟର ଦୃଢ଼ ଭିତ୍ତି ଉପରେ ତାହା ପ୍ରତିଷ୍ଠିତ ଥିଲା। ଏହା ଫଳରେ ହିଁ ଭାରତର ସଂବିଧାନ ପ୍ରଣୟନରେ ସେ ଏପରି ସଫଳ ଭୂମିକା ଗ୍ରହଣ କରିବାକୁ ସକ୍ଷମ ହୋଇଥିଲେ।

ଡକ୍ଟରେଟ୍ ଉପାଧି ପାଇ ପୁଣିଥରେ ଆମେରିକାରୁ ଭାରତକୁ ଫେରିଲେ। ବରଦା ମହାରାଜାଙ୍କ ଅଧୀନରେ ଉଚ୍ଚପଦସ୍ଥ କର୍ମଚାରୀ ରୂପେ ନିଯୁକ୍ତି ପାଇଲେ। କିନ୍ତୁ ଭାରତରେ ପାଦଦେଲାକ୍ଷଣି ସେ ଅସ୍ପୃଶ୍ୟତାର ଦଂଶନ ପୁଣିଥିରେ ଅନୁଭବ କଲେ। ବରଦାରେ ପହଞ୍ଚିଲା ବେଳକୁ ତାଙ୍କୁ କେହି ପାଛୋଟି ନେବାକୁ ଆସିଲେ ନାହିଁ। ଆଦର ସମ୍ମାନ ତ ଦୂରର କଥା, ଆହୁରି ଦୁର୍ଭାଗ୍ୟର ବିଷୟ ଅଫିସରେ କର୍ମଚାରୀମାନେ ତାଙ୍କ ହାତକୁ ଫାଇଲ ଦିଅନ୍ତି ନାହିଁ ଓ ସମୟେ ସମୟେ ତାଙ୍କ ପାଖକୁ କିରାନୀମାନେ ଫାଇଲ ଫିଙ୍ଗିଦେବାର ଦେଖା ଯାଇଛି! ପିଅନ ଚପରାସି ପାଣି ଗ୍ଲାସ ଆଣିବାକୁ କୁଣ୍ଠିତ ଓ ଅନ୍ୟାନ୍ୟ ଅଫିସର କାର୍ଯ୍ୟରେ ବହୁ ଅସୁବିଧା ଭୋଗିବାକୁ ପଡ଼ିଲା। ଏପରିକି ରହିବା ପାଇଁ ଘର ଖଣ୍ଡେ ମଧ୍ୟ ପାଇଲେ ନାହିଁ। ଏ ସବୁ ଅସୁବିଧା ଥରେ ଅଧେ ବରଦା ରାଜାଙ୍କ ନିକଟରେ ଅଭିଯୋଗ କରିଥିଲେ ମଧ୍ୟ ତାହା ନିଷ୍ଫଳ ହେଲା।

ଅଣହିନ୍ଦୁମାନେ ମଧ୍ୟ ତାଙ୍କ ପ୍ରତି ବଡ଼ ଅସମ୍ମାନ କରୁଥିଲେ। ଆମ୍ବେଦକରଙ୍କ ମନରେ ହିନ୍ଦୁମାନଙ୍କ ବିରୁଦ୍ଧରେ ରାଗର ଅଗ୍ନି ଆହୁରି ଅଧିକ ପ୍ରଜ୍ଜ୍ୱଳିତ ହେବାକୁ ଲାଗିଲା। ଚାକିରି ମୋହ ତୁଟାଇ ଅଳ୍ପ କେଇଦିନ ଭିତରେ ସେ ବମ୍ବେ ଫେରିଗଲେ। ୧୯୨୦ରେ ଉଚ୍ଚତର ଅଧ୍ୟୟନ ପାଇଁ ବିଲାତ ଅଭିମୁଖେ ଯାତ୍ରା କଲେ।

ଲଣ୍ଡନର ବ୍ରିଟିଶ୍ ମ୍ୟୁଜିୟମରେ ଏକ ଭଲ ଲାଇବ୍ରେରୀ ଥିଲା। ତାହା ସକାଳ ୮ଟାରେ ଖୋଲେ ଏବ ସଂନ୍ଧ୍ୟା ୫ଟା ବେଳେ ବନ୍ଦ ହୁଏ। ସବୁଦିନ ଆମ୍ବେଦକର ୮ଟା ବେଳକୁ ପହଞ୍ଚି ଯାଇଥାନ୍ତି। ସଂନ୍ଧ୍ୟା ୫ଟା ପର୍ଯ୍ୟନ୍ତ କେବଳ ପଢୁଥିଲେ।

ଏଇଠି ଆସ୍‌ନୋଦକରଙ୍କ ସହିତ ତାଙ୍କର ପରିଚୟ ହେଲା। ସେ ବ୍ୟକ୍ତିଜଣଙ୍କ ଜଣେ ଧନୀ ପରିବାରର ସନ୍ତାନ ଥିଲେ। ପାଠ ପଢ଼ିବା ପାଇଁ ଲାଇବ୍ରେରୀକୁ ଆସିଲାବେଳେ କେବଳ ମଉଜ କରିବା ତାଙ୍କର କାମ। ଆମ୍ବେଦକରଙ୍କ ସାଥି ରୂପେ ପରିଚୟ ହୋଇଥିବାରୁ ବେଳେ ବେଳେ ତାଙ୍କୁ ଅସୁବିଧାରେ ପକାଏ। ସେ ଯାହାହେଉ ଆମ୍ବେଦକର ତାଙ୍କୁ କହିଥିଲେ ତୁମେ ଧନୀଘରର ପିଲା ହୋଇପାର, ଅଜସ୍ର ଧନ ଥାଇପାରେ; କିନ୍ତୁ ଭୁଲି ଯାଉଛ ତୁମେ ଜଣେ ମଣିଷ। ତୁମେ ନିଜକୁ ମଣିଷ ଭାବରେ କେଉଁ କାର୍ଯ୍ୟରେ ନିଯୁକ୍ତି କରିବ ଏବଂ ସେଥିପାଇଁ ତୁମର କେଉଁଭଳି କୃତିତ୍ୱ ଲୋଡ଼ା ତାହାହିଁ ତୁମେ ଅର୍ଜନ କରିବାକୁ ଚେଷ୍ଟାକର। ବିଦ୍ୟାଦେବୀ ତୁମ ଚାହିଁବା ଅନୁସାରେ ଆସନ୍ତି ନାହିଁ। ସେ ଯେତେବେଳେ ଆସିବେ ସେତେବେଳେ ତାଙ୍କର ଆଶୀର୍ବାଦ ମଣିଷ ପକ୍ଷେ ଲାଭ କରିବା ଉଚିତ୍।

ସୌଜନ୍ୟ : ଶ୍ରୀମତୀ ଶାନ୍ତିପ୍ରିୟା ଜେମା, *ଡକ୍ଟର ଭୀମରାଓ ଆମ୍ବେଦକର* (ସଂକ୍ଷିପ୍ତ ଜୀବନୀ), ୧୯୭୮, କଟକ: ପୁଷ୍ପଗିରି ପ୍ରକାଶନୀ।

# ଏ ଶତାବ୍ଦୀର ମନୁ

ହରେକୃଷ୍ଣ ମହତାବ

ଡକ୍ଟର ଭୀମରାଓ ଆମ୍ବେଦକର ଭାରତର ଏ ଶତାବ୍ଦୀର ଜଣେ ଶ୍ରେଷ୍ଠ ପୁରୁଷ । ସେ କେବଳ ଅସ୍ପୃଶ୍ୟ ଜାତିର ସମସ୍ୟା ସହିତ ସଂପୃକ୍ତ ଥିଲେ ତାହା ନୁହେଁ । ସେ ଥିଲେ ଭାରତର ଗଣତାନ୍ତ୍ରିକ ସମ୍ବିଧାନର ପ୍ରଣେତା । ସମ୍ବିଧାନ ନିର୍ମାଣ ସମ୍ମିଳନୀରେ ସମ୍ବିଧାନର ବିଭିନ୍ନ ଦିଗ ଉପରେ ତାଙ୍କର ଭାଷଣ ଓ ମତ ଚିରଦିନ ଉଦ୍ଧୃତ ହେଉଥିବ । ବିଦ୍ୟାଳୟମାନଙ୍କରେ, ଗଣତନ୍ତ୍ର ପଦ୍ଧତିରେ ତାଙ୍କର ଦୃଢ଼ ବିଶ୍ୱାସ ଥିଲା । ତେଣୁ ସେ ଉଦ୍ୟମ କରିଥିଲେ ବର୍ଣ୍ଣଭେଦଗ୍ରସ୍ତ ଭାରତୀୟ ସମାଜକୁ ଗଣତନ୍ତ୍ର ପଦ୍ଧତି ଉପଯୋଗୀ କରିବା ପାଇଁ । ସେଥିପାଇଁ ଅସ୍ପୃଶ୍ୟ ଜାତିମାନଙ୍କ ରାଜନୈତିକ ଓ ସାମାଜିକ ଅଧିକାର ସବର୍ଣ୍ଣ ହିନ୍ଦୁମାନଙ୍କ ସହିତ ସମାନହେଉ ବୋଲି ସେ ଆନ୍ଦୋଳନ କରୁଥିଲେ । ସବର୍ଣ୍ଣମାନଙ୍କ ମଧ୍ୟରେ ବର୍ଣ୍ଣଭେଦ ଦୂର ହେଉ ବୋଲି ମଧ୍ୟ ସେ ଆନ୍ଦୋଳନ କରୁଥିଲେ । ବ୍ରାହ୍ମଣ୍ୟ ଧର୍ମ ପ୍ରଭାବରେ ହିନ୍ଦୁ ସମାଜ ଭେଦଗ୍ରସ୍ତ, ଏହା ଥିଲା ତାଙ୍କର ବିଶ୍ୱାସ । ତେଣୁ ସେ ବୌଦ୍ଧ ଧର୍ମର ଆଶ୍ରୟ ଗ୍ରହଣ କରିଥିଲେ । ବାସ୍ତବିକ ବୌଦ୍ଧ ଧର୍ମ ଭାରତୀୟ ସମାଜକୁ ଯେ ସମତାସମ୍ପନ୍ନ ଗଣତାନ୍ତ୍ରିକ କରିଥିଲା ତାହା ବ୍ରାହ୍ମଣ୍ୟ ଧର୍ମର ପୁନରୁତ୍‌ଥାନ ଯୋଗେ ନଷ୍ଟଭ୍ରଷ୍ଟ ହୋଇଗଲା । ଇତିହାସରେ ଡକ୍ଟର ଆମ୍ବେଦକରଙ୍କପାଇଁ ଏ ହିସାବ ରହିବ ଯେ ସେ ହିନ୍ଦୁ ସମାଜକୁ ଗଣତାନ୍ତ୍ରିକ କରିବାପାଇଁ ସମସ୍ତ ଶକ୍ତି ପ୍ରୟୋଗ କରିଥିଲେ । ଏକ ସମୟରେ ମନୁ ଯେପରି ହିନ୍ଦୁ ସମାଜ ପରିଚାଳନାପାଇଁ 'ସଂହିତା' ରଚନା କରିଥିଲେ, ସେହିପରି ଆମ୍ବେଦକର ଭାରତୀୟ ସମାଜରେ ଗଣତାନ୍ତ୍ରିକ ପଦ୍ଧତି ପ୍ରଚଳନପାଇଁ ଭାରତୀୟ 'ସମ୍ବିଧାନ' ପ୍ରଣୟନ କରିଛନ୍ତି । ତାଙ୍କରି ସମ୍ବିଧାନ ଆଜି ସମାଜ ଓ ରାଜନୀତିକୁ ପରିଚାଳନା କରୁଛି ।

ତାଙ୍କର ଜୀବନୀ ପ୍ରତ୍ୟେକ ଭାରତୀୟଙ୍କ ଅବଲମ୍ବନର ବିଷୟ । ଶ୍ରୀମତୀ ଶାନ୍ତିପ୍ରିୟା ଜେମା ଏ ଦିଗରେ ଯେଉଁ ଉଦ୍ୟମ କରିଛନ୍ତି ତାହା ପ୍ରଶଂସନୀୟ; କିନ୍ତୁ ଏହା ପ୍ରାଥମିକ କ୍ଷୁଦ୍ର ଉଦ୍ୟମ ମାତ୍ର । ଆମ୍ବେଦକରଙ୍କ ବିସ୍ତୃତ ଜୀବନୀ ଓଡ଼ିଆ ପାଠକପାଠିକାମାନଙ୍କପାଇଁ ସେ ପ୍ରସ୍ତୁତ କରିବେ ବୋଲି ଆଶା ।

ସୌଜନ୍ୟ: ଶ୍ରୀମତୀ ଶାନ୍ତିପ୍ରିୟା ଜେମା, *ଡକ୍ଟର ଭୀମରାଓ ଆମ୍ବେଦକର*, ୧୯୭୮, କଟକ: ପୁଷ୍ପଗିରି ପ୍ରକାଶନୀ ।

# ଭାରତରନ୍ନ ଡକ୍ଟର ଆମ୍ବେଦକର

ଶ୍ରୀରାମଚନ୍ଦ୍ର ଦାଶ

ଭାରତରତ୍ନ ଡଃ ଭୀମରାଓ ରାମଜୀ ଆମ୍ବେଦକରଙ୍କୁ ଆଧୁନିକ ଭାରତର ମନୁ କୁହାଯାଏ । କାରଣ ଶାସନ ବିଧାୟକ ସଭା ଭାରତୀୟ ସଂବିଧାନ ପ୍ରଣୟନ କରିବା ବେଳେ ସେ କେନ୍ଦ୍ର ସରକାରଙ୍କ ଆଇନ୍ ମନ୍ତ୍ରୀ ଭାବରେ ଚିଠା ସଂବିଧାନ ରଚନାକରି ଉକ୍ତ ସଭାରେ ଗ୍ରହଣ କରାଇଥିଲେ । ଗୋଟିଏ ସ୍ୱାଧୀନ ରାଷ୍ଟ୍ର ସଂବିଧାନ ଅନୁସାରେ ପରିଚାଳିତ ହୁଏ । ସଂବିଧାନ ହେଉଛି ରାଷ୍ଟ୍ରର ଯାବତୀୟ କ୍ଷମତାର ଉତ୍ସ । ସଂସଦ ବା ବିଧାନମଣ୍ଡଳ କିଭଳି ଭାବରେ ଗଠିତ ହୋଇ କେଉଁକେଉଁ କ୍ଷମତା ଉପଭୋଗ କରିବ, କାର୍ଯ୍ୟପାଳକ ଅନୁଷ୍ଠାନର ଗଠନ ପ୍ରଣାଳୀ ଓ କ୍ଷମତା ପରିସର ଏବଂ ନ୍ୟାୟ ପାଳିକାର ସଂଗଠନ ଓ କ୍ଷମତାସୂଚୀ ଏହି ସଂବିଧାନରେ ଲିପିବଦ୍ଧ ହୋଇଥାଏ । ରାଷ୍ଟ୍ରୀୟ ଅନୁଷ୍ଠାନଗୁଡ଼ିକ ଗଠିତ ହୋଇଗଲେ ସେମାନେ ମଧ୍ୟ ନିଜପାଇଁ ନିୟମାବଳୀ ପ୍ରଣୟନ କରି ତଦନୁସାରେ ପରିଚାଳିତ ହୋଇ ନିଜ କର୍ତ୍ତବ୍ୟ ସଂପାଦନ କରନ୍ତି । ସଂବିଧାନ ହିଁ ରାଷ୍ଟ୍ରକୁ ସଂଗଠିତ ଓ ପରିଚାଳିତ କରେ । ଯେପରି ବୈଦିକଯୁଗରେ ମନୁସ୍ମୃତି ଥିଲା ଭାରତୀୟ ସମାଜର ନିୟମାବଳୀ, ଠିକ୍ ସେହିପରି ଭାରତୀୟ ସଂବିଧାନ ହେଉଛି ଆଧୁନିକ ଭାରତର ଗଠନତନ୍ତ୍ରର ନିୟାମକ । ସେହି ହେତୁ ଆମ୍ବେଦକରଙ୍କୁ ଆଧୁନିକ ଭାରତର ମନୁ ବୋଲି ନାମକରଣ କରାଯାଇଛି । ଏହା ଗୋଟିଏ ଐତିହାସିକ ବିଡ଼ମ୍ବନା ଯେ ମନୁ ଥିଲେ ଜାତି ବିଭାଗର ସ୍ରଷ୍ଟା କିନ୍ତୁ ଆଧୁନିକ ମନୁ ଡକ୍ଟର ଆମ୍ବେଦକର ଜାତିବିଭାଗ ଯୋଗୁଁ ଜୀବନରେ ନିଷ୍ପେଷିତ ହୋଇ ଏହାର ସଂହାରକ ହେଲେ । ତାଙ୍କ ଉଦ୍ୟମ ଫଳରେ ଏହି ଜାତି ବିଭାଗର କଠୋରତା ଶିଥିଳ ହୋଇଯାଇଛି ଏବଂ ଅନୁସୂଚିତ ଜାତିମାନେ ନିଜ ସ୍ୱାଧିକାର ଲାଭ କରିଛନ୍ତି ।

ଅବଶ୍ୟ ମହାତ୍ମା ଗାନ୍ଧୀ ୧୯୩୪ ମସିହାରୁ ହରିଜନ ଆନ୍ଦୋଳନର ସୂତ୍ରପାତ କରି ଓ ସଦାସର୍ବଦା ନିଜ 'ହରିଜନ' ପତ୍ରିକାରେ ଆଲୋଚନା କରି ସବର୍ଣ୍ଣ ଓ ଅସବର୍ଣ୍ଣ ଭେଦଭାବ ଲୋପ କରିବା ଲାଗି ଯଥେଷ୍ଟ ଉଦ୍ୟମ କରିଥିଲେ । ତଥାପି ଏହା ଅନସ୍ୱୀକାର୍ଯ୍ୟ ଯେ ଆମ୍ବେଦକରଙ୍କ ସାହସ ଯୋଗୁଁ ସଂବିଧାନର ସତର ଧାରାରେ ଲେଖାଗଲା "ଅସ୍ପୃଶ୍ୟତାକୁ ଉଠାଇ ଦିଆଗଲା ଓ ଏହାର ଯେକୌଣସି ପ୍ରକାର ଚଳଣିକୁ ନିଷଦ୍ଧ କରାଗଲା । ଜାତି ବିଭାଗ ଗୋଟିଏ ସାମାଜିକ ପ୍ରଥା ହୋଇଥିବାରୁ ଆଇନଦ୍ୱାରା ଏହାକୁ ଉଠାଇ ଦେଇ ହେବ ନାହିଁ । ଆଧୁନିକ ସହରୀ ତଥା ଶିକ୍ଷିତ ସମାଜରେ ଜାତିଭେଦ ନାହିଁ କହିଲେ ଚଳେ କିନ୍ତୁ ଗାଁ

ଗହଳରେ ଏହା ଲୋପ ପାଇନାହିଁ। ଅନୁସୂଚିତ ଜାତିମାନଙ୍କ ସ୍ୱାଭିମାନ ବୃଦ୍ଧି ପାଇଥିବାରୁ ଶିକ୍ଷିତ ଲୋକମାନଙ୍କ କୁପରାମର୍ଶରେ ଏବେ ବି ପଲ୍ଲୀସମାଜରେ ନାନାବିଧ ଜାତିଆଣ ବିଶୃଙ୍ଖଳା ପରିଦୃଷ୍ଟ ହୁଏ। ତଥାପି ଡଃ ଆମ୍ବେଦକରଙ୍କ ଦଳିତ-ଉଦ୍ଧାର ଅବଦାନ ଅବିସ୍ମରଣୀୟ ହୋଇ ରହିଛି।

ଡଃ ଆମ୍ବେଦକରଙ୍କୁ ଅନେକ ସମୟରେ ଲୋକେ ଜଣେ ଅନୁସୂଚତ ଜାତିର ନେତା ରୂପେ ବର୍ଣ୍ଣନା କରନ୍ତି ଓ ତାଙ୍କ ଜନ୍ମ ଶତବାର୍ଷିକୀ ପାଳନ କ୍ଷେତ୍ରରେ ସେହିମାନେ ହିଁ ନେତୃତ୍ୱ ନେଉଛନ୍ତି। ଏତଦ୍ୱାରା ଭାରତମାତାଙ୍କର ଏହି ସୁଯୋଗ୍ୟ ସନ୍ତାନଙ୍କ ପ୍ରତିଭା ଓ ଅବଦାନକୁ ହ୍ରାସ କରାଯାଉଛି। ତାଙ୍କ ମହାନ୍ ଅବଦାନ ଯୋଗୁଁ ତାଙ୍କୁ ଏହି ଦେଶର ରାଷ୍ଟ୍ରପତି ମରଣୋତ୍ତର ହେଉ ପଛକେ ଭାରତରତ୍ନ ଉପାଧିରେ ଭୂଷିତ କରିଛନ୍ତି। ସେ ଯେଉଁ ଜାତିର ଲୋକ ହୁଅନ୍ତୁ ପଛକେ ତାଙ୍କ ପରି ଜଣେ ଅସାଧାରଣ ବ୍ୟକ୍ତିତ୍ୱ ସମ୍ପନ୍ନ ପ୍ରତିଭାଧରଙ୍କୁ କୌଣସି ଜାତିର ସଂକୀର୍ଣ୍ଣ ଗଣ୍ଡି ମଧ୍ୟରେ ଆବଦ୍ଧ କରି ରଖି ହେବନାହିଁ। ମହାତ୍ମା ଗାନ୍ଧୀଙ୍କୁ ଜଣେ ବଣିଆ, ଜବାହାରଲାଲ ନେହେରୁଙ୍କୁ ଜଣେ ବ୍ରାହ୍ମଣ, ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କୁ ଜଣେ ଚଷା, ଡଃ ରାଜେନ୍ଦ୍ର ପ୍ରସାଦଙ୍କୁ ଜଣେ କାୟସ୍ଥ ବା ମୌଲନା ଆବୁଲ କାଲାମ ଆଜାଦଙ୍କୁ ଜଣେ ମୁସଲମାନ ନେତାରୂପେ ଚିତ୍ରଣ କରାଯାଏ ନାହିଁ। ସେହିପରି ଡଃ ଆମ୍ବେଦକରଙ୍କୁ କେବଳ ଜଣେ ହରିଜନ ନେତା କୁହାଯିବ କାହିଁକି ? ସେ ବସ୍ତୁତଃ ଭାରତର ଜଣେ ତୁଙ୍ଗ ନେତୃସ୍ଥାନୀୟ ବ୍ୟକ୍ତି। ତାଙ୍କ ପ୍ରତି ସମଗ୍ର ଜାତି କୃତଜ୍ଞ ହେବା ଉଚିତ।

ତାଙ୍କ ବାଲ୍ୟଜୀବନ ଆଲୋଚନା କରିବାବେଳେ ଅନେକ ଅତ୍ୟାଚାର କାହାଣୀ ବର୍ଣ୍ଣନା କରାଯାଏ। ସେ ତାଙ୍କ ପିତାଙ୍କ ନିକଟକୁ ଯିବାବେଳେ ବଳଦ ଗାଡ଼ିବାଲା ତାଙ୍କୁ ଅଛବ ଜାତିର ପିଲା ବୋଲି ଜାଣି ଗାଡ଼ି ଲେଉଟାଇ ପକାଇବା, ଆହତ ହୋଇ ପାଣି ପାଣି ଚିତ୍କାର କରିବା ସତ୍ତ୍ୱେ ତାଙ୍କୁ ପାଣି ଟୋପାଏ ନ ଦେବା, ବିଦ୍ୟାଳୟ ଗୃହ ଭିତରେ ସବୁ ପିଲାଙ୍କ ସହିତ ବସି ନପାରି ବାହାର ପିଣ୍ଡାରେ ବସି ପାଠ ପଢ଼ିବା, ସ୍କୁଲରୁ ଘରକୁ ଫେରିବା ବେଳେ ବର୍ଷାରେ ତିନ୍ତି ଯାଇ ସୁଦ୍ଧା ନିଜ ସାଥି ପିଲା ଜଣଙ୍କ ମା' ତାଙ୍କୁ ପିଣ୍ଡା ଉପରୁ ତଡ଼ି ଦେବା, ଏପରିକି ବରୋଦା ରାଜ୍ୟରେ ଉଚ୍ଚ ଚାକିରି ପାଇଥିଲେ ସୁଦ୍ଧା ତାଙ୍କ ଅଧସ୍ତନ କର୍ମଚାରୀମାନେ ତାଙ୍କ ଟେବୁଲକୁ ଛୁଇଁ ଦେଲେ ଜାତି ଚାଲିଯିବା ଭୟରେ ଦୂରରୁ ତାଙ୍କ ନିକଟକୁ ଫାଇଲ ଫୋପାଡ଼ି ଦେବା କିମ୍ବା ରହିବା ଲାଗି ତାଙ୍କୁ ଘର ନ ମିଳିବା ଓ ଲୁଚିଛପି ଗୋଟିଏ ହୋଟେଲରେ ସ୍ଥାନ ପାଇଥିଲେ ସୁଦ୍ଧା ତାଙ୍କୁ ସେଥିରୁ ବଳପୂର୍ବକ ତଡ଼ାଇ ଦେବା ଆଦି ଘଟଣା ଶହେ ବର୍ଷ ପୂର୍ବର ରକ୍ଷଣଶୀଳ ସମାଜରେ

ଆଶ୍ଚର୍ଯ୍ୟଜନକ କିମ୍ବା ଅଘଟଣ ପରି ପ୍ରତୀୟମାନ ହୁଏ ନାହିଁ ଏବଂ ଏପରି ଅଘଟଣ ସତ୍ତ୍ୱେ ଯେ ଆମ୍ବେଦକର ପାଠପଢ଼ି ଏଡ଼େ ବଡ଼ ମଣିଷ ହୋଇ ପାରିଲେ ଏହାହିଁ ତାଙ୍କ ଗୌରବ ବୃଦ୍ଧି କରେ। ସେ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ନାମ ଲେଖାଇବା ମାତ୍ରକେ ତାଙ୍କ ବୁଦ୍ଧିମତ୍ତାର ପ୍ରଣାମ ମିଳିଲା ଏବଂ ବରୋଦା ମହାରାଜାଙ୍କ ବଦାନ୍ୟତା ଯୋଗୁଁ ସେ ଯୁକ୍ତରାଷ୍ଟ୍ର ଆମେରିକାର କଲମ୍ବିଆ ବିଶ୍ୱବିଦ୍ୟାଳୟରୁ ଅର୍ଥନୀତିରେ ଏମ୍.ଏ ଓ ଡକ୍ଟରେଟ୍ ଉପାଧି ଲାଭ କଲେ ଏବଂ ତାହାର ଚାରିବର୍ଷ ପରେ ଲଣ୍ଡନ ଯାଇ ସେଠାରେ ଡି.ଏସ୍‌ସି. ଉପାଧି ଓ ବାରିଷ୍ଟରୀ ଯୋଗ୍ୟତା ହାସଲ କଲେ, ତାହାହିଁ ତାଙ୍କ ବିରାଟ ପ୍ରତିଭାର ନିଦର୍ଶନ। ସେ ପ୍ରଥମେ ବମ୍ବେର ସୀଡ଼େନହାମ ବାଣିଜ୍ୟ କଲେଜ ଓ ପରେ ସରକାରୀ ଆଇନ୍ କଲେଜରେ ଅଧ୍ୟାପକ ନିଯୁକ୍ତି ହେଲେ ଏବଂ ଆଇନ୍ କଲେଜର ଅଧକ୍ଷ ମଧ ହୋଇଥିଲେ। ସେ ଛାତ୍ର ଜୀବନରେ ସଂସ୍କୃତ ଅଧ୍ୟୟନ କରି ପାର ନଥିଲେ ବୋଲି ବିଲାତରୁ ଜର୍ମାନୀ ଯାଇ ବର୍ଲିନ୍ ବିଶ୍ୱବିଦ୍ୟାଳୟରୁ ସଂସ୍କୃତରେ ଯୋଗ୍ୟତାର ପ୍ରମାଣ ପତ୍ର ହାସଲ କରିଥିଲେ। ସାମାଜିକ ଅସୁବିଧା ସତ୍ତ୍ୱେ ଭୀମରାଓ କେବଳ ନିଜ ପ୍ରତିଭାଯୋଗୁଁ ଏପରି ଉଚ୍ଚ ଶିକ୍ଷିତ ହୋଇପାରିଲେ, ଏହାହିଁ ତାଙ୍କ ବ୍ୟକ୍ତିତ୍ୱର ପରାକାଷ୍ଠା।

ସେ ଅଛବ ଜାତିର ସାମାଜିକ ଅଭ୍ୟୁତ୍‌ଥାନ, ଅର୍ଥନୈତିକ ପ୍ରଗତି ଓ ରାଜନୈତକି ସ୍ୱାଭିମାନ ପାଇଁ ଆଜୀବନ ସଂଗ୍ରାମ କରି ଯଶସ୍ୱୀ ହୋଇଥିଲେ। ସାମାଜିକ ଉନ୍ନତିପାଇଁ ସେ ଗାନ୍ଧୀଙ୍କ ଅହିଂସା ସତ୍ୟାଗ୍ରହ ପନ୍ଥା ବାଛି ନେଇଥିଲେ। ଦଳିତମାନଙ୍କର ମନ୍ଦିର ପ୍ରବେଶ ଓ ସାଧାରଣ ପୁଷ୍କରିଣୀରେ ସ୍ନାନ କରିବା ଅଧିକାରପାଇଁ ନାସିକ ସହରରେ ଯେଉଁ ବିପୁଳ ଜନସମାଗମ କରାଇ ପାରିଥିଲେ ଏବଂ ତାଙ୍କ ଆନ୍ଦୋଳନ ଯୋଗୁଁ କେବଳ ଯେ ଏହି ଦୁଇଟି ଅଧିକାର ସାବ୍ୟସ୍ତ ହୋଇଥିଲା, ସେତିକି ନୁହେଁ, ବମ୍ବେ ରାଜ୍ୟର ବିଧାନ ପରିଷଦରେ ଏହି ଅଧିକାରକୁ ସ୍ୱୀକୃତି ଦେବା ଲାଗି ଆଇନ ପ୍ରଣୟନ କରିବାକୁ ବାଧ୍ୟ ହୋଇଥିଲେ। ତାଙ୍କ ସଂପାଦିତ "ମୂକନାୟକ" ପତ୍ରିକା ଓ ପ୍ରାଚୀରପତ୍ର ଆଦି ମାଧ୍ୟମରେ ସେ ନିଜର ମତବାଦକୁ ବଳିଷ୍ଠ ଭାବରେ ଉପସ୍ଥାପନ କରିପାରିଥିଲେ। ତାଙ୍କର ବଳିଷ୍ଠ ଯୋଗ୍ୟତା ଓ ପାରଦର୍ଶିତାରେ ମୁଗ୍ଧ ହୋଇ ବ୍ରିଟିଶ୍ ସରକାର ତାଙ୍କୁ ବମ୍ବେ ବିଧାନସଭା ସଭ୍ୟରୂପେ ମନୋନୟନ କରିଥିଲେ।

ଦଳିତମାନଙ୍କ ସ୍ୱାଭିମାନ ଜାଗ୍ରତ କରିବା ଲାଗି ସେ ସେମାନଙ୍କପାଇଁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ଓ ନିର୍ବାଚିତ ଅନୁଷ୍ଠାନଗୁଡ଼ିକରେ ସ୍ୱତନ୍ତ୍ର ଆସନ ଦାବୀର ସୂତ୍ରପାତ କଲେ। ଇଂରେଜ ସରକାର ମୁସଲମାନମାନଙ୍କୁ ଏପରି ଅଧିକାର ୧୯୦୯ ରୁ ଦେଇସାରିଥିଲେ; ତେଣୁ ୧୯୨୮ରେ ଭାରତରେ ଶାସନ ସଂସ୍କାର ସମ୍ବନ୍ଧରେ ସୁପାରିଶ କରିବା ଲାଗି ଇଂରେଜ ସରକାର ସାର ଜନ୍ ସାଇମାନଙ୍କ ଅଧକ୍ଷତାରେ ଗୋଟିଏ ଆୟୋଗ ଭାରତକୁ ପଠାଇଲେ।

ସେଥିରେ କେବଳ ଇଂରେଜମାନେ ସଭ୍ୟ ଥିଲେ ବୋଲି କଂଗ୍ରେସ ସବୁଆଡ଼େ ସେମାନଙ୍କ କାର୍ଯ୍ୟାବଳୀକୁ ବାଧା ଦେଲା । ଏହି ସୁବିଧା ନେଇ ଡକ୍ଟର ଆମ୍ବେଦକର ସେମାନଙ୍କ ଆଗରେ ସ୍ୱତନ୍ତ୍ର ନିର୍ବାଚନ ଦାବୀ ଉପସ୍ଥାପନ କଲେ । ଏହି କମିଶନ ବହୁ ଉପାଦେୟ ପ୍ରସ୍ତାବ ଦେଇଥିଲେ କିନ୍ତୁ ଭରୀତୀୟ ନେତୃବୃନ୍ଦ ସେମାନଙ୍କ ସହିତ ଅସହଯୋଗ କରିଥିଲେ ବୋଲି ସେମାନେ ଭାରତରୁ ବିଭିନ୍ନ ଦଳର ନେତୃ ସ୍ଥାନୀୟ ବ୍ୟକ୍ତିବୃନ୍ଦଙ୍କୁ ଲଣ୍ଡନକୁ ଡକାଇ ବିଚାର ଆଲୋଚନା କରିବା ଲାଗି ସରକାରଙ୍କୁ ପରାମର୍ଶ ଦେଲେ । ଏଥିପାଇଁ ୧୯୩୦, ୧୯୩୧ ଓ ୧୯୩୨ ରେ ତିନିଥର ଲଣ୍ଡନରେ ତଥାକଥିତ ଗୋଲଟେବୁଲ୍ ବୈଠକ ବସିଥିଲା । ନିଖିଳ ଭାରତ ଅନୁସୂଚିତ ସଂଘର ପ୍ରତିନିଧି ରୂପେ ଡକ୍ଟର ଆମ୍ବେଦକର ତତ୍‌କାଳୀନ ସରକାରଙ୍କଦ୍ୱାରା ମନୋନୀତ ହୋଇ ଏହି ସମ୍ମିଳନୀରେ ଯୋଗ ଦେଇଥିଲେ । ଦଳିତମାନଙ୍କପାଇଁ ତାଙ୍କ ସ୍ୱତନ୍ତ୍ର ଭୋଟ ଅଧିକାର ଓ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ଦାବୀକୁ କଂଗ୍ରେସ ତରଫରୁ ଏକମାତ୍ର ପ୍ରତିନିଧିରୂପେ ଦ୍ୱିତୀୟ ଗୋଲଟେବୁଲ ବୈଠକରେ ଯୋଗ ଦେଇଥିବା ଗାନ୍ଧୀଜୀ ପ୍ରବଳ ବିରୋଧ କଲେ । କୌଣସି ରାଜିନାମା ହୋଇ ନପାରିବାରୁ ଏହି ସାଂପ୍ରଦାୟିକ ବଣ୍ଟୁଆରା କାର୍ଯ୍ୟକୁ ନିଜେ ବ୍ରିଟିଶ୍ ପ୍ରଧାନମନ୍ତ୍ରୀ ରାମସେ ମାକଡୋନାଲଡ୍ କରି ଦିଅନ୍ତୁ ବୋଲି ପ୍ରତିନିଧିମାନେ ତାଙ୍କୁ ଦାୟିତ୍ୱ ଦେଇଥିଲେ । ୧୯୩୨ ଅଗଷ୍ଟ ମାସରେ ପ୍ରଧାନମନ୍ତ୍ରୀ ଏହି ସାଂପ୍ରଦାୟିକ ବଣ୍ଟୁଆରାରେ ଦଳିତମାନଙ୍କୁ ଗୋଟିଏ ସ୍ୱତନ୍ତ୍ର ସଂପ୍ରଦାୟରୂପେ ବିଚାର କରି ସ୍ୱତନ୍ତ୍ର ନିର୍ବାଚନ ବ୍ୟବସ୍ଥା କରିଦେଲେ । ଏହି ଘୋଷଣାବେଳେ ଗାନ୍ଧିଜୀ ପୁନାର ୟାରବାଡ଼ା ଜେଲରେ ଆଇନ ଅମାନ୍ୟ ଆନ୍ଦୋଳନ ଯୋଗୁଁ ଜେଲ ଦଣ୍ଡଭୋଗ କରୁଥିଲେ ।

ଏହି ବଣ୍ଟୁଆରାକୁ ବିରୋଧ କରି ସେ ଜେଲ ଭିତରେ ଆମରଣ ଅନଶନ ଆରମ୍ଭ କରିଦେଲେ । ଏହାଦ୍ୱାରା ଭାରତ କମ୍ପି ଉଠିଲା । ଦଳିତ ସଂପ୍ରଦାୟ ତରଫରୁ ଡକ୍ଟର ଆମ୍ବେଦକର ଓ ମାନ୍ଦ୍ରାଜର ଏମ୍.ସି.ରାଜା ଏବଂ ମଧ୍ୟସ୍ଥ ଭାବରେ କାର୍ଯ୍ୟ କରିଥିବା ସାର୍ ତେଜ ବାହାଦୂର ସାପ୍ରୁ ଓ ଶ୍ରୀନିବାସ ଶାସ୍ତ୍ରୀ ଗୋଟିଏ ଚୁକ୍ତି ସ୍ୱାକ୍ଷର କରାଇ ଦେଲେ । ଏହାହିଁ ୧୯୩୨ର ପୁନାଚୁକ୍ତି ନାମରେ ଖ୍ୟାତ । ଏହି ଚୁକ୍ତି ଅନୁସାରେ ଦଳିତମାନେ ସାଧାରଣ ନିର୍ବାଚନ ହେବା ଆଗରୁ ଏକ ପ୍ରାଥମିକ ନିର୍ବାଚନରେ ଚାରିଜଣ ପ୍ରାର୍ଥୀ ବାଛିବେ । ସେମାନେ ସାଧାରଣ ନିର୍ବାଚନରେ ସବର୍ଣ୍ଣ ପ୍ରାର୍ଥୀମାନଙ୍କ ସହିତ ମିଶି ନିର୍ବାଚନରେ ଲଢ଼ିବେ । କେତେକ ସ୍ଥାନ ଦଳିତମାନଙ୍କପାଇଁ ସଂରକ୍ଷିତ ରହିବ । ଏହି ସ୍ଥାନଗୁଡ଼ିକ ପୂରଣ କରିବା ପାଇଁ ଦ୍ୱୈତ ନିର୍ବାଚନ ମଣ୍ଡଳୀ ଗଠିତ ହେବ । ତନ୍ମଧ୍ୟରୁ ଜଣେ ହେବେ ଦଳିତ ପ୍ରତିନିଧି; ଅପର ଜଣକ ସବର୍ଣ୍ଣ ବା ଦଳିତ । ଯେ ଅଧିକ ସଂଖ୍ୟକ ଭୋଟ ପାଇବେ, ତାଙ୍କଦ୍ୱାରା ପୂରଣ ହେବ । ଏହି ଚୁକ୍ତି ଫଳରେ ଏକ ପକ୍ଷରେ ଗାନ୍ଧିଜୀ ଓ ଅପରପକ୍ଷରେ

ଡକ୍ଟର ଆମ୍ବେଦକର ଉଭୟଙ୍କ କଥା ରହି ଗୋଟିଏ ସାଲିସ ହୋଇଗଲା । ଦଳିତମାନେ ସାଧାରଣ ହିନ୍ଦୁ ସମାଜର ଅଂଶ ବିଶେଷ ହୋଇ ରହିଲେ ।

ପୁନା-ଚୁକ୍ତି ପରେ ଡକ୍ଟର ଆମ୍ବେଦକର ଅଧ୍ୟାପନା ଓ ପୁସ୍ତକ ରଚନାରେ ବ୍ୟାପୃତ ରହିଲେ, ସାମୟିକ ଅଧ୍ୟାପନା କରୁଥିଲେ ବୋଲି ଆଇନ୍ ବ୍ୟବସାୟ ମଧ୍ୟ କରୁଥିଲେ । ସେ ସମଗ୍ର ଭାରତ ପରିଭ୍ରମଣ କରି ଦଳିତମାନଙ୍କ ସ୍ଥିତି ଅଧ୍ୟୟନ କରିଥିଲେ । ନିଖିଳ ଭାରତ ଖ୍ୟାତି ଅର୍ଜନ କରିବା ପରେ ନିଜ ଶାସନ ପରିଷଦରେ ଯୋଗ ଦେବା ଲାଗି ବଡ଼ଲାଟ ଲର୍ଡ଼ ଲିନଲିଥଗୋଙ୍କ ନିମନ୍ତ୍ରଣ ପାଇ ସେ ଶାସନ ଦାୟିତ୍ୱ ବହନ କଲେ । ଦଳିତ ନେତା ଭାବରେ ତାଙ୍କ ସୁଖ୍ୟାତି ଯୋଗୁଁ କଂଗ୍ରେସ ତରଫରୁ ବିହାରର ଜଗଜ୍ଜୀବନ ରାମ ନିଖିଳ ଭାରତ ଦଳିତ ଜାତିସଂଘ ଗଠନ କଲେ । ସେ ଏଥିପାଇଁ ଦୀର୍ଘକାଳ ପର୍ଯ୍ୟନ୍ତ କେନ୍ଦ୍ରରେ ମନ୍ତ୍ରୀରୂପେ ରହିଥିଲେ । ଡକ୍ଟର ଆମ୍ବେଦକର ଶାସନ ପରିଷଦର ସଭ୍ୟ ଥିଲେ ବୋଲି ପରେ ଅସ୍ଥାୟୀ ମନ୍ତ୍ରୀମଣ୍ଡଳର ଆଇନମନ୍ତ୍ରୀ ଭାବରେ ଶାସନ ବିଧାୟକ ସଭାର ସଭ୍ୟ ଥିଲେ । ସେହି ହିସାବରେ ସେ ଭାରତୀୟ ସମ୍ବିଧାନର ପ୍ରଣେତା ହୋଇ ଅକ୍ଷୟକୀର୍ତ୍ତୀ ରଖି ଯାଇଛନ୍ତି ।

ଦଳିତମାନଙ୍କପାଇଁ ଏତେ ଉଦ୍ୟମ କରି ସେମାନଙ୍କ ସାମାଜିକ ଉନ୍ନତି ନ ହେବାରୁ ସେ ହିନ୍ଦୁଧର୍ମ ପ୍ରତି ବୀତସ୍ପୃହ ହୋଇ ପ୍ରାୟ ତିନିଲକ୍ଷ ଅନୁଗାମୀଙ୍କ ସହ ୧୯୫୬ ଅକ୍ଟୋବର ୧୪ ତାରିଖ ଦିନ ନାଗପୁରଠାରେ ବୌଦ୍ଧଧର୍ମ ଗ୍ରହଣ କରିଥିଲେ, ତାହାର କାରଣ, ବୌଦ୍ଧଧର୍ମରେ ଜାତି ବିଭାଗ ନଥାଏ ଏବଂ ବୌଦ୍ଧଧର୍ମର ସ୍ଥାପୟିତା ମହାତ୍ମା ଗୌତମ ବୁଦ୍ଧ ସତ୍ୟ ଓ ଅହିଂସାର ଉପସ୍ଥାପକ ଥିଲେ । ସେ ବୌଦ୍ଧଧର୍ମ ଗ୍ରହଣ କରିବା ପୂର୍ବରୁ ହିନ୍ଦୁକୋଡ଼ ବିଲ୍ ପାଶ୍ ନ ହେବା କାରଣରୁ ପ୍ରତିବାଦ କରି କେନ୍ଦ୍ର ଆଇନ ମନ୍ତ୍ରୀ ପଦରୁ ଇସ୍ତଫା ଦେଇଥିଲେ । ସ୍ୱାଧୀନ ଭାରତରେ ନିଜ ମତ ପାର୍ଥକ୍ୟ ଯୋଗୁଁ ମନ୍ତ୍ରୀମଣ୍ଡଳରୁ ଇସ୍ତଫା ଦେବା ନେତାମାନଙ୍କ ମଧ୍ୟରୁ ସେ ଅନ୍ୟତମ ଥିଲେ । ସେ ନିଜେ ଗାନ୍ଧିଜୀଙ୍କପରି ହିନ୍ଦୁ ଧର୍ମରେ ସଂସ୍କାର ଚାହୁଁଥିଲେ । ତାହା ନ ହୋଇପାରିବାରୁ ସେ ସ୍ୱଧର୍ମକୁ ତ୍ୟାଗ କଲେ ପଛକେ, ନିଜ ସମାଜ ସଂସ୍କାର କାର୍ଯ୍ୟରୁ ନିବୃତ୍ତ ହୋଇ ନଥିଲେ । ତଥାପି ସେ ସଂବିଧାନର ୨୫ ଧାରାରେ ଲିପିବଦ୍ଧ କରି ଯାଇଛନ୍ତି ଯେ ବୌଦ୍ଧମାନେ ମଧ୍ୟ ହିନ୍ଦୁ । ତେଣୁ ତାଙ୍କୁ ଧର୍ମଦ୍ରୋହୀ କୁହାଯାଇ ପାରିବ ନାହିଁ ।

ଡକ୍ଟର ଭୀମରାଓ ରାମଜୀ ଆମ୍ବେଦକର ମହାରାଷ୍ଟ୍ର ରତ୍ନଗିରୀ ଜିଲ୍ଲାର ଅଧିବାସୀ ଥିଲେ । ସେ ୧୮୯୧ ମସିହା ଅପ୍ରେଲ ୧୪ ତାରିଖ ମହାବିଷୁବ ସଂକ୍ରାନ୍ତି ଦିନ ଜନ୍ମଗ୍ରହଣ କରିଥିଲେ ଏବଂ ମାତ୍ର ୬୪ ବର୍ଷ ବୟସରେ ୧୯୫୬ ମସିହା ଡିସେମ୍ବର ୬ ତାରିଖ ଦିନ ଶେଷନିଶ୍ୱାସ ତ୍ୟାଗ କରିଥିଲେ । ସେ ଆଉ ନଅ ଦିନ ମାତ୍ରା ବଞ୍ଚିରହିଥିଲେ ଡିସେମ୍ବର ୧୫ ତାରିଖ ଦିନ ଆହୁରି ଅନେକ ଅନୁଗାମୀମାନଙ୍କୁ ନାଗପୁରଠାରେ ବୌଦ୍ଧ ଧର୍ମରେ ଦୀକ୍ଷା

ଦେଇଥାନ୍ତେ । ଗୌତମ୍ ବୁଦ୍ଧଙ୍କ ପରି ତାଙ୍କ ଅସ୍ଥିକୁ ଗୋଟିଏ ସ୍ତୂପରେ ସଂରକ୍ଷଣ କରାଯାଇଛି । ସେ ନିଜ ପିତାମାତାଙ୍କ ଚତୁର୍ଦ୍ଦଶ ତଥା ସର୍ବ କନିଷ୍ଠ ସନ୍ତାନ ଥିଲେ ଏବଂ ଦୁଇ ଥର ବିବାହ କରିଥିଲେ । ତାଙ୍କ ପୁତ୍ର ଯଶୋବନ୍ତ ରାଓ ଆମ୍ବେଦକର ମଧ୍ୟ ପିତାଙ୍କ ପଦାଙ୍କ ଅନୁସରଣ କରି ଦଳିତ କଲ୍ୟାଣ କାର୍ଯ୍ୟରେ ନିଜକୁ ନିୟୋଜିତ କରିଛନ୍ତି ।

ଆମ୍ବେଦକରଙ୍କପାଇଁ କୌଣସି ସ୍ମୃତିସ୍ତମ୍ଭ ବା ସ୍ମାରକୀ ଅନାବଶ୍ୟକ । ସେ ତାଙ୍କ ସ୍ୱଳ୍ପ ଜୀବନକାଳ ମଧ୍ୟରେ ଭାରତ ଇତିହାସରେ ଯେଉଁ ପଦାଙ୍କ ରଖିଯାଇଛନ୍ତି, ତାଙ୍କୁ ଦେଶବାସୀ କେବେ ହେଲେ ଭୁଲିପାରିବେ ନାହିଁ । ଭାରତୀୟ ସଂବିଧାନ ଏହି ରାଷ୍ଟ୍ରର ଅକ୍ଷୟ ଓ ଅବିନଶ୍ୱର । ସେହିପରି ବାବାସାହେବ ଡକ୍ଟର ଭୀମରାଓ ରାମଜୀ ଆମ୍ବେଦକର ଜାତୀୟ ଇତିହାସରେ ଅବିସ୍ମରଣୀୟ ବ୍ୟକ୍ତି ରୂପେ ଚିରଦିନ ରହିଥିବେ ।

# ଡକ୍ଟର ଭୀମରାଓ ରାମଜୀ ଆମ୍ବେଦକର

ମାୟାଧର ମାନସିଂହ

ଆମ୍ବେଦକର(୧୮୯୧-୧୯୫୬) ଭାରତର ଅନୁନ୍ନତ ସମ୍ପ୍ରଦାୟର ପ୍ରସିଦ୍ଧ ନେତା ଓ ଭାରତୀୟ ସମ୍ବିଧାନର ରଚୟିତା। ୧୮୯୧ରେ 'ମାହାର' ନାମକ ଅସ୍ପୃଶ୍ୟ ଜାତିରେ ପୂର୍ବତନ ବମ୍ବେଇ ପ୍ରଦେଶରେ ଭୂମିଷ୍ଠ ହୋଇଥିଲେ। ପିତା ଯୁଦ୍ଧବିଭାଗରେ ନିମ୍ନଶ୍ରେଣୀର କର୍ମଚାରୀ ଥିବାରୁ, ତାଙ୍କର ପ୍ରାଥମିକ ଶିକ୍ଷାବ୍ୟବସ୍ଥା ଅବାଧରେ ହୋଇପାରିଥିଲା। କିନ୍ତୁ ସେତେବେଳେ ଅସ୍ପୃଶ୍ୟ ଜାତିଙ୍କ ଉଚ୍ଚଶିକ୍ଷାପାଇଁ କୌଣସିଠାରେ ସୁବିଧା ନ ଥିଲା। କିନ୍ତୁ ତାଙ୍କର ପାଠପଢ଼ିବାର ଆଗ୍ରହ ଦେଖି ବରୋଦାର ତତ୍‌କାଳୀନ ଉଦାର ମହାରାଜା ଗାଇକ୍‌ୱାଡ୍ ତାଙ୍କୁ ନିଜ ରାଜ୍ୟର ଏକ କଲେଜରେ ବି.ଏ. ପାଶ୍ କରିବାଯାଏ ପଢ଼ିବାର ସୁବିଧା କରାଇଦେଇଥିଲେ। ବି.ଏ. ପାଶ୍‌କଲା ପରେ ମହାରାଜାଙ୍କ ଅର୍ଥସାହାଯ୍ୟ ପାଇ ସେ ଆମେରିକାର କଲମ୍ବିଆ ବିଶ୍ୱବିଦ୍ୟାଳୟକୁ ଯାଇ ସେଠାରେ ଅର୍ଥନୀତିରେ ଏମ.ଏ. ଓ ପି.ଏଚ୍.ଡ଼ି. ଡ଼ିଗ୍ରୀ ପାଇଲେ ଓ ସେଠାରୁ ଆସି ଏକବର୍ଷକାଳ ଲଣ୍ଡନର ଇଣ୍ଡିଆ ଅଫିସ୍ ଲାଇବ୍ରେରୀରେ ଗବେଷଣା କରିଥିଲେ। ୧୯୧୭ରେ ଭାରତକୁ ଫେରି ବମ୍ବେଇର ସିଡେନ୍‌ହାମ୍ ବାଣିଜ୍ୟ କଲେଜରେ ଅଧ୍ୟାପକ ହୋଇଥିଲେ। ଏହାପରେ ବାରିଷ୍ଟରି ପଢ଼ିବାକୁ ବିଲାତ ଯାଇ ୧୯୨୩ରେ ବାରିଷ୍ଟର ହେଲେ। ବମ୍ବେଇରେ ବାରିଷ୍ଟରି କରିବାପାଇଁ ତାଙ୍କୁ ନାନା ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥିଲା। କ୍ଷୌର ହେବାପାଇଁ ଗଲେ ତାଙ୍କୁ କୌଣସି ସାଲୁନ୍ ପଶିବାକୁ ଦେଉ ନଥିଲେ। ଏଥିନିମିତ୍ତ ଗଭୀର ମନଃକଷ୍ଟରେ ସେ ଭାରତୀୟ ଅସ୍ପୃଶ୍ୟମାନଙ୍କ ଉନ୍ନତି ନିମିତ୍ତ ଏକ ଅନୁଷ୍ଠାନ ଗଢ଼ିଲେ ଏବଂ ଉଚ୍ଚବର୍ଣ୍ଣର ହିନ୍ଦୁଙ୍କ ପ୍ରତି ଜୀବନବ୍ୟାପୀ ବିଦ୍ୱେଷ ପୋଷଣକଲେ। ୧୯୨୭ ଖ୍ରୀଷ୍ଟାବ୍ଦରେ ସରକାର ତାଙ୍କୁ ଅଛୁଆଁ ଜାତିଙ୍କ ପ୍ରତିନିଧିଭାବରେ ବମ୍ବେଇ ପ୍ରାଦେଶିକ ସଭାକୁ ସଭ୍ୟ ମନୋନୀତ କରିଥିଲେ ଓ ସେହି ସୂତ୍ରରେ ସେ ଭାରତୀୟ ରାଜନୀତିରେ ପ୍ରବେଶ ଲାଭକଲେ। ତାଙ୍କରି ପ୍ରବର୍ତ୍ତନାରେ ହିଁ ଇଂରେଜ ସର୍କାର ସେତେବେଳେ ଅସ୍ପୃଶ୍ୟମାନଙ୍କପାଇଁ ପୃଥକ୍ ନିର୍ବାଚନ ବ୍ୟବସ୍ଥା କରିବାକୁ ବାହାରିଲେ, ସେତେବେଳେ ତାହା ବନ୍ଦ କରିବାପାଇଁ ମହାତ୍ମା ଗାନ୍ଧି ଆମରଣ ଅନଶନ ଆରମ୍ଭ କରିଥିଲେ। ଏହାରି ଫଳରେ ଶେଷକୁ ଆମ୍ବେଦ୍‌କର ଓ ଗାନ୍ଧିଜୀଙ୍କ ମଧ୍ୟରେ ୨୪-୦୯-୧୯୩୨ରେ 'ପୁନାଚୁକ୍ତି' ସ୍ୱାକ୍ଷରିତ ହୋଇଥିଲା। ୧୯୪୨ରେ ଆମ୍ବେଦକର ବଡ଼ଲାଟଙ୍କର ଜଣେ ମନ୍ତ୍ରୀ ହୋଇଥିଲେ ଏବଂ ତାଙ୍କରି ମନ୍ତ୍ରିତ୍ୱବେଳେ ଓଡ଼ିଶାର ହୀରାକୁଦ ବନ୍ଧର ଶୁଭ ଦିଆଯାଇଥିଲା। ସ୍ୱାଧୀନତାପ୍ରାପ୍ତି ପରେ ସେ ସମ୍ବିଧାନ-ସଭାର ସଦସ୍ୟ ନିର୍ବାଚିତ ହୋଇଥିଲେ ଏବଂ ପଣ୍ଡିତ ଜବାହରଲାଲ୍ ତାଙ୍କୁ ନିଜର

ଆଇନମନ୍ତ୍ରୀ କାମ ଦେଇଥିଲେ । ଆଇନମନ୍ତ୍ରୀ ଥାଇ ସେ ଭାରତର ସମ୍ବିଧାନ-ପ୍ରଣୟନ କରିଯାଇଅଛନ୍ତି । ୧୯୫୬ରେ ସେ ବହୁସହସ୍ର ଅସ୍ପୃଶ୍ୟଙ୍କୁ ସଙ୍ଗରେ ନେଇ ବୌଦ୍ଧଧର୍ମ ଗ୍ରହଣ କରିଥିଲେ । ସେହିବର୍ଷ ଡିସେମ୍ବର ମାସ ୬ ତାରିଖ ଦିନ ତାଙ୍କର ପରିନିର୍ବାଣ ହୋଇଥିଲା ।

ସୌଜନ୍ୟ: ଡକ୍ଟର ମାୟାଧର ମାନସିଂହ (ମୁଖ୍ୟ ସଂକଳକ), *ସଂକ୍ଷିପ୍ତ ଓଡ଼ିଆ ଜ୍ଞାନକୋଷ (Encyclopaedia Orissana)*, ୧୯୬୩, କଟକ: ମହାରାଜା ଶ୍ରୀ ରାମଚନ୍ଦ୍ର ଉତ୍କଳ ୟୁନିଭରସିଟି ପ୍ରେସ୍ ।

# ରାଜ୍ୟ ସଭାରେ ବିକ୍ଷୁବ୍ଧ ଆମ୍ବେଦକର

ସୁରେନ୍ଦ୍ର ମହାନ୍ତି

କାଉନ୍‌ସିଲ୍ ଅଫ୍ ଷ୍ଟେଟସ୍‌ରେ ଦିନେ ରାଜ୍ୟ ପୁନର୍ଗଠନ କମିଶନ୍ ରିପୋର୍ଟ ଆଲୋଚିତ ହେଉଥିବା ବେଳେ ଡଃ ଆମ୍ବେଦକର ହଠାତ୍ ଭାଷଣ ଦେବାପାଇଁ ଉଠିଲେ। ସେତେବେଳକୁ ସିଏ ଜରାଜୀର୍ଣ୍ଣ ଓ ପକ୍ଷାଘାତଗ୍ରସ୍ତ। ତାଙ୍କୁ ସେ ଅବସ୍ଥାରେ ଦେଖିଲେ, ଭାବିବାପାଇଁ କଷ୍ଟ ହୁଏ ଯେ ସେ ଥିଲେ ଦିନେ ତାଙ୍କ ଯୁଗର ଜଣେ ଅନ୍ୟତମ ଶ୍ରେଷ୍ଠ ବାଗ୍ମୀ, ଆଇନବିତ୍ ଓ ଭାରତୀୟ ସମ୍ବିଧାନର ପ୍ରଣେତା। ଦିନେ ଦିନେ କାଉନ୍‌ସିଲ ଅଫ୍ ଷ୍ଟେଟସ୍‌କୁ ସେ ଆସନ୍ତି। କିନ୍ତୁ ଦୁଇଜଣ ଆଟେଣ୍ଡାଣ୍ଟ୍ ତାଙ୍କୁ ଧରାଧରି କରି ଚେମ୍ବର୍‌ରେ ଆଣି ବସାନ୍ତି। ଚେମ୍ବର ଭିତରକୁ ପଶିବା ମାତ୍ରେ ସବାପଛ ସିଟ୍‌ରେ ସେ କ୍ଲାନ୍ତ ଭାବରେ ବସିପଡ଼ନ୍ତି।

ସେଦିନ ସେ କହିବାପାଇଁ ଉଠିବାବେଳେ, ସଭାକକ୍ଷରେ ସବୁ ସଭ୍ୟ ଉପସ୍ଥିତ ଥିଲେ। କାରଣ ସେତେବେଳେ ସ୍ୱରାଷ୍ଟ୍ରମନ୍ତ୍ରୀ ପଣ୍ଡିତ୍ ପନ୍ଥ ବିତର୍କର ଉତ୍ତରଦେବା ନିର୍ଦ୍ଦିଷ୍ଟ ଥିଲା। କିନ୍ତୁ ତାଙ୍କ ପୂର୍ବରୁ ଡଃ ଆମ୍ବେଦକର ଯେତେବେଳେ କହିବା ପାଇଁ ଉଠିଲେ, ଡେପୁଟୀ ଚେୟାରମ୍ୟାନ୍ ତାଙ୍କୁ ବାଧା ଦେଇ ପାରିଲେ ନାହିଁ।

ସେତେବେଳକୁ ଡଃ ଆମ୍ବେଦକରଙ୍କ କଥାବାର୍ତ୍ତାରେ ସଙ୍ଗତ ନଥିଲା। ସେ ତାଙ୍କ ଭାଷଣରେ ଉତ୍ତରପ୍ରଦେଶକୁ ଭାଗ ଭାଗ କରିବାପାଇଁ ଦାବି କରୁଥିଲେ। ତାଙ୍କର ଯୁକ୍ତି ଥିଲା, ଏହା ଭାରତର ବୃହତ୍ତମ ପ୍ରଦେଶ ହୋଇଥିବାରୁ ଭାରତୀୟ ରାଜନୀତିକୁ କେବଳ ଆକାର ଓ ଲୋକସଂଖ୍ୟାକୁ ପୁଞ୍ଜିକରି ପ୍ରଭାବିତ କରୁଛି। ଉତ୍ତରପ୍ରଦେଶ ବିଭାଜିତ ହୋଇଗଲେ, ତାହାର ସେ ପ୍ରାଧାନ୍ୟ ଆଉ ରହିବ ନାହିଁ।

ବସ୍ତୁତଃ, ରାଜ୍ୟ ପୁନର୍ଗଠନ କମିଶନ୍‌ଙ୍କ ନିକଟରେ ଏହି ମର୍ମରେ ଆଉରି ଅନ୍ୟମାନେ ମଧ୍ୟ ସ୍ମାରକପତ୍ର ଉପସ୍ଥାପିତ କରିଥିଲେ। ଡଃ ଆମ୍ବେଦକର ତାଙ୍କ ଭାଷଣ ପ୍ରସଙ୍ଗରେ ମୂଳ ବକ୍ତବ୍ୟର ଖିଅଛାଡ଼ି ହଠାତ୍ ପଣ୍ଡିତ୍ ଗୋବିନ୍ଦବଲ୍ଲଭ ପନ୍ଥଙ୍କ ଉପରେ ଅକାରଣରେ ଆକ୍ଷେପ ହାଣି କହିଲେ- "You look like a python as huge as Utter Pradesh." - ଇତ୍ୟାଦିଇତ୍ୟାଦି। ଭାଷଣ ତ ନୁହେଁ, ନିର୍ଘାତ ଗାଳି।

ଡଃ ଆମ୍ବେଦକରଙ୍କ ଭାଷଣରେ ବିରୋଧୀ ପକ୍ଷର ବେଞ୍ଚମାନଙ୍କରୁ ଉଠୁଥାଏ ଟେବୁଲ୍‌ବାଡ଼ିଆ ଓ ହର୍ଷଧ୍ୱନି। କଂଗେସ ବେଞ୍ଚ୍ ସବୁ ନିସ୍ତବ୍ଧ; କିନ୍ତୁ କଂଗ୍ରେସ ସଭ୍ୟମାନଙ୍କ

ଚେହେରାରେ ବିରକ୍ତିର ସ୍ପଷ୍ଟ ସଂକେତ । କେବଳ ଡଃ ଆମ୍ବେଦକର କହୁଛନ୍ତି ବୋଲି, ତାଙ୍କ ସ୍ୱାସ୍ଥ୍ୟ ଦୃଷ୍ଟିରୁ କେହି ତାଙ୍କୁ ବାଧା ଦେଉନାହାନ୍ତି ।

ମାତ୍ର ପଣ୍ଡିତ୍ ଗୋବିନ୍ଦବଲ୍ଲଭ ପନ୍ଥ ଚୁପ୍‌ଚାପ୍ ନିର୍ଲିପ୍ତ ଭାବରେ ବସି ଏସବୁ ଆକ୍ଷେପ ହଜମ କରିଯାଉଥାନ୍ତି ।

ଡଃ ଆମ୍ବେଦକରଙ୍କ ଭାଷଣ ଶେଷ ହେବାପରେ, ସ୍ୱରାଷ୍ଟ୍ରମନ୍ତ୍ରୀ ପଣ୍ଡିତ୍ ପନ୍ଥଙ୍କୁ ବିତର୍କର ଉତ୍ତର ଦେବାପାଇଁ ଅନୁରୋଧ କରାଗଲା । ସେ ଠିଆ ହୋଇ କହିପାରନ୍ତି ନାହିଁ । ତାଙ୍କ ଆସନରେ ବସି, ଶାନ୍ତ କଣ୍ଠରେ ସେ ଆରମ୍ଭ କଲେ- "ଡଃ ଆମ୍ବେଦକର ନର୍ସିଂହୋମ୍‌ରୁ ସୁସ୍ଥ ଶରୀରରେ ପୁଣି ଆମ୍ଭମାନଙ୍କ ନିକଟକୁ ଫେରିଆସିଥିବାରୁ ଆମ୍ଭେମାନେ ଭଗବାନଙ୍କୁ ଧନ୍ୟବାଦ ଦେବା ସଙ୍ଗେ ସଙ୍ଗେ ଡଃ ଆମ୍ବେଦକରଙ୍କୁ ମାନସିକ ସ୍ୱାସ୍ଥ୍ୟ ଫେରାଇଦେବା ପାଇଁ ପ୍ରାର୍ଥନା କରୁଅଛୁ.... ।" ଏତିକି ମାତ୍ର କହିବା ପରେ ପଣ୍ଡିତ୍ ପନ୍ଥ ଅନ୍ୟ ପ୍ରସଙ୍ଗ ଆଲୋଚନା କଲେ । କିନ୍ତୁ ସଭ୍ୟମାନଙ୍କ ପ୍ରଚଣ୍ଡ ହାସ୍ୟରୋଳ ମଧ୍ୟରେ ତାଙ୍କ ଭାଷଣ ଯେପରି ବୁଡ଼ିଗଲା । ଡଃ ଆମ୍ବେଦକର ନିଜକୁ ଅପଦସ୍ଥ ମନେକରି ସେଠାରୁ ଉଠିଗଲେ ।

ସୌଜନ୍ୟ : ସୁରେନ୍ଦ୍ର ମହାନ୍ତି, *ପଥ ଓ ପୃଥିବୀ*, (ଦ୍ୱିତୀୟ ମୁଦ୍ରଣ), ୨୦୦୮, କଟକ: ଫ୍ରେଣ୍ଡସ୍ ପବ୍ଲିଶର୍ସ ।

# ଡକ୍ଟର ଆମ୍ବେଦକର ଓ କାଶ୍ମୀର

ବଲରାଜ ମାଧୋକ

ଜାମ୍ମୁ-କାଶ୍ମୀର ସମସ୍ୟା ଉପରେ ପର୍ଯ୍ୟବେସିତ ମୋ ଇଂରାଜୀ ପୁସ୍ତକ "ଜାମ୍ମୁ-କାଶ୍ମୀର ଡିଭାଇଡେଡ୍" (ବିଭାଜିତ କାଶ୍ମୀର) ୧୯୫୦ର ପ୍ରଥମଭାଗରେ ପ୍ରକାଶିତ ହୋଇଥିଲା । ଏହି ପୁସ୍ତକଟିର ପ୍ରକାଶନ ପରବର୍ତ୍ତୀ କିଛି ସପ୍ତାହ ମଧ୍ୟରେ ମୋତେ ଏକ ଅପ୍ରତ୍ୟାଶିତ ପତ୍ର ମିଳିଥିଲା । ପତ୍ରଟି ତତ୍କାଳୀନ କେନ୍ଦ୍ର ଆଇନମନ୍ତ୍ରୀ ଡଃ ଭୀମରାଓ ଆମ୍ବେଦକରଙ୍କଠାରୁ ପ୍ରେରିତ ହୋଇଥିବା ଜାଣି ମୁଁ ତା'ର କୌଣସି ପ୍ରତ୍ୟୁତ୍ତର ଦେଇ ନଥିଲି । ଏହାର କିଛିଦିନ ପରେ ତାଙ୍କ ବ୍ୟକ୍ତିଗତ ସଚିବଙ୍କଠାରୁ ଆଉ ଏକ ପତ୍ର ପ୍ରାପ୍ତି ହେଲା । ଉକ୍ତ ପତ୍ରଟିରେ ଡଃ ଆମ୍ବେଦକରଙ୍କ ପତ୍ରଟିର ଉଲ୍ଲେଖ ଥାଇ ମୁଁ ତାଙ୍କୁ (ଆମ୍ବେଦକରଙ୍କୁ) କେଉଁଦିନ କେତେବେଳେ ସାକ୍ଷାତ ନିମିତ୍ତ ସମର୍ଥ, ଜଣାଇବା ଲାଗି ଅନୁରୋଧ କରାଯାଇଥିଲା । କୌଣସି ଏକ ସନ୍ଧ୍ୟାରେ ଆସିପାରିଲେ ଅତି ଉତ୍ତମ ହେବ ବୋଲି ପରାମର୍ଶ ଥିଲା ।

ଦିନେ ଏକ ସନ୍ଧ୍ୟାରେ ସାକ୍ଷାତ ନିମନ୍ତେ ମୁଁ ଡଃ ଆମ୍ବେଦକରଙ୍କ ବାସଭବନରେ ପହଞ୍ଚିଲି । ସେ ସେତେବେଳେ ନିଜ ବଙ୍ଗଳାର ଉଦ୍ୟାନ ମଧ୍ୟରେ ବସି ମୋତେ ପ୍ରତୀକ୍ଷା କରିଥିଲେ । ସେ ମୋତେ ଖୁବ୍ ଶ୍ରଦ୍ଧା ଓ ଆଦରରେ ପାଛୋଟି ନେଇ ଇଂରାଜୀରେ କହିଲେ, ଯାହାର ସାରାଂଶ ହେଲା: 'ଆପଣ ହେଉଛନ୍ତି ସେହି ପ୍ରଥମ ଭାରତୀୟ ଲେଖକ ଯାହାଙ୍କ ବହିଟି ମୁଁ ଗତ ଦଶବର୍ଷ ପରେ ପ୍ରଥମଥର ଲାଗି ପଢ଼ିବାର ସୁଯୋଗ ପାଇଲି । ବହିଟି ମୋତେ ଏତେ ଭଲ ଲାଗିଲା ଯେ ମୁଁ ତା'ର ସମ୍ଭାବ୍ୟ ସମାଧାନ-ଉଭୟଙ୍କୁ ଆଲୋକପାତ କରିଥିବା ଲକ୍ଷ୍ୟ କଲି । ମୁଁ ଏସବୁକୁ ଖୁବ୍ ଭଲଭାବରେ ଅନୁଶୀଳନ କରିବାକୁ ଚାହେଁ ।" ଏହା କହି ସେ ମୋତେ ନିଜ ବାସଭବନର ଅଭ୍ୟନ୍ତରକୁ ସାଙ୍ଗରେ ନେଇଗଲେ । ଏକ କୋଠରୀ ମଧ୍ୟରେ ଏକ ବଡ଼ ଟେବୁଲ ଉପରେ ଜାମ୍ମୁ-କାଶ୍ମୀର ରାଜ୍ୟର ଏକ ବୃହତ ମାନଚିତ୍ର ସଜାଡି ରଖିଥିଲେ । ସେ ଏହି ମାନଚିତ୍ରଟିର ଅବଲମ୍ବନପୂର୍ବକ ମୋତେ ଜାମ୍ମୁ-କାଶ୍ମୀର ରାଜ୍ୟର ବିଭିନ୍ନ ଭୌଗୋଳିକ ଓ ଭାଷାଭାଷୀ ତଥା ଧର୍ମୀୟ ଅଞ୍ଚଳର ବର୍ଣ୍ଣନା ଓ ରୂପରେଖ ବୁଝାଇବା ଏବଂ ଏହାର ଜଳବାୟୁ, ପ୍ରାକୃତିକ ସମ୍ପଦ, ରାଜନୈତିକ ପୃଷ୍ଠଭୂମି ଓ ଜନାକାଂକ୍ଷାର ପୁଙ୍ଖାନୁପୁଙ୍ଖ ଆଲୋଚନା ଓ ବିସ୍ତୃତ ଧାରଣା ଦେବା ନିମନ୍ତେ କହିଲେ । ସେଦିନ ପ୍ରାୟ ଏକଘଣ୍ଟା ସେ ମୋ ସହିତ ଅତିବାହିତ କରିଥିଲେ । ଏପରି ଭାବରେ ଦ୍ୱିତୀୟ ଓ ତୃତୀୟ ଦିନ ମଧ୍ୟ କଟିଲା । ତୃତୀୟଦିନ ମୋତେ କହିବାକୁ ଆରମ୍ଭ କଲେ ଯେ ତାଙ୍କର କ୍ଷୀଣବୁଦ୍ଧି ଯୋଗୁ ସେ ସମସ୍ୟାଟିକୁ ଠିକ୍ ଭାବେ ଜାଣିବାଲାଗି ଅଧିକ ସମୟ ଲାଗୁଛି ।

ଏହିପରି ଭାବରେ ମୋର ଡଃ ଆମ୍ବେଦକରଙ୍କ ସହିତ ବୌଦ୍ଧିକ ସମ୍ପର୍କର ଶୁଭାରମ୍ଭ ହୋଇ ତାଙ୍କର ମୃତ୍ୟୁପର୍ଯ୍ୟନ୍ତ ଏହା ଅମ୍ଳାନ ରହିଥିଲା । ମୁଁ ତାଙ୍କ ସହିତ ଏହା

ପରେ କ୍ରମାଗତ ସମ୍ପର୍କରେ ଆସିଲି ଓ ଆମ ଦୁହିଁଙ୍କ ମଧ୍ୟରେ ରାଜନୀତି ଓ ଅନ୍ୟାନ୍ୟ ସମସାମୟିକ ଘଟଣାବଳୀ ଉପରେ ଆଲୋଚନା ଚାଲୁ ରହିଲା। କିଛି ଘଟଣା ଉପରେ ମୁଁ ତାଙ୍କ ବିଚାରଧାରା ଶୁଣି ମୋତେ ଖୁବ୍ ବିସ୍ମୟଜନକ ପ୍ରସନ୍ନତା ପ୍ରାପ୍ତ ହୋଇଥିଲା। ମୋତେ ତାଙ୍କୁ ଦେଶର ସମସାମୟିକ ଅଧିକାଂଶ ଜଣାଶୁଣା ରାଷ୍ଟ୍ରବାଦୀ ଓ ଦେଶପ୍ରେମୀ ନେତାମାନଙ୍କ ତୁଳନାରେ ଅଧିକ ପରିମାଣର ରାଷ୍ଟ୍ରବାଦୀ ଓ ଦେଶପ୍ରେମ ଏବଂ ବୁଦ୍ଧଜୀବୀଙ୍କଠାରୁ ଅଧିକ ଉନ୍ନତ ମାନର ବୁଦ୍ଧିଜୀବୀ ଭାବରେ ଗ୍ରହଣ କରିବାରେ ସ୍ୱତଃସ୍ଫୁର୍ତ୍ତ ସମ୍ମାନ ମନରେ ଉଭା ହେଲା।

(ଭାରତୀୟ) ସମ୍ବିଧାନର 'ଅସ୍ଥାୟୀ' ୩୭୦ ଧାରା ଅନୁସାରେ ଜାମ୍ମୁ-କାଶ୍ମୀର ରାଜ୍ୟଟି ଦେଶର ଅନ୍ୟସବୁ ରାଜ୍ୟମାନଙ୍କଠାରୁ ସ୍ୱତନ୍ତ୍ର ମାନ୍ୟତାପ୍ରାପ୍ତ ହେବା ଘଟଣାଟି ଯୋଗୁଁ ଭାରତୀୟ ସମ୍ବିଧାନର ପ୍ରୟୋଗ ପୁରାମାତ୍ରାରେ ଏଇ ରାଜ୍ୟଟିରେ ଲାଗୁ ନ ହୋଇପାରୁଥିବା ଓ ଅନ୍ୟାନ୍ୟ ବହୁତ ନିୟମ-କାନୁନର ଉର୍ଦ୍ଧ୍ୱରେ ରହୁଥିବା ବ୍ୟବସ୍ଥାର ଯଥାର୍ଥତା ସମ୍ପର୍କରେ ମନ୍ତବ୍ୟ ଦେବାକୁ ଯାଇ ସେ ପ୍ରକାଶ କରିଥିଲେ ଯେ ତାଙ୍କର ଇଚ୍ଛା ବିରୁଦ୍ଧରେ ଏଇ ଧାରାଟିକୁ ସମ୍ବିଧାନରେ ଯୋଡ଼ାଯାଇଥିଲା। ତାଙ୍କ କହିବା ଅନୁସାରେ ଯେତେବେଳେ ଶେଖ ଅବ୍ଦୁଲା ଏପରି ଏକ ସାମ୍ବିଧାନିକ ଧାରା ଦାବି ନେଇ ପଣ୍ଡିତ ନେହେରୁଙ୍କ ଦ୍ୱାରସ୍ଥ ହେଲେ, ପଣ୍ଡିତ ନେହେରୁ ତାଙ୍କୁ ଡଃ ଆମ୍ବେଦକରଙ୍କ ପାଖକୁ ପଠାଇ ଦେଲେ। ସେ ସେତେବେଳେ ଭାରତର ଆଇନମନ୍ତ୍ରୀ ଥିବା ସାଙ୍ଗକୁ ସମ୍ବିଧାନ ପ୍ରଣୟନ ସଭାର ଅଧକ୍ଷ ମଧ୍ୟ ଥିଲେ। ଶେଖ୍ ତାଙ୍କ ନିକଟରେ ଜାମ୍ମୁ-କାଶ୍ମିର (ରାଜ୍ୟ)କୁ ସ୍ୱତନ୍ତ୍ର ପାହ୍ୟା ଦେବାଲାଗି ଅନୁରୋଧ ଜଣାଇ ନିରାପତ୍ତା, ବିଦେଶ-ନୀତି, ଗମନାଗମନ ଓ ମୁଦ୍ରାପ୍ରଚଳନ ବ୍ୟତୀତ କେନ୍ଦ୍ରସରକାରଙ୍କର ଅନ୍ୟକୌଣସି ଅଧିକାର ଓ କ୍ଷମତା ରାଜ୍ୟଟି ଲାଗି ପୃଥକ୍ ନାଗରିକତା, ରାଜ୍ୟ ବାହାରର କୌଣସି ବ୍ୟକ୍ତି ଓ / ବା ଅନୁଷ୍ଠାନ ଭୂ-ସମ୍ପତ୍ତିର ମାଲିକାନା ଆହରଣ କରିବାର ଅଧିକାର ଓ ସରକାରୀ ଚାକିରି କରିବାର ନାଗରିକ ଅଧିକାର ନ' ପାଇବା ଲାଗି ବିଧିବ୍ୟବସ୍ଥା ଖଞ୍ଜାଯିବାର ଦାବି ଉପସ୍ଥାପନ କଲେ। ଏସବୁ ଶୁଣି ସେ ଶେଖ୍‌ଙ୍କୁ କହିଲେ, "ଆପଣ ଯଦି ଚାହାଁନ୍ତି ଯେ ଭାରତ ଆପଣଙ୍କ ରାଜ୍ୟର ଭୌଗୋଳିକ ସୁରକ୍ଷା ଓ ଅଖଣ୍ଡତା ଲାଗି ଅଙ୍ଗୀକାରବଦ୍ଧ ହେବ, ଏହାର ଜନସାଧାରଣଙ୍କୁ ଶସ୍ତା ଓ ସୁଲଭ ଖାଦ୍ୟଶସ୍ୟ ଯୋଗାଣ ବ୍ୟବସ୍ଥା କରିବ, ରାଜପଥ ନିର୍ମାଣ କରିବ ଓ ବିକାଶଲାଗି ସମ୍ବଳ ବିନିଯୋଗ କରିବ, ମାତ୍ର ଏସବୁ ସତ୍ତ୍ୱେ ଏହାର ରାଜ୍ୟଟି ଉପରେ କୌଣସି ଅଧିକାର, କର୍ତ୍ତୃତ୍ୱ ବା ନିୟନ୍ତ୍ରଣ ରହିବ ନାହିଁ।" ସେ ଏପରି କରିବାକୁ ନିଜର ଦୃଢ଼ ଅସମ୍ମତି ପ୍ରକାଶ କରି ଶେଖଙ୍କୁ ଜଣାଇଲେ ଯେ, "ମୁ ଭାରତର ଆଇନମନ୍ତ୍ରୀ। ମୁଁ ଆପଣଙ୍କୁ ସନ୍ତୁଷ୍ଟ କରିବା ପାଇଁ ଭାରତର ସ୍ୱାର୍ଥ ହିତକୁ ବଳିଦାନ ଦେବାକୁ ଅସମର୍ଥ ଓ ଅପ୍ରସ୍ତୁତ।"

ଡକ୍ଟର ଆମ୍ବେଦକରଙ୍କଠାରୁ ନିରାଶ ହୋଇ ଶେଖ ଅବଦୁଲା ପୁନର୍ବାର ନେହେରୁଙ୍କ ଦ୍ୱାରସ୍ଥ ହେଲେ। ପଣ୍ଡିତ ନେହେରୁଙ୍କ ସେତିକି ଦୁଃସାହସ ନଥିଲା ଡଃ

ଭାରତର ହିତ ବିପରୀତ ଏପରି ଏକ ଦୁଷ୍କର୍ମ କରିବାକୁ ବାଧକରି ଆଦେଶ ଦେବେ ଯାହା ରାଷ୍ଟ୍ରୀୟ ସ୍ୱାର୍ଥର ପରମ ବିପରୀତ ଥିଲା। ଏଥିପାଇଁ ସେ ଏଇ ଅପକର୍ମଟିର ସମ୍ପାଦନ ନିମନ୍ତେ (ନରମପନ୍ଥୀ) ଗୋପାଳସ୍ୱାମୀ ଅୟଙ୍ଗାରଙ୍କୁ ଦାୟିତ୍ୱ ଦେଲେ। ଶେଖ ଅବଦୁଲାଙ୍କ ପ୍ରସ୍ତାବିତ ଦାବି ସମ୍ବଳିତ ଏକ ଧାରା ସେ (ପ୍ରସ୍ତାବିତ) ସମ୍ବିଧାନରେ ଯୋଡ଼ିବା ଲାଗି ସମ୍ବିଧାନ ପ୍ରଣୟନ ସଭାରେ ୩୭୦ ଧାରାର ରୂପରେଖ ପ୍ରସ୍ତାବରୂପେ ଅବସ୍ଥାପନ କଲେ। ସମ୍ବିଧାନ ପ୍ରଣୟନ ସଭାରେ ସଂଖ୍ୟାଗରିଷ୍ଠ ସଦସ୍ୟ ଏ ପ୍ରସ୍ତାବର ଘୋର ବିରୋଧ କରିବାରୁ ସେତେବେଳେ ଶ୍ରୀ ଆୟଙ୍ଗାର ସରକାରଙ୍କ ତରଫରୁ ସମ୍ବିଧାନ ପ୍ରଣୟନ ସଭାକୁ ପ୍ରତିଶ୍ରୁତି ପ୍ରଦାନପୂର୍ବକ ଆଶ୍ୱାସନା ଦେଲେ ଯେ ଉକ୍ତ ଧାରାଟି ଏକ ଅସ୍ଥାୟୀ ବ୍ୟବସ୍ଥା। ସରକାରଙ୍କ ଦୃଢ଼ବିଶ୍ୱାସ ଯେ ଏଇ ଧାରାଟିର ଖୁବ୍ ଶୀଘ୍ର ବିଲୟ ଘଟାଇ ଜାମ୍ମୁ-କାଶ୍ମୀର ରାଜ୍ୟକୁ ଭାରତର ଅନ୍ୟାନ୍ୟ ରାଜ୍ୟମାନଙ୍କ ସମତୁଲ୍ୟ ପର୍ଯ୍ୟାୟଭୁକ୍ତ କରାଯାଇପାରିବ। ଏପରିଭାବେ ଓ ଏହି କାରଣରୁ ଏଇ ୩୭୦ ଧାରାଟିକୁ ଭାରତୀୟ ସମ୍ବିଧାନର 'ଅସ୍ଥାୟୀ ଓ ପରିବର୍ତ୍ତନ ସାପେକ୍ଷ ଧାରା ସବୁ'ର ଅନ୍ତର୍ଗତ କରାଯାଇଥିଲା।

ପାକିସ୍ତାନ ଓ ମୁସଲମାନଙ୍କ ସମ୍ପର୍କରେ ମତାମତ ଦେଇ ସେ ଦେଶ ବିଭାଜନ ସମୟରେ ଲେଖିଥିବା ନିଜ ପୁସ୍ତକ 'ଥଟସ୍ ଅନ୍ ପାକିସ୍ତାନ'ରେ ପ୍ରଦତ୍ତ ସ୍ୱ-ମତାମତର ଉଲ୍ଲେଖ କରିଥିଲେ। ଭାରତ ଇତିହାସ, ମୁସଲିମ ଆଇନ ଓ ପରମ୍ପରାର ଅଧ୍ୟୟନ ଉପରେ ଆଧାରିତ। ତାଙ୍କର ମତ ଥିଲା ଯେ 'ଇସଲାମ ଧର୍ମର ମୌଳିକ ସିଦ୍ଧାନ୍ତ ଓ ଭିତ୍ତିଭୂମି ମୁସଲମାନମାନେ ଅଣ-ମୁସଲିମ୍‌ଙ୍କ ସହିତ ସମବର୍ଗୀୟ ରୂପେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ପଥରେ ପ୍ରଧାନ ଅନ୍ତରାୟ। ସେ ମଧ୍ୟ ନିଜର ମତକୁ ଦୋହରାଇ କହିଥିଲେ ଯେ ଯଦି ତାଙ୍କ ପରାମର୍ଶ ଓ ବିଚାରଧାରାକୁ ସମ୍ମାନ ଜଣାଇ ଦେଶ ବିଭାଜନ ସହିତ ହିନ୍ଦୁସ୍ତାନରେ ରହିଯାଇଥିବା ମୁସଲମାନ ଓ ପାକିସ୍ତାନରେ ଥିବା ହିନ୍ଦୁମାନଙ୍କ ପ୍ରତିବଦଳର ବ୍ୟବସ୍ଥାଟିକୁ ମାନି ନିଆଯାଇଥାଆନ୍ତା ଓ ଏହି ପ୍ରସ୍ତାବଟିକୁ ଯୋଜନାବଦ୍ଧ ଯୁଦ୍ଧ-କାଳୀନ ଭିତ୍ତିରେ କାର୍ଯ୍ୟରେ ପରିଣତ କରାଯାଇପାରିଥାଆନ୍ତା ତେବେ ଖଣ୍ଡିତ (ବିଭାଜିତ) ହିନ୍ଦୁସ୍ଥାନର ମୁସଲିମ ସଂଖ୍ୟାଲଘୁ ସମସ୍ୟାଟିର ଅବସାନ ଘଟିବା ସଙ୍ଗେ ସଙ୍ଗେ ଏହା ରାଷ୍ଟ୍ର ବିଭାଜନରୂପକ ଦୁଃଖାତ୍ମକ ଐତିହାସିକ ଅବଲୀଳାଟିର ଏକ ସଫଳ ସମ୍ପଦଭାବେ ରାଷ୍ଟ୍ରହିତ ପ୍ରଣୋଦିତ ହୋଇପାରିଥାନ୍ତା। ସେ ଏହି ଐତିହାସିକ ପ୍ରମାଦ ଲଗି ମୂଳତଃ ଗାନ୍ଧିଜୀ ଓ ପଣ୍ଡିତ ନେହେରୁଙ୍କ ଭ୍ରମାତ୍ମକ ଭୂମିକାକୁ ଦୋଷ ଦେଇଥିଲେ।

ପଣ୍ଡିତ ନେହେରୁଙ୍କ ସମ୍ପର୍କରେ ତାଙ୍କର ମତାମତ ଅନୁକୂଳ ନଥିଲା କଂଗ୍ରେସରେ ବହୁତ ଭଲ ବିଚାରସମ୍ପନ୍ନ ଲୋକ ଥିଲେ ମଧ୍ୟ ନେହେରୁଙ୍କ ଅଖଣ୍ଡ ପ୍ରଭାବଯୋଗୁ ନୀରବ ନିଷ୍ପ୍ରଭ ରହିଯାଉଥିବା କଥା ସେ ଉଲ୍ଲେଖ କରି କହୁଥିଲେ ଯେ ଭାରତର ହିତ ଅପେକ୍ଷା ସେ (ନେହେରୁ) ନିଜର ଆନ୍ତର୍ଜାତିକ ଖ୍ୟାତି, ପ୍ରଶଂସା ଓ ସମ୍ମାନକୁ ଅଧିକ ଗୁରୁତ୍ୱାରୋପ କରି

କାମ କରୁଥିଲେ । ହୁଏତ ଏହି କାରଣରୁ ସେ ନିଜ ଜ୍ଞାତ ବା ଅଜ୍ଞାତସାରରେ ଏପରି କେତେକ ପଦକ୍ଷେପ ଓ ନିଷ୍ପତ୍ତି ଗ୍ରହଣ କରୁଥିଲେ ଯଦ୍ୱାରା ରାଷ୍ଟ୍ରୀୟ ସ୍ୱାର୍ଥ ଓ ସୁଦୂରପ୍ରସାରୀ ହିତ ଉପେକ୍ଷିତ ହୋଇଯାଉଥିଲା । (୧୯୪୮ର ତରବରିଆ କାଶ୍ମିର ଯୁଦ୍ଧବିରତି) ।

ଡଃ ଆମ୍ବେଦକରଙ୍କ ଅତି ନିକଟ ସମ୍ପର୍କରେ ଆସି ତାଙ୍କର ଚିନ୍ତାଧାରା, ରାଷ୍ଟ୍ରପ୍ରେମ, ରାଜନୈତିକ ଦୂରଦୃଷ୍ଟି ଓ ଦର୍ଶନର ନିରପେକ୍ଷ ବିଚାର ତାଙ୍କୁ ବୈଦିକ ବର୍ଣ୍ଣ-ବ୍ୟବସ୍ଥା ଅନୁଯାୟୀ ଜଣେ ନୈଷ୍ଠିକ ବ୍ରାହ୍ମଣ ପଦବାଚ୍ୟ ବୋଲି ମୋର ବିଶ୍ୱାସ ଓ ଧାରଣା । ତାଙ୍କର ବୁଦ୍ଧିମତ୍ତା ଅତି ଉଚ୍ଚକୋଟୀର ଏବଂ ପ୍ରତିଟି ଘଟଣା ଓ ସମସ୍ୟାର ମୌଳିକ ଅନୁଶୀଳନପୂର୍ବକ ବିଚାରଧାରା ପ୍ରକଟ କରିବା ତାଙ୍କର ବୈଶିଷ୍ଟ୍ୟ ଥିଲା । ତାଙ୍କୁ ଯେଉଁ ଘଟଣା ଅନୁଚିତ ଓ ଅସଙ୍ଗତ ମନେ ହେଉଥିଲା ସେ କଥାକୁ ଅତି ଅକାଟ୍ୟ ଓ ସ୍ପଷ୍ଟଭାବରେ କହିବାଲାଗି ସେ ତିଳେମାତ୍ର କୁଣ୍ଠିତ ହେଉନଥିଲେ ।

ତାଙ୍କର ଆତ୍ମବିଶ୍ୱାସ ଓ ଯୁକ୍ତିରେ ଦୃଢ଼ତା ଥିଲା ଏବଂ ସେହି ଭିତ୍ତିଭୂମିରେ କାର୍ଯ୍ୟ କରିବାକୁ ନିଜର ସାହସ ମଧ୍ୟ ରହୁଥିଲା । ସେ ଜଣେ ସଚ୍ଚା ରାଷ୍ଟ୍ରପ୍ରେମୀ ଥିଲେ । ତାଙ୍କ ମନରେ ଦଳିତମାନଙ୍କ ଲାଗି ପରମ ସ୍ପନ୍ଦନ ଥିଲା, କାରଣ ସେ ନିଜେ ଜଣେ ଭୁକ୍ତଭୋଗୀ ଥିଲେ ଅନୁରୂପ ଯନ୍ତ୍ରଣାସବୁର, ମାତ୍ର ଏସବୁଲାଗି ହୃଦୟରେ ପ୍ରତିଶୋଧ ଓ କ୍ରୂରତା ନଥିଲା । ସେ ପଛୁଆବର୍ଗର ସ୍ୱାର୍ଥକୁ ରାଷ୍ଟ୍ରୀୟ ସ୍ୱାର୍ଥର ଉର୍ଦ୍ଧ୍ୱରେ ରଖି ବିଚାର କରୁନଥିଲେ । ମାତ୍ର ତାଙ୍କର ସ୍ପଷ୍ଟ ମତ ଥିଲା ଯେ ରାଷ୍ଟ୍ରହିତ ଓ ଦଳିତବର୍ଗର ହିତସାଧନ ପରସ୍ପର ପରିପୂରକ ନୁହଁନ୍ତି କି ସେମାନେ ବିପରୀତ ଧର୍ମୀ ନୁହଁନ୍ତି ବରଂ ରାଷ୍ଟ୍ରକୁ ଶକ୍ତିଶାଳୀ କରିବାକୁ ହେଲେ ଉଚ୍ଚ-ନୀଚ ଭେଦଭାବର ମୂଳୋତ୍ପାଟନ କରି ଦଳିତମାନଙ୍କର ଉନ୍ନତି ସାଧନ ଓ ସେମାନଙ୍କର ଆତ୍ମବିଶ୍ୱାସ ଓ ସ୍ୱାଭିମାନ ସୃଷ୍ଟି କରିବାର ପରମ ଆବଶ୍ୟକତା ଉପରେ ସେ ଜୋର୍ ଦେଉଥିଲେ ।

ଘୋର ଦୁର୍ଭାଗ୍ୟର ବିଷୟ ଯେ ଏବେବି ଲୋକ ଏଇ ମହାତ୍ମାଙ୍କୁ କେବଳ ଜଣେ ଦଳିତବର୍ଗର ନେତା ଭାବେ ଚିତ୍ରଣ କରନ୍ତି । ଦଳିତ ନେତା ସଙ୍ଗେ ସଙ୍ଗେ ସେ ଥିଲେ ଅନନ୍ୟ ସାଧାରଣ ଜଣେ ରାଷ୍ଟ୍ରନେତା ମଧ୍ୟ । ରାଷ୍ଟ୍ରହିତ ସମ୍ବନ୍ଧରେ ତାଙ୍କର ବିଚାରଧାରା ଥିଲା ସ୍ଫଟିକତୁଲ୍ୟ ସ୍ପଷ୍ଟ ଓ ସ୍ୱଚ୍ଛ । ସେ ରାଷ୍ଟ୍ରୀୟ ସ୍ୱାର୍ଥ ଘଟଣାରେ ମୂଳଚାଲ କରୁନଥିଲେ କି ସହନଶୀଳ ହେଉ ନଥିଲେ ।

ସମ୍ବିଧାନ ପ୍ରଣୟନ ସଭାର ଆବାହକ ତଥା ଦେଶର ପ୍ରଥମ ବିଧିମନ୍ତ୍ରୀରୂପେ କାଶ୍ମିର ସମ୍ପର୍କୀୟ ସ୍ୱଦୃଷ୍ଟିକୋଣ ଓ କାର୍ଯ୍ୟପନ୍ଥା ଏହାର ସ୍ପଷ୍ଟ ପ୍ରମାଣ ଓ ଉଦାହରଣ ।

ସୌଜନ୍ୟ : ରାମକୃଷ୍ଣ ମହାନ୍ତି(ଓଡ଼ିଆ ଅନୁବାଦ), ସମାଜ, ୨୯ ଜୁନ୍, ୨୦୦୩ ।

# ମାନବ ଅଧିକାର-ମୌଳିକ ଅଧିକାର

ଗୋବିନ୍ଦଚନ୍ଦ୍ର ସେଠ

୧୯୨୭ ମସିହାର ଆରମ୍ଭରେ, ଗୋଟିଏ ବାର୍ଷିକ ସଭାରେ ଆମ୍ବେଦକର "ମାହାର" ଶ୍ରେଣୀର ଲୋକମାନଙ୍କୁ ବ୍ରିଟିଶ୍ ବିରୁଦ୍ଧରେ ଉତ୍ତେଜିତ କରିଥିଲେ । କାରଣ "ମାହାର"ମାନେ ଗୋଟିଏ ବେସାମରିକ ଜାତି ବୋଲି ଭ୍ରାନ୍ତ ଧାରଣା ଥିଲା ଏବଂ ସୈନ୍ୟବାହିନୀ ପାଇଁ ଉପଯୁକ୍ତ ନୁହନ୍ତି ବୋଲି କଟକଣା ରହିଥିଲା । ମାତ୍ର ଆମ୍ବେଦକର ତଥ୍ୟ ପ୍ରକାଶ କରି କହିଲେ ଯେ : ବ୍ରିଟିଶ୍ ସୈନ୍ୟବାହିନୀରେ, ପୂର୍ବରୁ ବହୁସଂଖ୍ୟକ "ମାହାର" ଶ୍ରେଣୀ ଯୋଗଦେଇ ଯୁଦ୍ଧ କରିଥିଲେ । ଏହି ଆନ୍ଦୋଳନ ଫଳରେ ସେ କଟକଣାକୁ ଉଠାଇ ଦିଆଗଲା । ସେହି ବର୍ଷ ଆମ୍ବେଦକରଙ୍କ୍ ବମ୍ବେ ପ୍ରାଦେଶିକ ଆସେମ୍ବ୍ଲିକୁ ଜଣେ ମନୋନୀତ ସଭ୍ୟ ହିସାବରେ ନିଆଗଲା । ଫଳରେ ସମଗ୍ର ବମ୍ବେ ରାଜ୍ୟର ଦଳିତାମାନଙ୍କ ମଧ୍ୟରେ ଏକ ନବ ଜାଗରଣ ଓ ଆନନ୍ଦ ଉଲ୍ଲାସ ଖେଳିଯାଇଥିଲା । ଡଃ. ଆମ୍ବେଦକରଙ୍କୁ ସମ୍ମାନିତ କରିବାପାଇଁ ଗୋଟିଏ ସଭା ବମ୍ବେର "ଦାମୋଦର ହଲ"ରେ ଅନୁଷ୍ଠିତ ହେଲା ଏବଂ ବି.ଏସ୍.ପେଣ୍ଡରକର, ଯେ ଜଣେ ଶିକ୍ଷା ସୁପରଭାଇଜର ଥିଲେ ସେ ସଭାପତି ହେଲେ । ଡଃ. ଆମ୍ବେଦକରଙ୍କୁ ଗୋଟିଏ ଥଳୀ ଭେଟି ଦିଆଗଲା ଏବଂ ତାହା "ବହିଷ୍କୃତ ହିତକାରିଣୀ ସଭା" ମାଧ୍ୟମରେ ଦଳିତମାନଙ୍କର ଶିକ୍ଷାପାଇଁ ବ୍ୟୟତ ହେଲା । ।୧୯୨୭ ମସିହାର ଏହା ଫେବୃୟାରୀ ମାସ । ମାର୍ଚ୍ଚ ମାସରେ ମାନ୍ଦ୍ରାଜଠାରେ, କୋଲଙ୍ଗ ଜିଲ୍ଲା "ଦଳିତ ଜାତିସଂଘ" ତରଫରୁ ଏକ ବିରାଟ ଦଳିତ ସଭାରେ ଡଃ. ଆମ୍ବେଦକର ଯୋଗଦେଲେ । ୧୦୦ ମାଇଲବ୍ୟାପୀ ଆବାଳ-ବୃଦ୍ଧ-ବନିତା ୧୦ ହଜାର ଲୋକ ଆସି ଯୋଗ ଦେଇଥିଲେ । ଡଃ. ଆମ୍ବେଦକର, ତାଙ୍କ ଭାଷଣରେ ସୈନ୍ୟବାହିନୀରେ ଯୋଗ ନ ଦେବା ପାଇଁ, ଦଳିତମାନଙ୍କ ଉପରେ ଯେଉଁ କଟକଣା ଥିଲା, ତାହା ବ୍ରିଟିଶ୍ ସରକାରର ଏକ ଚକ୍ରାନ୍ତ ବୋଲି ଘୋଷଣା କଲେ ।

ନେପୋଲିୟନଙ୍କ ସହିତ, ଫ୍ରାନସର ବିରୁଦ୍ଧରେ ଯୁଦ୍ଧ ବେଳେ, ବମ୍ବେ ପ୍ରଦେଶର ବହୁସଂଖ୍ୟକ ଦଳିତ ସୈନ୍ୟବାହିନୀରେ ଥାଇ ବ୍ରିଟିଶ୍ ସାମ୍ରାଜ୍ୟକୁ ରକ୍ଷା କରିଥିଲେ । ଦ୍ୱିତୀୟତଃ, ଦଳିତମାନଙ୍କର ଶିକ୍ଷା ସଂସ୍କାର ବୃଦ୍ଧିପାଇଁ ଗୋମାଂସ ଭକ୍ଷଣ ତ୍ୟାଗ କରିବା ଓ ନୀଚ ମନୋବୃତ୍ତି ଛାଡ଼ି ଶିକ୍ଷିତ ହୋଇ ସରକାରୀ ଚାକିର ପାଇବା ଓ ସମାଜରେ ସ୍ଥାନ ପାଇବାକୁ ଉଦ୍ୟମୀ ହେବାକୁ ସେ ଉଦ୍‌ବୋଧନ ଦେଲେ । "ବମ୍ବେ କାଉନସିଲ"ରେ ୧୯୨୩ ମସିହାରୁ ଭୋଲେଙ୍କଦ୍ୱାରା ପାଶ୍ ହୋଇଥିବା ନାଗରିକ ଆଇନକୁ କାର୍ଯ୍ୟକାରୀ କରିବାକୁ ସ୍ଥିର ହୋଇଥିଲା ।

ଉକ୍ତ ସମ୍ମିଳନୀରେ, ମାହଦ ମ୍ୟୁନିସପାଲଟିରେ ଚୌଦ୍ୱାର ପୋଖରୀ ଦଳିତମାନଙ୍କ ବ୍ୟବହାରପାଇଁ ଯେଉଁ ପ୍ରସ୍ତାବ ପାଶ୍ ହୋଇଥିଲା, ତାହା ଆଲୋଚିତ ହେଲା। ୧୯୨୪ ମସିହାରୁ ଏଥିପାଇଁ ଅନୁମତି ମିଳିଥିଲେ ମଧ୍ୟ ସବର୍ଣ୍ଣ ବ୍ୟକ୍ତିମାନେ ତାହା କରାଇଦେଉ ନଥିଲେ। ତେଣୁ ଉକ୍ତ ସଭାରେ ତାହା ଆଲୋଚିତ ହେଲା ଏବଂ କେତେକଜଣ ସବର୍ଣ୍ଣ ସ୍ଥାନୀୟ ଲୋକ ଏହା ସପକ୍ଷରେ ମତ ଦେଇ ସେହି ସ୍ଥାନକୁ ଯାତ୍ରା ଆରମ୍ଭ କରି ଚୌଦ୍ୱାର ପୋଖରୀରୁ ପାଣି ବ୍ୟବହାର କରିବାକୁ ସ୍ଥିର ହେଲା।

ଦଶ ହଜାର ଲୋକଙ୍କ ଶୋଭାଯାତ୍ରାର ନେତୃତ୍ୱନେଇ ଚାଲିଲେ ଡ଼ଃ ଆମ୍ବେଦକର। ଗୋଟିଏ ପୁରାତନ ଅହେତୁକ ସାମାଜିକ ପ୍ରଥା ବିରୁଦ୍ଧରେ, ଦୃଢ଼ମନ ନେଇ ହିନ୍ଦୁସ୍ଥାନକୁ ନୂତନ ଭାବରେ ଗଠନ କରିବା ଲକ୍ଷ୍ୟରେ ବୀରଦର୍ପରେ ଚାଲିଲେ। ଦଶ ହଜାର ପୁରୁଷ ଓ ନାରୀ ଶୃଙ୍ଖଳାର ସହ ଶୋଭାଯାତ୍ରା, ମହଦ୍ ସହର ଅତିକ୍ରମ କରି ଚୌଦ୍ୱାର ପୋଖରୀ ନିକଟରେ ପହଞ୍ଚିଲେ। ଚୌଦ୍ୱାର ପୋଖରୀରେ, ସବର୍ଣ୍ଣମାନଙ୍କ ବ୍ୟତୀତ ମୁସଲମାନ ଓ ଖ୍ରୀଷ୍ଟିୟାନମାନେ ମଧ୍ୟ ଜଳ ବ୍ୟବହାର କରୁଥିଲେ। ସେଥିରେ କଟକଣା ନାହିଁ। ମାତ୍ର ଦଳିତମାନେ ହିନ୍ଦୁଧର୍ମର ଅଂଶ ବିଶେଷ ହୋଇ ମଧ, ସେମାନେ ତୃଷାର୍ତ୍ତ ହେଲେ ବି ପୋଖରୀ ଜଳ ସ୍ପର୍ଶ କରିବାକୁ ଅକ୍ଷମ।

ସାମାଜିକ ଓ ଧର୍ମଭିତ୍ତିକ, ଏ ଅନ୍ୟାୟ ବିରୁଦ୍ଧରେ ଦଶ ହଜାର ଲୋକଙ୍କର ଅଭିଯାନ। ଜାତି ବିରୋଧୀ ଓ ଅନ୍ୟାୟ ବିରୋଧୀ, ଦାସ ପ୍ରଥା ବିରୋଧି, ପୁରୁଣା ପଦ୍ଧତି ବିରୋଧି ଆମ୍ବେଦକର, ସେମାନଙ୍କର ସାହସକୁ ଦୃଢ଼ୀଭୂତ କରି ଆଗେଇ ଚାଲିଛନ୍ତି। ମାନବତାର ଏହି ମୌଳିକ ଅଧିକାର ହାସଲ ପାଇଁ ଆମ୍ବେଦକର ପ୍ରତିଜ୍ଞାବଦ୍ଧ। ସ୍ୱାଧୀନତା ଦାସସୂତ୍ରେ ମିଳିପାରେ ନାହିଁ, ଆତ୍ମୋନ୍ନତି କାହାରି ଆଶୀର୍ବାଦରେ ଆସେ ନାହିଁ। ସେଥିପାଇଁ ସଂଗ୍ରାମ କରିବାକୁ ହୁଏ ଏବଂ କଷ୍ଟ ମାଧ୍ୟମରେ ଯିବାକୁ ହୁଏ। ଏହା ହିଁ ଆମ୍ବେଦକରଙ୍କର ପ୍ରେରଣା। ଶୋଭାଯାତ୍ରା ଗହଣରେ ଥାଇ, ଆଗେ ଆମ୍ବେଦକର ପୋଖରୀରୁ ପାଣିନେଲେ ଏବଂ ପିଇଲେ। ତା'ପରେ ଅନ୍ୟ ସମସ୍ତେ। ଯେଉଁ ଆମ୍ବେଦକର ଖୁବ୍ ଉଚ୍ଚଶିକ୍ଷିତ ହେଲେ ମଧ ପୃଥିବୀର ଯେ କୌଣସି ବିଜ୍ଞ ପଣ୍ଡିତଙ୍କ ସହିତ ସମାନ, ଉଚ୍ଚ ଆକାଂକ୍ଷା ସମ୍ପନ୍ନ ଜଣେ ଉଚ୍ଚକୋଟିର ହିନ୍ଦୁ, ଯେ "ସାଧାରଣ ପାଠାଗାର"ରେ ପଢ଼ିବାକୁ ବି ଅନ୍ୟମାନେ ଘୃଣା କରି ଆସିଛନ୍ତି। ସେହି ଆମ୍ବେଦକର ଆଜି ଏହି ପଦକ୍ଷେପ ନେବାରେ ଅଗ୍ରଣୀ। ଜଳପାନ କରି ନିଜର ଦାବୀ ଜାହିର କରି ସାରିବା ପରେ, ସମସ୍ତେ ଶୃଙ୍ଖଳାର ସହିତ ଫେରିଗଲେ ସଭାସ୍ଥଳୀକୁ।

ଅଧିବେଶନ ସମାପ୍ତ ହୋଇଯାଇଥିବାରୁ, ପ୍ରତିନିଧିମାନେ ଚାଲିଯାଇଥିଲେ। କେତେକ ଯିବାପାଇଁ ପ୍ରସ୍ତୁତ ହେଉଥିଲେ। ଠିକ୍ ଏହି ସମୟରେ ବହୁ ସବର୍ଣ୍ଣ ଲୋକ

ଠେଙ୍ଗା-ବାଡ଼ି ଧରି ପେଣ୍ଡାଲ ପାଖରେ ପହଞ୍ଚିଯାଇଥିଲେ। ସେମାନେ କ୍ରୋଧ ଓ ରାଗରେ ପ୍ରଜ୍ୱଳିତ। ସମ୍ବାଦ ପ୍ରଚାର ହୋଇଛି ଯେ, ଦଳିତମାନେ ସ୍ଥାନୀୟ ବିଶ୍ୱେଶ୍ୱର ମନ୍ଦିରରେ ପଶି ଦେବତାଙ୍କୁ ନଷ୍ଟ କରିଦେବେ। ଏହି ଆଶଙ୍କାରେ ଗ୍ରାମର ମୂର୍ଖ ଅଶିକ୍ଷିତ, ଧର୍ମାନ୍ଧ ଲୋକେ, ବହୁ ସଂଖ୍ୟାରେ ଯୁଟି ଧର୍ମ ହାନି କରିଦେବେ ବୋଲି ଡାକରା ମାରି ପେଣ୍ଡାଲ ଭାଙ୍ଗି ଚୁରମାର କରିଦେଲେ। ରୋଷେଇବାସ ନଷ୍ଟ କରିଦେଲେ। ଅଧିବେଶନର ପ୍ରତିନିଧିମାନଙ୍କୁ ଯେଉଁଠି ଦେଖିଲେ, ପିଟି ପକାଇଲେ। ଫଳରେ ୭୦ ଜଣ ଦଳିତ ପ୍ରତିନିଧି ଆହତ ହେଲେ। ପୋଲିସ୍, ଧର୍ମାନ୍ଧ ଆକ୍ରମଣକାରୀମାନଙ୍କର କିଛି କରିପାରିଲେ ନାହିଁ ବା ଶାନ୍ତି ରକ୍ଷା କରି ପାରିଲେ ନାହିଁ। ଡ଼ଃ ଆମ୍ବେଦକର ଡ଼ାକବଙ୍ଗଳାରେ ଥାଇ, ଏ ଖବର ଶୁଣିଲାମାତ୍ରେ ଘଟଣାସ୍ଥଳକୁ ଦଉଡ଼ି ଆସଲେ। ଆହତ ବ୍ୟକ୍ତିମାନଙ୍କୁ ଡାକ୍ତରଖାନାକୁ ପଠାଇ, ତା'ର ପ୍ରତିଶୋଧ ନେବାକୁ ଉତ୍ତକ୍ତ ପ୍ରତିନିଧି ଯୁବକମାନଙ୍କୁ ସାନ୍ତ୍ୱନା ଦେଇ ଫେରାଇଦେଲେ।

ସେହିଦିନ ରାତ୍ରି ଯାପନ କରି ତପର ବମ୍ବେ ଫେରିଆସିଲେ। ପେଶବାଙ୍କ ରାଜତ୍ୱରେ, ଅଛୁତମାନେ "ପୁନା" ସହରରେ ଦିନବେଳେ ପ୍ରବେଶ କରିପାରୁନଥିଲେ ଏବଂ ବାହାରେ ଛେପ ପକାଇବାକୁ ସେମାନଙ୍କୁ ମନା ଥିଲା। ସେଥିପାଇଁ, ବେକରେ ସେମାନେ ଗୋଟିଏ ଲେଖାଁଏ ଠେକି ବାନ୍ଧି, ସେଥିରେ ଛେପ ପକାଉଥିଲେ। ସେହି ବମ୍ବେ ଓ ପୁନାର ପ୍ରଚଳିତ ସମୟରେ ଏପରି କରିବାରେ ଆଶ୍ଚର୍ଯ୍ୟ ହେବାର କିଛି ନଥିଲା।

ପରିଷ୍କାର ପୋଖରୀରୁ ଜଳ ବ୍ୟବହାର କରି, ନାଗରୀକତ୍ୱକୁ ବଜାୟ ରଖିବା ଭାରତବର୍ଷରେ ଯେପରି ଗୋଟିଏ ବଡ଼ ସମ୍ବାଦ, ତହୁଁ ବଳି, ତାହାର ପ୍ରତିରୋଧ ପାଇଁ ଆକ୍ରମଣ ମଧ୍ୟ ଗୋଟିଏ ଆଲୋଚ୍ୟ ବଷୟ ହୋଇ, ସାରା ଭାରତର ସମ୍ବାଦପତ୍ରମାନଙ୍କରେ ସ୍ଥାନ ପାଇଲା। ସବରକର, ପ୍ରଭୃତି ନେତାମାନେ ଏହି ଆକ୍ରମଣର ଘୋର ନିନ୍ଦା କଲେ। ଆଶ୍ଚର୍ଯ୍ୟର କଥା, ମହଦ୍ ଗ୍ରାମର ଉସୃଙ୍ଖଳ, ଧର୍ମାନ୍ଧ ହିନ୍ଦୁମାନେ ୧୦୮ଟି ମାଠିଆରେ ଗୋବରପାଣି ଓ ଅନ୍ୟାନ୍ୟ ଘୃତ ଅମୃତ ପୁରାଇ, ପୋଖରୀରେ ସିଞ୍ଚନ କରି, ଶ୍ଳୋକ-ମନ୍ତ୍ର ବ୍ରାହ୍ମଣମାନଙ୍କଦ୍ୱାରା ପଢ଼ାଇ ପୋଖରୀକୁ ପବିତ୍ର କଲେ।

ଏପ୍ରିଲ ମାସ ୧୯୨୭ ଠାରୁ ସତ୍ୟକଥାର ପରିବେଷଣ କରିବା ଓ ମାନବ ଅଧିକାର ବ୍ୟବସ୍ଥାକୁ ବ୍ୟାପକ କରି ଧର୍ମାନ୍ଧତା ଓ ପୁରୁଣା ପଦ୍ଧତିକୁ ଲୋପକରିବା ପାଇଁ "ବହିଷ୍କୃତ ଭାରତ" ନାମକ ମରାଠୀ ଭାଷାରେ ଗୋଟିଏ ପ୍ରତ୍ରିକା ପ୍ରକାଶ କଲେ।

ଉକ୍ତ ପତ୍ରିକାରେ, ଦଳିତ ଜାତି ଅନୁଷ୍ଠାନର ଲକ୍ଷ୍ୟ ଉଦ୍ଦେଶ୍ୟ ଓ କାର୍ଯ୍ୟକ୍ରମ ସଂପର୍କରେ ତୀବ୍ର ଅଥଚ ଦକ୍ଷ ଏବଂ ଦୁର୍ଦ୍ଦାନ୍ତ ଭାବରେ ଲେଖିବାକୁ ଆରମ୍ଭ କଲେ।

ଯେଉଁମାନେ ଆମ୍ବେଦକରଙ୍କ କାର୍ଯ୍ୟକଳାପ ଉପରେ ସମାଲୋଚନା କଲେ, ତା'ର ଯଥାଯଥ ଉତ୍ତର ମଧ୍ୟ ଦେଲେ । ଦେଶର ସ୍ୱାଧୀନତା ସଂପର୍କରେ ଡଃ ଆମ୍ବେଦକର ଲେଖିଲେ । ଯେତେବେଳେ ଲକ୍ଷ ଲକ୍ଷ ଲୋକ, ଏହି ଦେଶର ବିଜ୍ଞ, ପଣ୍ଡିତ, ଶାସ୍ତ୍ରଜ୍ଞ ଓ ବୁଦ୍ଧିମାନ ଦ୍ୱାରା ପଶୁ, ପକ୍ଷୀଠାରୁ ଆହୁରି ହୀନ ଭାବରେ ଧର୍ଷିତ ହେଉଥିବେ, ସେମାନଙ୍କର ଦେଶର ସ୍ୱାଧୀନତା କ'ଣ ଦରକାର ! ସେ ମଧ୍ୟ ଲେଖିଲେ । ତିଳକ ସ୍ଲୋଗାନ ଦେଲେ ଯେ, "ସ୍ୱରାଜ୍ୟ ମୋର ଜନ୍ମଗତ ଅଧିକାର" ମାତ୍ର ସେ ଯଦି "ଦଳିତ ଅବସ୍ଥାରେ ଥାଆନ୍ତେ, ତାହାହେଲେ – "ଅସ୍ପୃଶ୍ୟତା ଦୂର କରିବା, ମୋର ହେଉଛି ଜନ୍ମଗତ ଅଧିକାର", ଇତ୍ୟାଦି ବୋଲି କହିବାକୁ ବାଧ୍ୟ ହୋଇଥାନ୍ତେ ।

ଅପହୃତ କ୍ଷମତାକୁ ମାଗିଲେ ମିଳେନା; ବା ନିବେଦନ କଲେ ମିଳେ ନାହିଁ । କିନ୍ତୁ ଅବିରତ ସଂଗ୍ରାମ ଫଳରେ ହିଁ ତାହା ମିଳେ । ବଳିଦେବାକୁ କେବଳ ଛାଗଳମାନଙ୍କ ଆବଶ୍ୟକତା ହୁଏ ସିନା, ମାତ୍ର ସିଂହମାନଙ୍କୁ ବ୍ୟବହାର କରାଯାଏ ନାହିଁ । ଏହା ଆମ୍ବେଦକର ଘୋଷଣା କଲେ ।

ବମ୍ବେ "ଲେଜିସଲେଟିଭ୍ କାଉନ୍‌ସିଲ୍"ରେ ଯୋଗଦେଇ ଡ଼ଃ ଆମ୍ବେଦକର ୨୪ ଫେବୃୟାରୀ ୧୯୨୭ ମସିହାରେ ତାଙ୍କ ପ୍ରଥମ ଭାଷଣ ଦେଇ ରାଜସ୍ୱ, ଆୟକର ନିର୍ଦ୍ଧାରଣ ଓ ଆଦାୟ ପଦ୍ଧତିର ନିର୍ଣ୍ଣୟ କରି ତା'ର ଫଳରେ ଗରିବ ଲୋକ ବେଶି କଷ୍ଟ ପାଇଛନ୍ତି ବୋଲି ସୂଚାଇଲେ । ନିଶାନିବାରଣ ନୀତି, ଶିକ୍ଷା ପଦ୍ଧତି ଓ ପ୍ରସାର ଏବଂ ବଜେଟ ଉପରେ ଭାଷଣମାନ ଦେଇ ତାଙ୍କର ଯୋଗ୍ୟତା ଓ ବିଜ୍ଞତାର ପ୍ରମାଣ ଦେଖାଇଲେ ।

୧୯୨୭ ମସିହାରେ ବମ୍ବେର ଠାକୁର ଦ୍ୱାରଠାରେ ନିର୍ମିତ ନୂତନ ମନ୍ଦିରରେ ଦଳିତମାନେ ଅବାଧରେ ପ୍ରବେଶ କରିପାରିବେ ବୋଲି ସମ୍ବାଦପତ୍ରରେ ବାହାରି ଥିଲା । ତା'ର ସତ୍ୟତା ପ୍ରମାଣ କରିବାପାଇଁ ଡ଼ଃ ଆମ୍ବେଦକର ମନ୍ଦିରର ସେକ୍ରେଟେରୀଙ୍କୁ ଫୋନ କରି ସେଠାରେ ପହଞ୍ଚିଥିଲେ । ମାତ୍ର ସ୍ଥାନୀୟ କେତେକ ଲୋକ ଜାଣିଯାଇ ଆମ୍ବେଦକରଙ୍କୁ ବାଧାଦେଲେ ଏବଂ ସେକ୍ରେଟାରୀ, ସାଧାରଣ ଲୋକଙ୍କ ପାଖରେ ଏପରି ଅନୁମତି ଦେବା ଯୋଗୁଁ ଦୋଷ ସ୍ୱୀକାର କଲେ ଏବଂ ମନ୍ଦିର ପବିତ୍ର କରାଗଲା ଏବଂ ଡଃ ଆମ୍ବେଦକର ଅପମାନିତ ହୋଇ ଫେରିଆସିଲେ ।

ଡଃ ଆମ୍ବେଦକର, ଆସେମ୍ବ୍ଲିରେ, ଶିକ୍ଷିତ ଯୁବକମାନଙ୍କୁ ସରକାରୀ ଚାକିରୀରେ ସ୍ଥାନ ଦେବା ଏବଂ କନେଷ୍ଟବଳ ପୋଷ୍ଟ ଦଳିତମାନଙ୍କୁ ଦିଆଯାଉ ନଥିବାରୁ ଖୁବ୍ ଲଢ଼ିଲେ । "ତୁମେ ଯେବେ କୁହ ଯେ, ତୁମର ଯେଉଁ ଧର୍ମ ଆମର ସେହି ଧର୍ମ, ତେବେ ତୁମର ଯେଉଁ ଅଧିକାର ଆମର ସେହି ଅଧିକାର କାହିଁକି ନୁହେଁ" ? ଆମ୍ବେଦକର ଏହି କଥା ଘୋଷଣା କଲେ ।

ଅକ୍ଟୋବର ୨୭, ୧୯୨୭ ମସିହାରେ ଦଳିତ ଜାତି ଛାତ୍ର ସଭାରେ ଯୋଗ ଦେଇ ଶିକ୍ଷିତ ଯୁବକମାନଙ୍କ ସଂପର୍କରେ ନଭେମ୍ବର ୧୩ ତାରିଖରେ ଇନ୍ଦ୍ରଭୁବନ ଥିଏଟର ହଲରେ ଦଳିତମାନଙ୍କ ମନ୍ଦିର ପ୍ରବେଶ ଆଲୋଚନା ସଭାରେ ଯୋଗଦେଲେ । ମି.ଟିକାଡ଼େ, ବାର-ଏଟ୍-ଲ, ଚଉବଲ ପ୍ଲିଡ଼ର, କେ.କି. ଦେଶମୁଖ, ପଞ୍ଜାବ ରାଓ ଦେଶମୁଖ, ପ୍ରଭୃତି ବ୍ୟକ୍ତିମାନେ ଉକ୍ତ ସଭାରେ ଯୋଗଦେଲେ । ଉକ୍ତ ଆସେମ୍ବ୍ଲିରେ ସତ୍ୟାଗ୍ରହର ସମୟ ୩ ମାସ ପାଇଁ ଗଡ଼େଇ ଦିଆଗଲା ।

"ମହଦ"ରେ ପୁନର୍ବାର ସତ୍ୟାଗ୍ରହ ହେବାର ଖବରପାଇ, ସ୍ଥାନୀୟ ସବର୍ଣ୍ଣ ହିନ୍ଦୁମାନେ ନଭେମ୍ବର ୨୭ ତାରିଖରେ ଗୋଟିଏ ସଭାରେ ମିଳିତ ହୋଇ ସତ୍ୟାଗ୍ରହର ବିରୋଧ କରିବାପାଇଁ ଆଲୋଚନା କଲେ । ଜିଲ୍ଲା ମାଜିଷ୍ଟ୍ରେଟ୍ ଗଣ୍ଡଗୋଳ ଆଶଙ୍କାର ଖବର ପାଇ, ମହଦ ପରିଦର୍ଶନ କଲେ । ହିନ୍ଦୁମାନଙ୍କୁ, ସତ୍ୟାଗ୍ରହରେ ବାଧା ନ ଦେବାପାଇଁ ପ୍ରବର୍ତ୍ତେଇଲେ ଏବଂ ଯଦି କିଛି ଆପତ୍ତି ଥାଏ, ସେମାନେ ଆଇନର ଆଶ୍ରୟ ନେଇପାରନ୍ତି ବୋଲି କହିଲେ । ତେଣୁ ରକ୍ଷଣଶୀଳ ହିନ୍ଦୁମାନେ, ସିଭିଲକୋର୍ଟରେ ମକଦ୍ଦମା ରୁଜୁ କରି ଅବରୋଧ ଜାରି କରିବାକୁ ଆପତ୍ତି କଲେ ଏବଂ ଅବରୋଧ ମଧ୍ୟ ଜାରି କରାଗଲା । ନୋଟିସ୍ ଆମ୍ବେଦକର, ଶିବତାରକାର ଏବଂ କ୍ରିଷ୍ଣଜୀ, ଏନ୍.କଦମ୍ଙ୍କ ଉପରେ ଜାରି ହେଲା । ମକଦ୍ଦମା ବିଚାର ନ ସରିବା ପର୍ଯ୍ୟନ୍ତ ସେମାନେ ଓ ତାଙ୍କର ଲୋକମାନେ ଚୌଦ୍ୱାର ପୋଖରୀ ପାଖକୁ ଯାଇ ପାରିବେ ନାହିଁ ବୋଲି ନିର୍ଦ୍ଦେଶ ଥିଲା ।

ଅଧିବେଶନ ଆରମ୍ଭ ହେବାଦିନ ଆମ୍ବେଦକର ପହଞ୍ଚିବା କ୍ଷଣି ତିନି ହଜାର ପ୍ରତିନିଧି ତାଙ୍କୁ ସ୍ୱାଗତ ଜଣାଇଲେ । ଏହି ସମୟରେ ଜିଲ୍ଲା ମାଜିଷ୍ଟ୍ରେଟ୍ଙ୍କ ନିକଟରୁ ଆମ୍ବେଦକର ଚିଠି ପାଇଲେ, ତାଙ୍କ ସାଙ୍ଗରେ ସାକ୍ଷାତ କରିବାପାଇଁ । ଜିଲ୍ଲା ମାଜିଷ୍ଟ୍ରେଟ୍ ସତ୍ୟାଗ୍ରହ ନ କରିବାକୁ ନିର୍ଦ୍ଦେଶ ଦେଲେ । ମାତ୍ର ଆମ୍ବଦକର, ସଭାରେ ଭାଷଣ ଦେବାପାଇଁ ରାଜି ହୋଇଗଲେ ।

ପ୍ରତିନିଧିମାନେ 'ଶିବାଜୀ ମହାରାଜା କି ଜୟ' ଧ୍ୱନୀ ଦେଇ ସଭା ମଞ୍ଚକୁ ତାଙ୍କର ପ୍ରିୟନେତା, ଆମ୍ବେଦକରଙ୍କୁ ପାଛୋଟି ନେଲେ । ସନ୍ଧ୍ୟା ଘ. ୪-୩୦ ମିନିଟ୍‌ରେ ଅଧିବେଶନ ଆରମ୍ଭ ହେଲା । ୧୫ ହଜାର ଲୋକ ନାନା ଧ୍ୱନୀ ଦେଇ ମଞ୍ଚ କମ୍ପାଇ ଦେଲେ । ଡଃ ଆମ୍ବେଦକର ଭାଷଣ ଦେବାକୁ ଉଠିବା ମାତ୍ରେ; 'ଡଃ ଆମ୍ବେଦକର କି ଜୟ' ବୋଲି ଧ୍ୱନି ଦେଲେ ।

ଆମ୍ବେଦକର କହିଲେ, ପ୍ରଥମରୁ ମୁଁ କହିବାକୁ ଚାହେଁ, ଦଳିତମାନେ ଚୌଦ୍ୱାର ପୋଖରୀ ପାଣି ନ ପିଇ ମରିଯାଇ ନାହାନ୍ତି । ଆମେ ପ୍ରମାଣ କରିଦେବାକୁ ଚାହୁଁ ଯେ; ଅନ୍ୟମାନଙ୍କ ଭଳି ଆମ୍ଭର ସେଥିରୁ ଜଳ ବ୍ୟବହାର କରିବାକୁ, ମଣିଷ ଭଳି ଅଧିକାର ଅଛି । ଏ ରାଜ୍ୟରେ ଆଇନ୍ ସମସ୍ତଙ୍କପାଇଁ ସମାନ ଏବଂ ସମାନତାର ଯୁଗ, ଆମ୍ଭେ ଏହି ଅଧିବେଶନ ମୁହୂର୍ତ୍ତରୁ ଘୋଷଣା କରିଛୁ ।

ଫରାସୀ ବିପ୍ଳବ ପରେ ଉରୋଲିସ୍‌ଠାରେ ସ୍ୱାଧୀନତା ସଂଗ୍ରାମୀ ନେତା ମାନବିକ ଅଧିକାର ଘୋଷଣା କରିଥିଲେ। ଆପଣମାନେ, ଆଜି ଏଠାରେ ଅଛୁତମାନଙ୍କପାଇଁ ମାନବିକ ଅଧିକାର ଘୋଷଣା କରିଛନ୍ତି। ଘନଘନ କରତାଳି, ଉତ୍ସାହଜନକ ପ୍ରତିଧ୍ୱନୀ ମଧ୍ୟରେ ଡଃ ଆମ୍ବେଦକର କହିଲେ, ହିନ୍ଦୁ ସମାଜ ୨ଟି ନୀତି ଉପରେ ପୁନର୍ଗଠିତ ହେବା ଦରକାର ଯଥା- ବୈଷମ୍ୟ ଓ ଜାତିବାଦର ଲୋପ।

ଅଧିବେଶନରେ ଯେଉଁ ପ୍ରସ୍ତାବ ଗୃହୀତ ହେଲା, ସେଥିରେ, ପ୍ରଥମରେ ହିନ୍ଦୁ ଶାସ୍ତ୍ରଗୁଡ଼ିକ ବର୍ତ୍ତମାନ ସମୟୋଉପଯୋଗୀ ପରିବର୍ତ୍ତନ ହେବା ଆବଶ୍ୟକ। କାରଣ ବେଦ ପଢ଼ିବା ଅପରାଧ ଏବଂ ତାହା ପାଠକଲେ କଠିନ ଦଣ୍ଡର ବ୍ୟବସ୍ଥା ରହିଛି। ମନୁସ୍ମୃତିରେ ଯେଉଁ କଟକଣାମାନ ରହିଛି, ତାହା ଶୂଦ୍ର ଓ ଅତିଶୂଦ୍ରମାନଙ୍କପାଇଁ ନିତ୍ୟାନ୍ତ ବିରୋଧ ଓ କ୍ଷତିକାରକ। ଏହା ଉପରେ ତୀବ୍ର ସମାଲୋଚନା କରାଯାଇ ସ୍ଥିର ହେଲା ଯେ; ମନୁସ୍ମୃତିକୁ ପୋଡ଼ି ଦିଆଯିବ। ଅଛୁତ ଶ୍ରେଣୀର କେତେକ ସନ୍ନ୍ୟାସୀମାନଙ୍କ ହାତରେ ମନୁସ୍ମୃତିକୁ ହଜାରହଜାର ସମବେତ ଲୋକଙ୍କ ସାମନାରେ ପୋଡ଼ି ଦିଆଗଲା। ସହସ୍ର ବୁଦ୍ଧେ, ରାଜଭୋଜ ଥ୍ରୋଟ, ପ୍ରଭୃତି ତାତିଲା ଭାଷଣରେ, ସମବେତ ଜନତା ଉତ୍ତେଜିତ ହୋଇଉଠିଥିଲେ।

ତତ୍ପର ଦିନ ସତ୍ୟାଗ୍ରହ ସଂପର୍କରେ ଡଃ ଆମ୍ବେଦକର ପ୍ରସ୍ତାବ ଆଗତ କରି କହିଲେ, କେହି ହାତରେ ଲାଠି ନେବାକୁ ହେବ ନାହିଁ। କଠୋର ଶୃଙ୍ଖଳା ଭିତରେ ଯିବାକୁ ହେବ। କଲେକ୍ଟରଙ୍କ ଆଦେଶକୁ ଅବମାନନା କରି ଗଲେ, ଚରମ ବିପଦପାଇଁ ପ୍ରସ୍ତୁତ ହୋଇଯିବାକୁ ହେବ। ଯେବେ ପାରିବ ତେବେ ସତ୍ୟାଗ୍ରହ କର। ମାତ୍ର; ମୁଁ କରୁଛି ବୋଲି, କରିବା ଠିକ୍ ହେବ ନାହିଁ। ଦେଖାଗଲା ଯେ; ସମସ୍ତେ ସତ୍ୟାଗ୍ରହପାଇଁ ପ୍ରସ୍ତୁତ। ମହାରାଷ୍ଟ୍ରର ଦଳିତ ନେତା ଯେଧେ ଯାବଲକର ମଧ ସମର୍ଥନ କଲେ। ସତ୍ୟାଗ୍ରହପାଇଁ ୪୦୦୦ ପ୍ରତିନିଧି ନାମ ଦେଲେ।

ଦିଲ୍ଲୀ କଲେକ୍ଟର ରାଜି ହୋଇଥିବା ପ୍ରକାରେ ସଭାରେ ଭାଷଣ ଦେଇ କୋର୍ଟରେ ମକଦମା ଥିବାରୁ ସତ୍ୟାଗ୍ରହ କରିବା ଠିକ୍ ହେବ ନାହିଁ ବୋଲି ବୁଝାଇଲେ। ମାତ୍ର ସତ୍ୟାଗ୍ରହ ସପକ୍ଷରେ ବହୁ ବ୍ୟକ୍ତି କହିବାକୁ ଆରମ୍ଭ କରି, ପରଦିନକୁ ପୁଣି ଆଲୋଚନା କରିବାକୁ ସ୍ଥଗିତ ରଖାଗଲା।

ପୁନର୍ବାର ଆଲୋଚନା କରାଯାଇ ସ୍ଥିର କରାଗଲା, ସତ୍ୟାଗ୍ରହ ଘୁଞ୍ଚାଇ ଦେବାକୁ ହେବ। ମାତ୍ର; ଲୋକ ଶୋଭାଯାତ୍ରା ପୋଖରୀ ପର୍ଯ୍ୟନ୍ତ ଯିବାଲୋକ ନିର୍ଲ୍ଲଜତା ଓ ହୀନତା ଅନୁଭବ କଲେ, ଓ ସମସ୍ତେ ଶୋଭାଯାତ୍ରାରେ ପୋଖରୀ ପର୍ଯ୍ୟନ୍ତ ଯାଇ ଅଧିବେଶନ ସମାପ୍ତ କଲେ।

ଶୋଭାଯାତ୍ର ଶେଷ ହେବା ପରେ, ଏକତ୍ରିତ ହୋଇଥିବା ୩୦୦୦ ଅଛୁତ ଲୋକଙ୍କୁ ଭାଷଣ ଦେଇ ସଫାସୁତରା ରହିବା, ପିଲାମାନଙ୍କୁ ଶିକ୍ଷାଦେବା ଏବଂ ନୀଚ ବୋଲି ଭାବନା ଛାଡ଼ିପାରିଲେ, ଅଛୁତ ସମାଜର ମଙ୍ଗଳ ହୋଇପାରିବ। ମହଦଠାରୁ ଯେଉଁ ମାନବିକ ଅଧିକାର ଘୋଷଣା ଆରମ୍ଭ ହେଲା, ଏହାର ପ୍ରଭାବ ସାରା ଭାରତବର୍ଷରେ ବ୍ୟାପିବାକୁ ଲାଗିଲା।

ସେହି ବର୍ଷ ଜାତୀୟ କଂଗ୍ରେସର ମାନ୍ଦ୍ରାଜ ଅଧିବେଶନରେ ମହାତ୍ମାଜୀଙ୍କ ନେତୃତ୍ୱରେ ଘୋଷଣା କରାଗଲା ଯେ; ଭାରତର ଲୋକମାନଙ୍କର ସଂପୂର୍ଣ୍ଣ ସ୍ୱରାଜ୍ୟ ହେଉଛି ପ୍ରଧାନ ଲକ୍ଷ୍ୟ। ଯାହା ଫଳରେ ଲୋକଙ୍କର ସାମାଜିକ ଓ ଅର୍ଥନୈତିକ ସ୍ୱାଧୀନତା ଲାଭ କରାଯାଇପାରିବ।

ଏ ସମସ୍ତ ସରିବା ପରେ ଡ଼ଃ ଆମ୍ବେଦକର ତାଙ୍କର ସ୍ୱୀୟ ନେତା, ସହଯୋଗୀମାନଙ୍କ ସହ ମାନ୍ଦ୍ରାଜଠାରେ ଖୋଦିତ ପୁରାତନ କୀର୍ତ୍ତିମାନ ବୁଲି ଦେଖିଲେ। ଖୋଦିତ କୀର୍ତ୍ତି ବୁଦ୍ଧଦେବଙ୍କ ସମୟର ବୋଲି ଐତିହାସିକମାନଙ୍କର ମତ। ଆମ୍ବେଦକର ତାଙ୍କ ଦଳକୁ ସାବଧାନ କରି କହିଲେ, ଏହା ବୁଦ୍ଧଦେବଙ୍କର ଲୀଳା କ୍ଷେତ୍ର।

ମହାବୀର ମରହଟ୍ଟା ଛତ୍ରପତି ଶିବାଜୀଙ୍କର ଏହା ମଧ୍ୟ ରାଜଧାନୀ ଥିଲା। ଶିବାଜୀ ସ୍ୱାଧୀନା ଓ ପ୍ରେରଣାର ମହାନ୍ ଉତ୍ସ। ତେଣୁ ଏ ସ୍ଥାନର ପ୍ରତ୍ୟେକ ରେଣୁ ପବିତ୍ର।

୧୯୨୮ ମସିହାରେ ତୁକୋଜୀ ରାଓ ହୋଲକାର ଆମେରିକାର ଏକ ମହିଳା ମିସ୍ ମିଲରଙ୍କୁ ବିବାହ କରିବା ଗୋଟିଏ ବିବାଦୀୟ ବିଷୟବସ୍ତୁ ରୂପେ ସ୍ଥାନ ପାଇଥାଏ। ମହାରାଜାଙ୍କର ଧାଂଶର ସଂପ୍ରଦାୟ ମଧ୍ୟରେ ବଡ଼ ଟଣା ଓଟାରା ଚାଲିଥାଏ। ତେଣୁ ମହାରାଜାଙ୍କ ତରଫରୁ ଗୋଟିଏ ଆଲୋଚନା ସଭାକୁ ସଂସ୍କାରବାଦୀ ଓ ଆଇନଜ୍ଞ ହିସାବରେ ପରାମର୍ଶ ଦେବାକୁ ଡ଼ଃ ଆମ୍ବେଦକର, ପ୍ରଗତିଶୀଳ ସଂସ୍କାରବାଦୀ ବେଲଙ୍କୁ ସମର୍ଥନ ଦେଲେ। ବାରମାଟି ନାମକ ଜାଗାରେ ରାଜ ପ୍ରସାଦରେ ଏହି ସିଦ୍ଧାନ୍ତ ହୋଇଥିଲା।

ସେଠାକୁ ଆମ୍ବେଦକର ଯାଇଥିବାର ଜାଣି, ସ୍ଥାନୀୟ ବହୁ ଦଳିତ ସଂପ୍ରଦାୟର ଲୋକେ, ଆମ୍ବେଦକରଙ୍କୁ ସମ୍ମାନିତ କରି ଭବିଷ୍ୟତ କାର୍ଯ୍ୟକ୍ରମ ବିଷୟରେ ଆଲୋଚନା କରିଥିଲେ। ଏମ୍.କେ.ଯାଦବ ନାମକ ଜଣେ ଶିକ୍ଷିତ ଯୁବକ ସେହି ସ୍ଥାନରୁ ପ୍ରଥମ ଥର ପାଇଁ ମହାରାଷ୍ଟ୍ରରେ ଡେପୁଟି କଲେକ୍ଟର ହିସାବରେ ସରକାରରେ ନିଯୁକ୍ତି ପାଇଥିଲେ। ଏହା କେବଳ ଆମ୍ବେଦକରଙ୍କ ଯୋଗୁଁ ଘଟିଥାଏ। ତେଣୁ ସ୍ଥାନୀୟ ଅସ୍ପୃଶ୍ୟ ଜାତିର ଲୋକମାନେ ଡ଼ଃ ଆମ୍ବେଦକରଙ୍କୁ ଧନ୍ୟବାଦ ଦେଇଥିଲେ।

ସୌଜନ୍ୟ : ଗୋବିନ୍ଦଚନ୍ଦ୍ର ସେଠ, *ଏ ଯୁଗର ମନୁ ଡକ୍ଟର ଆମ୍ବେଦକର*, ୧୯୮୩, ଭୁବନେଶ୍ୱର: ଶ୍ରୀଜଗନ୍ନାଥ ପ୍ରିଣ୍ଟର୍ସ।

# ଦାସତ୍ୱ ବିରୋଧରେ ବିପ୍ଳବ

ଯୋଗେନ୍ଦ୍ର ମହାନନ୍ଦ

ନୂତନ ବର୍ଷର ପ୍ରଥମ ଦିବସରେ ସୋରେଗାଁଓରେ ଦଳିତମାନଙ୍କର ଦ୍ୱିତୀୟ ମହାସମରର ସ୍ମୃତି ଉଦ୍ଦେଶ୍ୟରେ ଏକ ବିରାଟ ସ୍ମୃତି ସଭା ହୋଇଥିଲା । ଏହି ବର୍ଷର ସଭାରେ ବିଭିନ୍ନ ଅଞ୍ଚଳର ବିଶିଷ୍ଟ ଦଳିତ ନେତୃସ୍ଥାନୀୟ ନେତାମାନେ ଯୋଗ ଦେଇଥିଲେ । ଆମ୍ବେଦକର ଏହି ସମ୍ମିଳନୀରେ ସ୍ୱାଗତ ଭାଷଣ ଦେଇ କହିଲେ ଯେ ମହାର ଜାତିର ଶହଶହ ଯୁବକ ସୈନ୍ୟ ବିଭାଗରେ ନିଯୁକ୍ତପାଇଁ ଦ୍ୱିତୀୟ ମହାସମରରେ ବ୍ରିଟିଶ୍‌ମାନଙ୍କ ତରଫରୁ ଯୁଦ୍ଧରେ ପ୍ରାଣ ହରାଇଛନ୍ତି କିନ୍ତୁ କୃତଘ୍ନ ଇଂରେଜମାନେ ଆମ୍ଭଙ୍କୁ ଅଣସୈନିକ ଗୋଷ୍ଠୀ ବୋଲି ଅଭିହିତ କରିଛନ୍ତି । ଇଂରେଜମାନଙ୍କ ତରଫରୁ ଯୁଦ୍ଧ କରିବା ଗୌରବ ନୁହେଁ ସବର୍ଣ୍ଣ ହିନ୍ଦୁମାନେ ଆମ୍ଭଙ୍କୁ ଅସ୍ପୃଶ୍ୟ ବୋଲି ଘୃଣା ଓ ଦଳିତ କରି ରଖିବା ହେତୁ ଆମ୍ଭର ଯୁବକମାନେ ବାଧ ହୋଇ ଇଂରେଜମାନଙ୍କ ସୈନ୍ୟ ବିଭାଗରେ ଯୋଗ ଦେଇ ଜୀବିକା ଅର୍ଜନ କରୁଛନ୍ତି । ପରିଶେଷରେ ସେ ପୁଣି କହିଲେ ଯେ ସରକାର ଯେଉଁ ଅଣ-ସୈନିକ ନିତୀ ନିର୍ଦ୍ଧାରିତ କରିଛନ୍ତି ତା ବିରୁଦ୍ଧରେ ଆନ୍ଦୋଳନ କରିବା ଉଚିତ ଏବଂ ବୀରତ୍ୱର ପରିଚୟ ଦେଇ ଅସ୍ପୃଶ୍ୟ ଜାତିର ବୀରତ୍ୱ ଓ ଗୌରବ ରକ୍ଷା କରିବା ଉଚିତ ବୋଲି ଶ୍ରୋତୃ ମଣ୍ଡଳୀକୁ ଉଦ୍‌ବୋଧନ ଦେଇଥିଲେ ।

ଏହି ସମୟରେ ବମ୍ବେ ଲେଜିସ୍ଲେଟିଭ୍ କାଉନସିଲ୍‌କୁ ବମ୍ବେର ଗଭର୍ଣ୍ଣର ଆମ୍ବେଦକରଙ୍କୁ ସଭ୍ୟରୂପରେ ମନୋନୀତ କରିଥିଲେ । ବମ୍ବେ ନଗରୀର ସମସ୍ତ ଅନୁନ୍ନତ ଓ ଅସ୍ପୃଶ୍ୟ ଶିକ୍ଷକମାନେ ଏହି ଘଟଣାରେ ଆମ୍ବେଦକରଙ୍କୁ ଏକ ସଭାରେ ଅଭିନନ୍ଦନ କରି ଉପହାର ସ୍ୱରୂପ ଏକ ଟଙ୍କା ଫେବୃୟାରୀ ୨ ତାରିଖ ୧୯୨୭ ରେ ଦେଇଥିଲେ । ଏହି ଘଟଣାର ଦୁଇମାସ ପରେ ବମ୍ବେର ଦାମୋଦର ହଲରେ ଏପ୍ରିଲ ୧୯ ତାରିଖ ୧୯୨୭ରେ ଶିକ୍ଷା ବିଭାଗର ସୁପରଭାଇଜରଙ୍କ ସଭାପତିତ୍ୱରେ ଏକ ସଭା ଅନୁଷ୍ଠିତ ହୋଇ ଏକ ନିଷ୍ପତ୍ତି ଗ୍ରହଣ କରାଯାଇଥିଲା । ମନ୍ୟବର ସଭାପତି ଶ୍ରୀମାନ ପେନ୍ଦୁରକର କହିଲେ ଯେ, ଅନୁନ୍ନତ ଓ ଅସ୍ପୃଶ୍ୟମାନଙ୍କ ମଧ୍ୟରେ ଶିକ୍ଷାର ମହତ୍ତ୍ୱ ପ୍ରସାରିତ ହେବା ସଙ୍ଗେସଙ୍ଗେ ସବର୍ଣ୍ଣମାନଙ୍କର ଅତ୍ୟାଚାରରୁ କିପରି ମୁକ୍ତ ହେବେ ପ୍ରତ୍ୟେକ ସଭ୍ୟ ଅନୁଭବ କରିବା ଉଚିତ । ମୁଁ ଗଭୀର ଭାବରେ ବିଶ୍ୱାସ କରୁଛି ଯେ ଆମ୍ବେଦକର ଏହି କାର୍ଯ୍ୟ କରିପାରିବେ ଏଣୁ ପ୍ରତ୍ୟେକ ଅନୁନ୍ନତ ଓ ଅସ୍ପୃଶ୍ୟମାନେ ତାଙ୍କ ସଙ୍ଗରେ ଯୋଗ ଦେଇ ଏହି ଗୁରୁ ଦାୟିତ୍ୱ ସମ୍ଭାଳିବେ ଏବଂ କାନ୍ଧକୁ କାନ୍ଧ ଦେଇ ତାଙ୍କୁ ସାହାଯ୍ୟ କରିବାପାଇଁ ମୁଁ ସମସ୍ତଙ୍କୁ ନିବେଦନ

କରୁଛି ବୋଲି ପେନ୍ଧୁରକର କହିଲେ । ଆମ୍ବେଦକର ଅସ୍ପୃଶ୍ୟ ଓ ଅନୁନ୍ନତ ଶିକ୍ଷକମାନଙ୍କର ମହତ ଦାନ ପ୍ରତି କୃତଜ୍ଞତା ଜଣାଇ ପାଇଥିବା ଟଙ୍କା ବହିସ୍କୃତ ହିତକାରିଣୀ ସଭାର ଉନ୍ନତିପାଇଁ ଦାନ କରି ଦେଲେ ।

ଏହି ଆତ୍ମ-ଅଭୀମାନୀ ସନ୍ତାନ ଭାରତର ମୁକ୍ତାକାଶରେ ଧୀରେଧୀରେ ଉଦିୟମାନ ହେବାରେ ଲାଗିଲେ । ଅତ୍ୟାଚାରର କଳାମେଘ ଧୀରେଧୀରେ ଉଭେଇ ଯିବାରେ ଲାଗିଲା । ଦଳିତମାନେ ନିଜେ ନିଜ ଗୋଡ଼ରେ ଦଣ୍ଡାୟମାନ ହୋଇ କିପରି ଚଳିବେ ଶିକ୍ଷା କରିବାରେ ଲାଗିଲେ । ଦଳିତମାନେ ଏହି ସମସାମୟିକ ଘଟଣାରେ ଆମ୍ବେଦକରଙ୍କୁ କିପରି ସାହାଯ୍ୟ କରିବେ ବିଗ୍ଭର କଲେ । ମହାଦ ଘଟଣାଟି ହେଲା ଜ୍ୱଳନ୍ତ ଦୃଷ୍ଟାନ୍ତ । ବମ୍ବେ ଲେଜିଟିଭ୍ କାଉନସିଲରେ ପାଶ୍ ହୋଇଥିବା ଭୋଲେଙ୍କ ପ୍ରସ୍ତାବ ସରକାର ବମ୍ବେରେ କାର୍ଯ୍ୟକାରୀ କଲେ । ଭୋଲେ ପ୍ରସ୍ତାବ ୧୯୨୩ରେ ଯାହା ଥିଲା ତାର କିଛି ୧୯୨୬ରେ ପରିବର୍ତ୍ତନ କରାହେଲା । ଏହି ପ୍ରସ୍ତାବ ଅନୁସାରେ ମହାଦ ମ୍ୟୁନିସିପାଲଟି ଅସ୍ପୃଶ୍ୟମାନଙ୍କୁ ଚୈଦାର ପୋଖରୀ ବ୍ୟବହାରପାଇଁ ଖୋଲି ଦେଲେ । କିନ୍ତୁ ସବର୍ଣ୍ଣ ହିନ୍ଦୁମାନଙ୍କର ବିରୋଧ ଭୟରେ ଦଳିତ ଓ ଅସ୍ପୃଶ୍ୟମାନେ ପୋଖରୀକୁ ପାଣି ଆଣିବାକୁ ଗଲେ ନାହିଁ । କୋଲାବ ଜିଲ୍ଲା ଅନୁନ୍ନତ କମିଟି ମାର୍ଚ୍ଚ ୧୯୨୭ମସିହା ୧୯ରେ ଏବଂ ୨୦ ତାରିଖରେ ଏକ ବିରାଟ ଅସ୍ପୃଶ୍ୟ ଏବଂ ଅନୁନ୍ନତମାନଙ୍କର ସମ୍ମିଳନୀ ମହାଦରେ ତାଙ୍କପାଇଁ ନିଷ୍ପତ୍ତି କଲେ । ସେହି ନିଷ୍ପତ୍ତି ଅନୁଯାଇ ବିଶେଷ ଭାବରେ ପ୍ରଚାର କାର୍ଯ୍ୟ ଚଳାଇଲେ । ଏହି ସମ୍ମିଳନୀର ପ୍ରଧାନ ପରିଚାଳକ ଭାବେ ଶ୍ରୀ ସୁରେନ୍ଦ୍ର ନାଥ ଟିପ୍‌ନିସ୍, ସୁବେଦାର ସଭାଦକର ଏବଂ ଅନନ୍ତ ରାଓ ଚିତ୍ରେ ରହିଲେ । ଦୀର୍ଘ ଦୁଇ ତିନି ମାସ ଅସ୍ପୃଶ୍ୟ ଏବଂ ଦଳିତମାନଙ୍କ ମଧ୍ୟରେ ଯୋରସୋର ପ୍ରଚାର କାର୍ଯ୍ୟ ଚାଲିଲା । ଏହି ମହାଦ୍ ସମ୍ମିଳନୀରେ ପ୍ରାୟ ବାରବର୍ଷ ଯୁବକଠାରୁ ସତୁରୀ ବର୍ଷର ବୃଦ୍ଧମାନେ ମଧ ଯୋଗ ଦେବାପାଇଁ ମହାରାଷ୍ଟ୍ର ଓ ଗୁଜୁରାଟର ପ୍ରତ୍ୟେକ ଜିଲ୍ଲାରୁ ପ୍ରାୟ ଦଶହଜାର ପ୍ରତିନିଧି ଆସିଥିଲେ । ଏହି ସମ୍ମିଳନୀଟି ବିଶେଷ ଭାବରେ କୃତ କାର୍ଯ୍ୟ ହେବାପାଇଁ ସବୁ ପ୍ରକାର ଉଦ୍ୟମ ହୋଇଥିଲା । ଲୋକମାନଙ୍କ ଠାରୁ ପ୍ରାୟ ଚାଳିସ ଟଙ୍କାର ପିଇବା ପାଣି କିଣି ସମ୍ମିଳନୀରେ ଯୋଗ ଦେଇଥିବା ଲୋକଙ୍କୁ ଦିଆଯାଇ ଥିଲା । ଏହି ସମ୍ମିଳନୀ ବସିବାପାଇଁ ଏକ ବିରାଟ ପେଣ୍ଡାଲ ନିର୍ମାଣ କରାଯାଇଥିଲା ଏବଂ ଏହି ପେଣ୍ଡାଲର ନାମ ଦିଆଯାଇଥିଲା ବୀରେଶ୍ୱର ।

ଏହି ସମ୍ମିଳନୀରେ ଆମ୍ବେଦକର ସଭାପତିତ୍ୱ ଭାର ଗ୍ରହଣ କରି ସରଳ ଭାଷାରେ ଭାଷଣ ଦେଇ କହିଥିଲେ ଯେ ଯେଉଁ ବାଳକ ଯେଉଁ ସ୍ଥାନରେ ଜନ୍ମ ହୁଏ ସେ ସ୍ଥାନକୁ ଭୁଲି ପାରେ ନାହିଁ ସେ ସ୍ଥାନ ନିଶ୍ଚେ ତାକୁ ଆକର୍ଷଣ କରିବ । ନିଜ ବାଲ୍ୟ ଜୀବନ ବିଷୟ

କହିଥିଲେ ଯେ ସମୟ ଥିଲା ଆମ୍ଭଙ୍କୁ ସବର୍ଣ୍ଣ ହିନ୍ଦୁମାନେ ଅସ୍ପୃଶ୍ୟ ବୋଲି ବିଶେଷ ଘୃଣା କରୁଥିଲେ, କିନ୍ତୁ ବର୍ତ୍ତମାନ ଆମ୍ଭେ ବିଶେଷ ଭାବରେ ଉନ୍ନତ ହୋଇଛୁ ଏବଂ ଯେତେ ଶିକ୍ଷା କରିବା ସେହି ପରିମାଣରେ ସବର୍ଣ୍ଣମାନଙ୍କ ଘୃଣାରୁ ମୁକ୍ତ ହେବା। ଅନ୍ୟ ଉନ୍ନତ ଶ୍ରେଣୀର କିପରି ଉନ୍ନତି ହୋଇଛି ସେ ବିଷୟରେ ଟିକି ନିକି ଏକ ସାରଗର୍ଭିକ ତୁଳନାତ୍ମକ ଭାଷଣ ଦେଇଥିଲେ। ଏହି ଭାଷଣର ପୂର୍ଣ୍ଣ ବିବରଣୀ ମହାରାଷ୍ଟ୍ର ପ୍ରଦେଶର ଗାଁ ଗହଳ, ସହରମାନଙ୍କରେ ପ୍ରଚାରିତ ହେଲା। ଆମ୍ବେଦକର ପୁଣି କହିଲେ ଯେ ସରକାର ଅସ୍ପୃଶ୍ୟମାନଙ୍କୁ ଅଣ-ସାମରିକ ବୋଲି ଘୋଷଣା କରିବାଦ୍ୱାରା ଆମ୍ଭର ପତନ ଘଟିଲା, ସାମରିକ ବିଭାଗରେ ଯୋଗଦେବାଦ୍ୱାରା ଆମ୍ଭର ସାହସ, ଜ୍ଞାନ, ବିଚକ୍ଷଣ ବୁଦ୍ଧି ଓ ନେତୃତ୍ୱର ସୁଯୋଗ ମିଳି ପାରିବ ବୋଲି ଆମ୍ବେଦକର ସୁଚାଇଥିଲେ। ଅସ୍ପୃଶ୍ୟ ଯୁବକମାନେ ବିଶେଷ ଭାବରେ ସାମରିକ ବିଭାଗରେ ଯୋଗ ଦେବାପାଇଁ ଆହ୍ୱାନ କରି ଥିଲେ। ସାମରିକ କ୍ୟାମ୍ପ ପ୍ରତିଷ୍ଠା କରି ସରକାର ଅସ୍ପୃଶ୍ୟମାନଙ୍କୁ ସାମରିକ ଶିକ୍ଷା ପ୍ରଦାନ କଲେ ଦେଶର ପ୍ରତିରକ୍ଷାପାଇଁ ବିଶେଷ କାର୍ଯ୍ୟ ସାଧିତ ହେବ ବୋଲି କହୁଥିଲେ। ସେତେବେଳେ ଅସ୍ପୃଶ୍ୟମାନେ ଭାରତରେ ଇଂରେଜମାନଙ୍କ ସାମ୍ରାଜ୍ୟକୁ ଦୃଢ଼ିଭୂତ କରିଥିଲେ, କିନ୍ତୁ ସେହି ଇଂରେଜ ସରକାର ବିଶ୍ୱାସଘାତକତା ସ୍ୱରୂପ ଅସ୍ପୃଶ୍ୟମାନଙ୍କୁ ସାମରିକ ବିଭାଗରେ ଯୋଗ ଦେବାପାଇଁ ଦ୍ୱାର ରୁଦ୍ଧ କଲେ। ନିଜର ଆତ୍ମ-ସମ୍ମାନ ରକ୍ଷା କରିବାପାଇଁ ଅଖାଦ୍ୟ ଖାଇବା ଉଚିତ ନୁହେଁ, ସାମାନ୍ୟ ପାଉଣାରେ ନିଜର ମାନବିକ ଅଧିକାର ବିକ୍ରି କରିବା କାପୁରୁଷର ଲକ୍ଷଣ ବୋଲି ଆମ୍ବେଦକର କହିଥିଲେ। କୃଷିଜୀବୀ ହେବାପାଇଁ ଉପଦେଶ ଦେଇ କହିଥିଲେ ଯେ କୃଷକ ଦେଶର ସବୁଠାରୁ ଶକ୍ତିଶାଳୀ ବଳ, ତେଣୁ ଜଙ୍ଗଲ ଜମି ଅବାଦ କରି କୃଷକ ହୁଅ ବୋଲି ସମ୍ମିଳନୀରେ ସଭ୍ୟମାନଙ୍କୁ ଆହ୍ୱାନ କରିଥିଲେ। ଏହି ସମ୍ମିଳନୀରେ ପ୍ରଧାନପ୍ରଧାନ ବିଷୟଗୁଡ଼ିକ ପ୍ରସ୍ତାବ ଆକାରରେ ପାଶ କରିଥିଲେ। ପ୍ରଥମ ପ୍ରସ୍ତାବରେ ସବର୍ଣ୍ଣ ହିନ୍ଦୁମାନଙ୍କୁ ନିବେଦନ କରିଥିଲେ, "ସବର୍ଣ୍ଣ ହିନ୍ଦୁମାନେ ଅସ୍ପୃଶ୍ୟମାନଙ୍କର ନାଗରିକ ଅଧିକାର ପାଇବାପାଇଁ ସାହାଯ୍ୟ କରନ୍ତୁ, ବିଭିନ୍ନ ସେବାମୂଳକ ଅନୁଷ୍ଠାନ ନିଯୁକ୍ତି ଦିଆଯାଉ, ଅସ୍ପୃଶ୍ୟ ଜାତିର ଛାତ୍ରଛାତ୍ରୀଙ୍କୁ କିଛି ପରିମାଣ ଖାଦ୍ୟ ଯୋଗା ଯାଉ, ଏବଂ ମୃତ ଜନ୍ତୁଙ୍କୁ ନିଜେ ବୋହି ନେଇ ପୋତି ଦିଅନ୍ତୁ। ଶେଷ ପ୍ରସ୍ତାବରେ ସରକାର ଏକ ଆଇନ୍ ପ୍ରଣୟନ କରି ଅସ୍ପୃଶ୍ୟମାନେ ଖାଉଥିବା ମୃତ ଗାଈ ଓ ଘୁଷୁରି ମାଂସ ନିଷିଦ୍ଧ କରାହେଉ ଏବଂ ସାଧାରଣ ଭାବରେ ସମସ୍ତଙ୍କୁ ଶିକ୍ଷା ପ୍ରଦାନ କରି ଭୋଲେ ପ୍ରସ୍ତାବକୁ ବାସ୍ତବ କ୍ଷେତ୍ରରେ କାର୍ଯ୍ୟକାରୀ କରାଯାଉ, ଯଦି ଏହା କେହି ଅମାନ୍ୟ କରେ ଭାରତୀୟ ଦଣ୍ଡବିଧି ଆଇନ୍‌ର ୧୪୪ ଧାରା ତା ବିରୁଦ୍ଧରେ ଲାଗୁ କରାଯାଉ ବୋଲି ସର୍ବ ସମ୍ମତି କ୍ରମେ ପ୍ରସ୍ତାବ ଗୃହୀତ କରିଥିଲେ।

ପ୍ରଥମ ଦିନରେ କେତେକ ସବର୍ଣ୍ଣ ନେତା ସ୍ଥାନୀୟ ଲୋକମାନେ ଭାଷଣ ଦେଇ ଅସ୍ପୃଶ୍ୟ ଏବଂ ଦଳିତମାନଙ୍କର ମାନବିକ ଅଧିକାର ନ୍ୟାୟ ପୂର୍ଣ୍ଣ ଓ ଯୁକ୍ତିଯୁକ୍ତ ବୋଲି କହିଥିଲେ ଏବଂ ସବୁ ପ୍ରକାର ସାହାଯ୍ୟ ଦେବେ ବୋଲି ପ୍ରତିଶ୍ରୁତି ଦେଇଥିଲେ। ପରେ ନିର୍ବାଚନ କମିଟୀ ସଭ୍ୟମାନେ ଚୌଦ୍ୱାର ପୋଖରୀକୁ ଯାଇ ଦଳିତମାନେ ନିଜର ଅଧିକାର ସାବ୍ୟସ୍ତ କରନ୍ତୁ ବୋଲି ପ୍ରସ୍ତାବକୁ ଗ୍ରହଣ କରି କହିଥିଲେ। ସବର୍ଣ୍ଣ ହିନ୍ଦୁମାନେ ତାଙ୍କର କର୍ତ୍ତବ୍ୟ ଓ ଦାୟିତ୍ୱ ବୁଝନ୍ତୁ ଓ ଦଳିତମାନଙ୍କୁ ସାହଯ୍ୟ କରନ୍ତୁ। ମହାଦରେ ଯେଉଁ ପ୍ରସ୍ତାବ ପାଶ୍ ହୋଇଥିଲା ସେହି ପ୍ରସ୍ତାବକୁ କାର୍ଯ୍ୟକାରୀ କରିବାପାଇଁ ସମସ୍ତ ସଭ୍ୟ ଚୌଦୁଆର ପୋଖରୀର ଜଳ ବ୍ୟବହାର କରିବାପାଇଁ ଯାତ୍ରା ଆରମ୍ଭ କଲେ। ଦାସତ୍ୱ ବିରୁଦ୍ଧରେ, ପୁରୋହିତ ପ୍ରଥା ବିରୁଦ୍ଧରେ ଓ ଜାତି ପ୍ରଥା ବିରୁଦ୍ଧରେ ଦଣ୍ଡାୟମାନ ହେଲା ଦଳିତ ଓ ଅସ୍ପୃଶ୍ୟମାନଙ୍କର ଅସରନ୍ତି ସଂଗ୍ରାମ। ମୃତ ଅସ୍ପୃଶ୍ୟ ଓ ଦଳିତମାନଙ୍କୁ ଜାଗ୍ରତ କଲେ ମହାମନା ଆମ୍ବେଦକର, ଯେଉଁ ପୋଖରୀର ଜଳକୁ ମୁସଲମାନ ଓ ଖ୍ରୀଷ୍ଟିଆନମାନେ ବ୍ୟବହାର କରି ପାରୁଥିଲେ ସେହି ପୋଖରୀର ଜଳକୁ ଦଳିତ ଓ ଅସ୍ପୃଶ୍ୟମାନେ ବ୍ୟବହାର କରିପାରୁ ନଥିଲେ। ଦଳିତ ଓ ଅସ୍ପୃଶ୍ୟମାନେ ହିନ୍ଦୁ ଭଗବାନ, ଦେବାଦେବୀ ଓ ଧର୍ମର ରୀତିନୀତି ମାନି ଚଳୁଥିଲେ, କିନ୍ତୁ ସେମାନଙ୍କୁ ମନା କରିବା ସବର୍ଣ୍ଣ ହିନ୍ଦୁମାନଙ୍କର କେତେ ଅତ୍ୟାଚାର ଓ ଔଦ୍ଧିତ୍ୟର ପରିଚୟ ଦିଏ ତାହା ସହଜରେ ବୁଝିବାକୁ ହେବ। ଯୁଗଯୁଗ ଧରି କ୍ରିତଦାସ ରୂପେ ପୁରୁଷାନୁକ୍ରମେ କାଳଯାପନ କରି ଆସୁଥିବା ଦଳିତ ଓ ଅସ୍ପୃଶ୍ୟମାନେ ତାଙ୍କର ନ୍ୟାୟୋଚିତ ମାନବିକ ଅଧିକାର ସାବ୍ୟସ୍ତ କରିବାପାଇଁ ସୁଯୋଗ ପାଇଲେ। ଏହି ଦାସତ୍ୱ ପ୍ରଥାକୁ ମୂଳୋତ୍ପାଟନ କରିବାପାଇଁ ହଜାରହଜାର ଦଳିତ ଓ ଅସ୍ପୃଶ୍ୟମାନଙ୍କୁ ଧରି ମହାବଳୀ ଆମ୍ବେଦକର ଚୌଦ୍ୱାର ପୋଖରୀକୁ ପାଣି ଆଣିବାପାଇଁ ଗଲେ। ଏକ ନୂତନ ସାମାଜିକ ସ୍ତର ହିନ୍ଦୁମାନଙ୍କର ପ୍ରତିଷ୍ଠା କରିବା ଆମ୍ବେଦକରଙ୍କର ଅଭିଳାଷ ଯେଉଁ ସମାଜ ଶ୍ରେଣୀ ବିହୀନ ଓ ଜାତି ବିହୀନ ହେବ। ଆମ୍ବେଦକର ବର୍ତ୍ତମାନ ହତୋତ୍ସାହତା ଦୂର କରି ଦଳିତ ଓ ଅସ୍ପୃଶ୍ୟମାନଙ୍କ ମନରେ ପରିବର୍ତ୍ତନ ଓ ଉତ୍ସାହ ଆଣି ଏକ ନୂତନ ମଣିଷ ଗଢ଼ି ତୋଳିବେ ବୋଲି ଅବିରତ ପ୍ରଚାର କରି ଲାଗିଲେ। ଆତ୍ମ-ପରିବର୍ତ୍ତନ ଅନ୍ୟର ଦୟାରେ କେବେ ସମ୍ଭବ ନୁହେଁ, କିନ୍ତୁ ଆତ୍ମ-ସଂଘର୍ଷ ଓ କର୍ମଦ୍ୱାରା ପରିବର୍ତ୍ତନ ସବୁ ସମୟରେ ସମ୍ଭବ ଅଟେ। ଆମ୍ବେଦକରଙ୍କ ନେତୃତ୍ୱରେ ସଂସ୍କାରମୂଳକ ଆନ୍ଦୋଳନ ଦଳିତ ଓ ଅସ୍ପୃଶ୍ୟମାନଙ୍କ ମଧ୍ୟରେ ତେଜି ଉଠିଲା। ରକ୍ଷଣଶୀଳ ନୈଷ୍ଠିକ ସବର୍ଣ୍ଣମାନେ ଏହି ଆନ୍ଦୋଳନକୁ ଭାଙ୍ଗିଦେବା ନିମନ୍ତେ ନାନା ପ୍ରକାର ଷଡ଼ଯନ୍ତ୍ର କରୁଥାନ୍ତି। ଆମ୍ବେଦକର ଚେତନାଶୀଳ ହେବାପାଇଁ ଦଳିତ ଓ ଅସ୍ପୃଶ୍ୟ ଯୁବକଯୁବତୀମାନଙ୍କୁ ପ୍ରେରଣା ଦେଲେ।

ଆନ୍ଦୋଳନଦ୍ୱାରା ମାନବିକ ଅଧିକାର ମିଳିବ ବୋଲି ସବୁବେଳେ ସତର୍କ କରାଉଥାନ୍ତି। ଅସ୍ପୃଶ୍ୟ ଓ ଦଳତମାନଙ୍କୁ ଆମ୍ବେଦକର ନିଜର ଆତ୍ମ ବିଶ୍ୱାସ ଦେଖାଇ ସେମାନଙ୍କର ବିଶ୍ୱାସକୁ ଉତ୍ଥାନ କରି କାର୍ଯ୍ୟରେ ପ୍ରୟୋଗ କରୁଥିଲେ।

ଭାରତର ଇତିହାସରେ ପ୍ରଥମ ଦିବସ ଅସ୍ପୃଶ୍ୟମାନଙ୍କର ଯାତ୍ରା ସ୍ୱର୍ଣ୍ଣାକ୍ଷରରେ ଲେଖା ହୋଇ ରହିବ। ସମସ୍ତ ଦଳିତ ଏବଂ ଅସ୍ପୃଶ୍ୟମାନେ ତାଙ୍କର ମହାନ୍‌ନେତା ମୁକ୍ତି ଦାତା ଆମ୍ବେଦକରଙ୍କ ପଛେ ପଛେ ଚୌଦୁଆର ପୋଖରୀ ଆଡ଼େ ଅଗ୍ରସର ହେଲେ। ଆନନ୍ଦ, ଉଲ୍ଲାସରେ ସମସ୍ତେ ପାଗଳ, କାରଣ ଯୁଗ ଯୁଗର ସବର୍ଣ୍ଣମାନଙ୍କର ଅତ୍ୟାଚାର ଏବଂ ଦାସତ୍ୱର ବନ୍ଧନ ଆଜି ଚିର ଦିନପାଇଁ ଛିଣ୍ଡାଇ ଦେବେ। ଆମ୍ବେଦକର ପୋଖରୀ ଉପକଣ୍ଠରେ ଦଣ୍ଡାୟମାନ ହେଲେ ତାଙ୍କ ପଛରେ ହଜାରହଜାର ଆବାଳ ବୃଦ୍ଧ ବନିତା ପୋଖରୀର ଆଡ଼ି ଉପରେ ଦଣ୍ଡାୟମାନ ହେଲେ। ଆମ୍ବେଦକର ସର୍ବ ପ୍ରଥମେ ପୋଖରୀରୁ ପାଣି ଆଣି ପାନ କଲେ, ତାପରେ ହଜାରହଜାର ଅନୁନ୍ନତ ଓ ଅସ୍ପୃଶ୍ୟ ପାଣିଆଣି ପାନ କଲେ। ଯେଉଁ ପୋଖରୀର ଜଳ ଅନ୍ୟ ଧର୍ମାଭିଲମ୍ବୀମାନେ ବ୍ୟବହାର କରି ପାରୁଥିଲେ ସେହି ଜଳକୁ ବ୍ୟବହାର କରିବା ପାଇଁ ହିନ୍ଦୁଧର ଅନୁଗାମୀମାନଙ୍କୁ ଶକ୍ତ ମନା ଥିଲା।

ହିନ୍ଦୁ ସବର୍ଣ୍ଣମାନେ ଅର୍ଥାତ ବ୍ରାହ୍ମଣମାନେ ଦଳିତ ଏବଂ ଅସ୍ପୃଶ୍ୟମାନଙ୍କୁ ଇତର ପଶୁ ପରି ବ୍ୟବହାର କରୁଥିଲେ। ପୋଖରୀ ନିକଟରେ ତିଆରି ହୋଇଥିବା ବିରାଟ ପେଣ୍ଡାଲରେ ସମସ୍ତେ ଆସି ରୁଣ୍ଡ ହେଲେ। ଯୁଗଯୁଗର ଅନ୍ୟାୟ ଆଜି ଅନ୍ତିମ ହେଲା। କାର୍ଲାଇଲ କହିଛନ୍ତି, "ମନୁଷ୍ୟର ଶେଷ ନିଷ୍ପତ୍ତି ହେଉଛି ଦୃଢ଼ କାର୍ଯ୍ୟାନୁଷ୍ଠାନ।" ରାସ୍କିନ୍ କହିଛନ୍ତି, "କର୍ତ୍ତବ୍ୟ ହେଉଛି ସବୁଠାରୁ ମହାନ।" ଘଟଣାର ପରେ ପରେ ଅନେକ ସବର୍ଣ୍ଣ ଦୁଷ୍ଟ ହିନ୍ଦୁମାନେ ଦଳିତ ଓ ଅସ୍ପୃଶ୍ୟମାନଙ୍କୁ ଆକ୍ରମଣ କରିବା ଯୋଜନା କରି ମିଛ ଘଟଣା ପ୍ରଚାର କଲେ ଯେ ଅସ୍ପୃଶ୍ୟ ଓ ଦଳିତମାନେ ବୀରରେଶ୍ୱର ମନ୍ଦିରକୁ ପ୍ରବେଶ କରିବାପାଇଁ ଯୋଜନା କରୁଛନ୍ତି। ଏହି ପ୍ରଚ୍ଚର ଚାରି ଆଡ଼େ ପବନ ବେଗରେ ପ୍ରଚାରିତ ହେଲା। ହଜାରହଜାର ବ୍ରାହ୍ମଣ ଏବଂ ଅନ୍ୟ ସବର୍ଣ୍ଣ ହିନ୍ଦୁମାନେ ନାନା ପ୍ରକାର ମାରଣାସ୍ତ୍ର ଧରି ଆକ୍ରମଣ କରିବାକୁ ପ୍ରସ୍ତୁତ ହୋଇ ଆସିଲେ, କିଏ କହିଲା ଆମ୍ଭର ଧର୍ମ ବିନାଶ ହେଲା, କିଏ କହିଲା ଆମର ଭଗବାନ ଅପବିତ୍ର ହୋଇଗଲାଣି, କିଏ କହିଲା ଆମର ହୃଦୟ ଏବଂ ଶରୀର ପାପପୂର୍ଣ୍ଣ ହୋଇ ଅପବିତ୍ର ହେଲା, ସେମାନଙ୍କ ହୃଦୟ ପ୍ରକମ୍ପିତ ହାତ ପାଦ ଥରଥର, ଆଖିଗୁଡ଼ିକ ଉଦିୟମାନ ସୂର୍ଯ୍ୟର ଲୋହିତ କିରଣ ପରି ଲାଲ ବର୍ଣ୍ଣ କରି ପ୍ରଜ୍ୱଳିତ, ଆକ୍ରମଣ କରିବାପାଇଁ ପ୍ରାରମ୍ଭିକ ଯୋଜନା କଲେ। ଯେଉଁ ଅସ୍ପୃଶ୍ୟ ହିନ୍ଦୁମାନେ ଅନ୍ୟ ହିନ୍ଦୁଙ୍କ ପରି ରାମ ଏବଂ କୃଷ୍ଣଙ୍କୁ ଭଗବାନ ବୋଲି ପୂଜା କରନ୍ତି ଏବଂ

ହିନ୍ଦୁ ଧର୍ମର ଅନୁଗାମୀ ସେହ ହିନ୍ଦୁମାନଙ୍କୁ ପାଣି ସ୍ପର୍ଶ କଲେ ଅପବିତ୍ର ହେଉଛନ୍ତି, ଏହା ହିନ୍ଦୁଧର୍ମର ମାନବିକ ବିଶାଳତା ଓ ସନାତନ ଧର୍ମର ଉଦାହରଣ ଅଟେ କି ? ପ୍ରତ୍ୟେକ ପ୍ରାଣୀ ମୁକ୍ତ ଭାବରେ ଜନ୍ମ ହୋଇଛି, ସେ ସ୍ୱାଧୀନ ଭାବରେ ଏହି ପ୍ରକୃତିର ଦେୟକୁ ଗ୍ରହଣ ଏବଂ ବ୍ୟବହାର କରିବାର ଅଧିକାର ଅଛି। ପେଣ୍ଡଲରେ ଥିବା ସମସ୍ତ ପ୍ରତିନିଧିମାନଙ୍କୁ ନାନା ପ୍ରକାର ମାରଣାସ୍ତ୍ର ଧରି ସବର୍ଣ୍ଣ ଏବଂ ବ୍ରାହ୍ମଣମାନେ ଘେରି ରହିଲେ। ଅନ୍ୟ ପ୍ରତିନିଧିମାନେ ନିଜନିଜ ଗ୍ରାମକୁ ଚାଲି ଯିବା ସମୟରେ ମଧ୍ୟ ସବର୍ଣ୍ଣମାନଙ୍କ ଘେରରେ ରହିଲେ। କୌଣସି ଦଳିତ ଏବଂ ଅସ୍ପୃଶ୍ୟ ପ୍ରତିନିଧିମାନେ ମହାଦ୍ ସହରରୁ ବାହାରକୁ ବାହାରି ପାରିଲେ ନାହିଁ। ଅନେକ ପ୍ରତିନିଧି, ଆବାଳବୃଦ୍ଧ ବନୀତ ଏବଂ ଦର୍ଶକମାନେ ମହାଦ୍ ସହରର ରାସ୍ତାରେ ଯାଉଥାନ୍ତି ଠିକ୍ ଏହି ସମୟରେ ସବର୍ଣ୍ଣ ନୈଷ୍ଠିକ ବ୍ରାହ୍ମଣମାନେ ହଠାତ୍ ପେଣ୍ଡାଲ ଉପରକୁ ନାନା ପ୍ରକାର ମାରଣାସ୍ତ୍ର ଧରି ଧସି ଗଲେ। ଦଳିତ ଏବଂ ଅସ୍ପୃଶ୍ୟମାନେ ଭୟଭୀତ ହୋଇ ଚାରିଆଡ଼େ ଏଣେତେଣେ ପଳାଇବାରେ ଲାଗିଲେ। ଆମ୍ବେଦକର ପରିଭ୍ରମଣକାରୀ କର୍ମକର୍ତ୍ତାଙ୍କ ବିଶ୍ରାମ କକ୍ଷରେ ଏହି ଘଟଣା ଦେଖୁଥାନ୍ତି। ଏହା ସନ୍ଧ୍ୟା ଛଅଘଣ୍ଟା ସମୟର ଘଟଣା ଅଟେ। ଆମ୍ବେଦକରଙ୍କୁ ଅନେକ ସବର୍ଣ୍ଣମାନେ ଘେରି ହୋଇ କହିଲେ "ଆପଣ ବୀରେଶ୍ୱର ମନ୍ଦିର ପ୍ରବେଶ କରିବାକୁ ଯୋଜନା କରିଛନ୍ତି କି ?" ଆମ୍ବେଦକର ଧୀରେ ଗମ୍ଭୀର ସ୍ୱରରେ କହିଲେ, "ସେପରି ଯୋଜନା ଆମ୍ଭର ନାହିଁ।" ଆପଣମାନେ ସବର୍ଣ୍ଣମାନଙ୍କୁ ନିୟନ୍ତ୍ରଣ କରନ୍ତୁ ମୁଁ ମୋର ଲୋକମାନଙ୍କୁ ନିୟନ୍ତ୍ରଣ କରିବି। କେତେ ଗୁଣ୍ଡା ଶ୍ରେଣୀର ଯୁବକମାନେ ଆମ୍ବେଦକରଙ୍କୁ ଆକ୍ରମଣ କଲେ କିନ୍ତୁ ଆମ୍ବେଦକରଙ୍କ ଉତ୍ତର ଏବଂ ବ୍ୟବହାରରେ ସେମାନେ ଆକ୍ରମଣରୁ ନିବୃତ୍ତ ହେଲେ। ଏହି ଘଟଣାରେ ପ୍ରାୟ କୋଡ଼ିଏ ଜଣ ଅସ୍ପୃଶ୍ୟ ଲୋକ ଗୁରୁତର ଭାବରେ କ୍ଷତବିକ୍ଷତ ହୋଇ ପଡ଼ିଥିଲେ। ଜଣେ ଡକ୍ଟରଙ୍କୁ ଆମ୍ବେଦକର ପଠାଇ ଆହତ କ୍ଷତବିକ୍ଷତ ଲୋକଙ୍କର ସେବା କରାଇଥିଲେ। ଗୁଣ୍ଡାଶ୍ରେଣୀର ସବର୍ଣ୍ଣମାନେ ଦଳିତ ଏବଂ ଅସ୍ପୃଶ୍ୟ ପ୍ରତିନିଧିମାନଙ୍କୁ ଏକତ୍ରିତ କରି ଜଗି ରହିଲେ ପରେ ପୋଲିସ୍ ଦଳ ଆସିବାରୁ ଛାଡ଼ି ଦେଇଥିଲେ। ଯେଉଁ ପ୍ରତିନିଧିମାନେ ଯେଉଁଯେଉଁ ଗ୍ରାମଗୁଡ଼ିକରୁ ଆସିଥିଲେ ସେହି ଗ୍ରାମର ସବର୍ଣ୍ଣମାନଙ୍କୁ ମଧ୍ୟ ଜଣାଇ ଦେଲେ ଏବଂ ଅସ୍ପୃଶ୍ୟ ପ୍ରତିନିଧିମାନଙ୍କୁ ଦଣ୍ଡ ଏବଂ ମାରପିଟ୍ କରାଇ ଆହତ କଲେ। ଏହି ଅମାନୁଷିକ ଘଟଣା ଚାରିଆଡ଼େ ନିଆଁପରି ବ୍ୟାପିଗଲା। ଶହଶହ ପ୍ରତିନିଧି ଆହତ ଅବସ୍ଥାରେ ଆମ୍ବେଦକର ରହୁଥିବା କୋଠାରେ ଆସି ରୁଣ୍ଡ ହେଲେ। ଆମ୍ବେଦକର ଯଦି ଟିକିଏ ଇଙ୍ଗିତ କରିଥାନ୍ତେ ତାହାହେଲେ ଦଳିତ ଏବଂ ଅସ୍ପୃଶ୍ୟମାନେ ନିମିଷକେ ମହାଦ ସହରରେ ରକ୍ତ ନଦୀ ବୁହାଇ ଦେଇଥାନ୍ତେ। ପ୍ରତିଶୋଧର ନିଆଁ ଚାରିଆଡ଼େ ଖେଳି ଯାଉଥାଏ କିନ୍ତୁ ମହାମନା ଆମ୍ବେଦକର ଶାନ୍ତି ଶୃଙ୍ଖଳା ରକ୍ଷା କରିବାକୁ ସମସ୍ତଙ୍କୁ

ନିବେଦନ କଲେ। ଯେତେ ସଂବାଦ ପ୍ରତିନିଧି ଯୋଗ ଦେଇଥିଲେ ସେ ଚାହିଁ ଥିଲେ ମୁହୂର୍ତ୍ତକେ ସବର୍ଣ୍ଣ ଗୁଣ୍ଡାମାନଙ୍କର ମୁଣ୍ଡ ଭାଙ୍ଗି ଛତୁ କରିଦେଇଥାନ୍ତେ କିନ୍ତୁ ଶାନ୍ତି ଶୃଙ୍ଖଳା ବଜାୟ ରଖି ଅସ୍ପୃଶ୍ୟ ଏବଂ ଦଳିତମାନେ ଅପୂର୍ବ ସାହସୀକତା ଦେଖାଇଥିଲେ। ଅସ୍ପୃଶ୍ୟ ଏବଂ ଦଳିତମାନଙ୍କର ଆନ୍ଦୋଳନ ଥିଲା ସାମ୍ବିଧାନିକ ଓ ହିଂସାବିହୀନ। ତେଣୁ ଏକ ବିରାଟ ରକ୍ତପାତକୁ ଏଡ଼ାଇଦେଇ ହେଲା। ସମସ୍ତ ପ୍ରତିନିଧି ନିଜନିଜ ଗ୍ରାମକୁ ଚାଲି ଗଲେ। ସରକାରଙ୍କଦ୍ୱାରା ସମସ୍ତ ବିଷୟ ଅନୁସନ୍ଧାନ କରାଇ ଆମ୍ବେଦକର ୨୭ ତାରିଖ ମାର୍ଚ୍ଚରେ ତାଙ୍କର ସହଯୋଗୀ ଆନନ୍ଦ ରାଓ ସଙ୍ଗେ ବମ୍ବେ ଫେରି ଆସିଲେ।

ଏହି ଦୁଃଖମୟ ଝଡ଼ ତୋଫାନ ଘଟଣା ପରେ ପୋଲିସ କେତେ ନୈଷ୍ଟିକ ହିନ୍ଦୁ ଗୁଣ୍ଡାମାନଙ୍କୁ ଗିରଫ କଲେ ଏବଂ କେତେ ମହାଦର ଜିଲ୍ଲା ମାଜିଷ୍ଟ୍ରେଟ୍ ଜୁନ୍ ୨୭ ତାରିଖ ୧୯୨୨ରେ ପାଞ୍ଚ ଜଣ ହିନ୍ଦୁ ଗୁଣ୍ଡାମାନଙ୍କୁ ଚାରିମାସ କରି ସଶ୍ରମ କାରାଦଣ୍ଡ ଆଦେଶ ଦେଲେ। ବିଚାରପତି ଜଣେ ହିନ୍ଦୁ ନଥିଲେ। ତେଣୁ ସେ ପ୍ରକୃତ ଦୋଷିକୁ ଦଣ୍ଡ ଦେବାକୁ ପଛ ଘୁଞ୍ଚା ଦେଲେ ନାହିଁ। ଆମ୍ବେଦକର କହିଲେ "ଆଜି ପେସ୍‌ୱା ଶାସନ ହୋଇଥିଲେ ମୋତେ ନିଜେ ହାତୀଦ୍ୱାରା ଖଣ୍ଡବିଖଣ୍ଡିତ କରି ଦେଇଥାନ୍ତେ। ପେସ୍‌ୱା ଶାସନ କାଳରେ ଅସ୍ପୃଶ୍ୟ ଏବଂ ଦଳିତମାନେ ପୁନା ସହର ଭିତରେ ପ୍ରବେଶ କରି ପାରୁ ନଥିଲେ। ତାଙ୍କପାଇଁ କେତେକ ନିର୍ଦ୍ଦିଷ୍ଟ ସମୟ ରଖା ହୋଇଥାଏ ସେ ସମୟରେ ଅସ୍ପୃଶ୍ୟ ଏବଂ ଦଳିତମାନେ ପୁନା ସହର ଭିତରେ ପ୍ରବେଶ କରି ପାରୁନଥିଲେ। ମନୁଷ୍ୟ ପ୍ରତି ମନୁଷ୍ୟର ଅମାନୁଷିକ ଅତ୍ୟାଚାର ବିରୁଦ୍ଧରେ ଭଗବାନଙ୍କଦ୍ୱାରା ସ୍ୱର୍ଗ ରାଜ୍ୟରୁ ପ୍ରେରିତ ହୋଇ ଆମ୍ବେଦକର ଆରମ୍ଭ କଲେ ମାନବ ଅଧିକାର ଆନ୍ଦୋଳନ। ଅସ୍ପୃଶ୍ୟମାନେ ଗ୍ରାମ ବାହାର ବହୁ ଦୂରରେ ଥାନ୍ତି କିନ୍ତୁ ଆଉ ଗୋଟିଏ ବିରାଟ ସଂଖ୍ୟା ଗରିଷ୍ଠ ଜାତି ଶୂଦ୍ର ନାମରେ କଥିତ ହୋଇ ରହୁଥିଲେ ତାଙ୍କ ଉପର ନୈଷ୍ଟିକ ହିନ୍ଦୁମାନେ ଯେଉଁ ଅତ୍ୟାଚାର କରିଛନ୍ତି ତାହା ମାନବ ଇତିହାସରେ ମଧ୍ୟ ବିରଳ। ଅସ୍ପୃଶ୍ୟ ଏବଂ ଆଦିମ ଆଦିବାସୀମାନେ ଶୂଦ୍ରମାନଙ୍କଠାରୁ ସମ୍ପୂର୍ଣ୍ଣ ଭିନ୍ନ ଅଟନ୍ତି। ଆଦିମ ଅଦିବାସୀମାନେ ବଣ ଜଙ୍ଗଲରେ ରହୁଥିଲେ କିନ୍ତୁ ଅସ୍ପୃଶ୍ୟମାନେ ଗ୍ରାମମାନଙ୍କର ବହୁ ଦୂରରେ ରହୁଥିଲେ ତେବେ ସେମାନେ ଶୌର୍ଯ୍ୟବିର୍ଯ୍ୟ ଓ ବଳଶାଳୀ ତେଣୁ ତାଙ୍କୁ ଭାରତର ପଞ୍ଚାଶି ଭାଗ ଲୋକ ଘେରି ରହୁଥିଲେ। ଅସ୍ପୃଶ୍ୟମାନେ କାହାର ଆଦେଶ ଅନ୍ୟାୟ ଭାବରେ ପାଳନ କରୁ ନଥିଲେ।

ମହାରାଷ୍ଟ୍ରରେ ଏପରି ଭାବରେ ଦଳିତ, ଅନୁନ୍ନତ ଓ ଅସ୍ପୃଶ୍ୟମାନଙ୍କର ପ୍ରଥମ ସମ୍ମିଳନୀ ଅନୁଷ୍ଠିତ ହୋଇ ନାଗରିକ ନ୍ୟାୟ ପାଇବାପାଇଁ ପ୍ରସ୍ତାବ ଉପସ୍ଥାପିତ କରିଥିଲେ। ଏହି ସମ୍ମିଳନୀ ସମୟାନୁବର୍ତ୍ତିତ ଏବଂ ଭାରତ ଇତିହାସରେ ଏହା ନୂତନ ଯୁଗର ଆରମ୍ଭ

କହିଲେ ଅତ୍ୟୁକ୍ତି ହେବ ନାହିଁ। ଏହି ସମ୍ମିଳନୀ ଆମ୍ବେଦକରଙ୍କ ବ୍ୟକ୍ତିଗତ ଜୀବନରେ ପରିବର୍ତ୍ତନ ଆଣିବା ସଙ୍ଗେସଙ୍ଗେ ସାମାଜିକ-ସ୍ରୋତ ଓ ଜାତୀୟ ପୁନର୍ଗଠନରେ ବିରାଟ ପରିବର୍ତ୍ତନ ଆରମ୍ଭ ହେଲା। ଭାରତ ଇତିହାସରେ ଆରମ୍ଭ ହେଲା ବଙ୍ଗ ଭଙ୍ଗ, ସୁରାଟ କଂଗ୍ରେସରେ ବାଳ ଗଙ୍ଗାଧରଙ୍କ ଭୂମିକା, ସଭାରକରଙ୍କଦ୍ୱାରା ବୈଦେଶିକ ଲୁଗା ଦହନ, ଖୁଦିରାମ ବୋଷଙ୍କ ଦ୍ୱାରା ମୁଜାଫରପୁରରେ ବମ୍ ପକାଇବା, ୧୯୩୦ରେ ଗାନ୍ଧିଜୀଙ୍କ ଦାଣ୍ଡିଯାତ୍ରା ଓ ସୁବାସ ବୋଷଙ୍କଦ୍ୱାରା ୧୯୪୭ର ମୁକ୍ତି ଯୁଦ୍ଧ। ବିଶାଳ ମହାରାଷ୍ଟ୍ର ପ୍ରଦେଶରୁ ଭାରତୀୟ ରାଜନୀତି, ସାମାଜିକ ଆନ୍ଦୋଳନ ଓ ହିନ୍ଦୁଧର୍ମରେ ସଂସ୍କାରବାଦ ଜନ୍ମ ନେଲା। ଏହି ପ୍ରଦେଶରେ ଜନ୍ମ ଲଭିଥିଲେ ଦଳିତ, ଅନୁନ୍ନତ ଓ ଅସ୍ପୃଶ୍ୟ ଜାତିର ପିତା ଓ ମୁକ୍ତିର ଦାତା ଭୀମରାଓ ଆମ୍ବେଦକର। କୋଟିକୋଟି ଅନ୍ଧ ମାନବ, ମୂକମାନଙ୍କୁ ମାନବିକ ନ୍ୟାୟ ଓ ଅଧିକାର ପାଇବାପାଇଁ ଜାଗ୍ରତ କରି ଥିଲେ ଓ ମାନବ ଇତିହାସର ପରିବର୍ତ୍ତନ କରିଥିଲେ। ଦଳିତ ଓ ଅସ୍ପୃଶ୍ୟ ଯୁବକ ଓ ଯୁବତୀମାନେ ଅଦମ୍ୟ ସାହସ ବାନ୍ଧି ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ଶପଥ ନେଲେ। ମହାଦ ଆନ୍ଦୋଳନରୁ ଦଳିତ ଏବଂ ଅସ୍ପୃଶ୍ୟମାନେ ନିଜର ବ୍ୟକ୍ତିଗତ ଉନ୍ନତି କରିବା ସଙ୍ଗେସଙ୍ଗେ ଦଳିତ ଓ ଅସ୍ପୃଶ୍ୟମାନଙ୍କର ଉନ୍ନତି ଯେପରି ହେବ ସେହିପରି କାର୍ଯ୍ୟ ଆରମ୍ଭ କଲେ। କେତେକ ସବର୍ଣ୍ଣ ହିନ୍ଦୁମାନେ ବୁଝି ପାରିଲେ ଯେ ସର୍ବ ସାଧାରଣ ବ୍ୟବହାର କରୁଥିବା ପୋଖରୀ କିମ୍ବା କୁଅଁରୁ ଅସ୍ପୃଶ୍ୟମାନେ ପାଣି ବ୍ୟବହାର କଲେ କିଛି ଅନ୍ୟାୟ ନାହିଁ ଏହା ବାସ୍ତବିକ ନ୍ୟାୟ ସଙ୍ଗତ ଅଟେ। ଆମ୍ବେଦକର ଯେତେବେଳେ ମହାଦ ଆନ୍ଦୋଳନରୁ ବମ୍ବେ ଫେରିଲେ ସେତେବେଳେ ପରିବାରର ସମସ୍ତେ ଆସ୍ୱସ୍ତି ଲାଭ କଲେ।

ସୌଜନ୍ୟ: ବିଶିଷ୍ଟ ସମାଜସେବୀ ସ୍ୱର୍ଗତ ଯୋଗେନ୍ଦ୍ର ମହାନନ୍ଦ(ସମ୍ବଲପୁର)ଙ୍କ ଅପ୍ରକାଶିତ ପାଣ୍ଡୁଲିପିରୁ ସଂଗୃହୀତ।

# ଆମ୍ବେଦକର ଓ ଗାନ୍ଧୀ

ମଧୁ ଲିମାୟେ

୧୯୧୯-୨୦ ବର୍ଷ ଗାନ୍ଧୀ ନାମରେ ବାତ୍ୟା ସମଗ୍ର ଭାରତ ବର୍ଷରେ ବ୍ୟାପି ଗଲା। ଏ ବାତ୍ୟା ନିଜ ସମ୍ମୁଖରେ ପଡ଼ିଥିବା ପ୍ରତ୍ୟେକ ବସ୍ତୁକୁ ଉଡ଼ାଇ ନେଇଗଲା। ପୂର୍ବରୁ ପ୍ରତିଷ୍ଠିତ ବିଚାର-ବ୍ୟବହାର, ଦଳ ଓ ନେତା ସବୁକିଛି ଏ ବାତ୍ୟାରେ ଧ୍ୱସ୍ତବିଧ୍ୱସ୍ତ ହୋଇଗଲେ। ଖୁବ୍ କମ୍ ଲୋକ ଏ ପ୍ରବଳ ବାତ୍ୟା ଆଗରେ ତିଷ୍ଠି ରହି ପାରିଥିଲେ। ଗାନ୍ଧିଜୀଙ୍କଦ୍ୱାରା ଅପ୍ରଭାବିତ ସେଇ ଅଳ୍ପ କେତେ ଜଣଙ୍କ ମଧ୍ୟରୁ ଆମ୍ବେଦକର ଓ ଜିନ୍ନା ଅନ୍ୟତମ।

ଭାରତର ବିଭିନ୍ନ ପ୍ରଦେଶରେ ତିଳକ ଓ ତାଙ୍କ ଭଳି ଅନେକ ନେତାଙ୍କର ଆବିର୍ଭାବ ପରେ ଭାରତୀୟ ଜାତୀୟ କଂଗ୍ରେସରେ ରାଜନୈତିକ ପରିବର୍ତ୍ତନ ଉପରେ ଜୋର ଦେଉଥିବା ପକ୍ଷ ଅଧିକ ଦୃଢ଼ ହୋଇ ଉଠିଲା (ଯଦିଓ ବିପିନ ଚନ୍ଦ୍ର ପାଲ୍ ଓ ଲାଲା ଲଜପତ ରାୟଙ୍କ ଭଳି ସମକକ୍ଷ ଚରମପନ୍ଥୀ ନେତାଗଣ ସାମାଜିକ ଦୃଷ୍ଟିକୋଣରୁ ମଧ୍ୟ ପ୍ରଗତିଶୀଳ ଥିଲେ), ତଥାପି ୧୮୮୫ରୁ ସାମାଜିକ ପରିବର୍ତ୍ତନ ପ୍ରବାହ ଭିନ୍ନ ଧାରାରେ ରହିବାକୁ ଲାଗିଲା। ମାତ୍ର ଗାନ୍ଧିଜୀଙ୍କ ଆଗମନ ପରେ ଏ ଉଭୟ ଧାରା ମିଶିଗଲେ। ଗାନ୍ଧିଜୀଙ୍କ ପ୍ରେରଣାରେ କଂଗ୍ରେସ ସାମାଜିକ ସଂସ୍କାର ସଂକ୍ରାନ୍ତୀୟ ପ୍ରସ୍ତାବ ପାସ କରିବାକୁ ଲାଗିଲା। ଅସ୍ପୃଶ୍ୟତା ନିବାରଣ, ବ୍ରାହ୍ମଣ ଓ ବ୍ରାହ୍ମଣେତର ବିବାଦର ସମାଧାନକୁ କଂଗ୍ରେସର ମୁଖ୍ୟ କାର୍ଯ୍ୟ ମଧ୍ୟରେ ନିଆଗଲା।

ଆମ୍ବେଦକର ୧୯୨୩ରେ ନିଜର ବିଦେଶୀ-ଶିକ୍ଷା ସମାପ୍ତ କଲେ। ସେ ଆମେରିକାର କଲମ୍ବିଆ ବିଶ୍ୱବିଦ୍ୟାଳୟ ଏବଂ ଲଣ୍ଡନରେ ଶିକ୍ଷା ଗ୍ରହଣ କରିଥିଲେ। ଲଣ୍ଡନରେ ସେ ବାରିଷ୍ଟର ପଢ଼ିଥିଲେ। ଜର୍ମାନୀର ବର୍ଲିନ୍ ବିଶ୍ୱବିଦ୍ୟାଳୟରେ ମଧ୍ୟ ସେ କିଛି ଦିନ କଟାଇଥିଲେ। ଏ ପ୍ରକାରେ ଆମ୍ବେଦକର ପାଶ୍ଚାତ୍ୟ ବିଶ୍ୱର ତିନୋଟି ଆଗୁଆ ଦେଶର ସର୍ବୋତ୍କୃଷ୍ଟ ବିଚାର ସହିତ ପରିଚିତ ହେଲେ।

ନିଜ ଜୀବନର ତିକ୍ତ ଅନୁଭବ ତାଙ୍କ ମନରେ ହିନ୍ଦୁ ସମାଜର ବ୍ୟବସ୍ଥା ପ୍ରତି ଘୃଣା ସୃଷ୍ଟି କରି ଦେଇଥିଲା। ଶହଶହ ବର୍ଷର ଦାସତ୍ୱ ଓ ହିନ୍ଦୁ ଧର୍ମର ଅଙ୍କୁଶ, ଦଳିତ ସମ୍ପ୍ରଦାୟକୁ ଏତେ ବେଶି କୁଣ୍ଠିତ କରି ଦେଇଥିଲା ଯେ ସେମାନେ ଦାସତ୍ୱକୁ ନିଜର ଭାଗ୍ୟ ବୋଲି ବିଚାର କରୁଥିଲେ। ଡଃ ଆମ୍ବେଦକର ଅତ୍ୟନ୍ତ ସମ୍ବେଦନଶୀଳ ଏବଂ ପ୍ରତିଭାଶାଳୀ ବ୍ୟକ୍ତି ଥିଲେ। ପ୍ରତିଭା ସହିତ ତାଙ୍କର ଉତ୍କୃଷ୍ଟ ଧରଣର ଶିକ୍ଷାଗତ ଅନୁଶାସନ ମଧ୍ୟ ରହିଥିଲା।

ପଶ୍ଚିମ ବିଶ୍ୱରେ ସେ ସ୍ୱାଧୀନତା ଏବଂ ସାମ୍ୟର ବାତାବରଣ ଦେଖିଥିଲେ। ସେଠାରେ ବ୍ୟକ୍ତି ଭାବରେ ତାଙ୍କୁ ସମ୍ମାନଜନକ ବ୍ୟବହାର ମିଳିଥିଲା। ଆମେରିକାରେ ରଙ୍ଗଭେଦ ରହିଥିଲା। ମାତ୍ର ସେଠାରେ ମଧ୍ୟ ସେ ନିଜ ଆଖିରେ ଦେଖିଥିଲେ ଯେ - 'ସବୁ ମନୁଷ୍ୟ ସମାନ'- ଏହି ପାଶ୍ଚାତ୍ୟ ଆଦର୍ଶରେ ପ୍ରେରିତ ହୋଇ ଅଶ୍ୱେତମାନେ ମଧ୍ୟ ସମାନ ଅଧିକାରପାଇଁ ଲଢୁ ଥିଲେ। ଜାତି-ସମସ୍ୟା ଉପରେ ୧ ୯ ୧ ୬ ମସିହାରେ ଲେଖା ଯାଇଥିବା ତାଙ୍କର ପ୍ରବନ୍ଧ ବାସ୍ତବ ପକ୍ଷେ ଜାତିପ୍ରଥା ବିରୁଦ୍ଧରେ ଯୁଦ୍ଧର ଘୋଷଣା ପତ୍ର ଥିଲା ମାତ୍ର। ତାଙ୍କର ଉଚ୍ଚତର ଶିକ୍ଷା ଜନ୍ମ ଉପରେ ତିଷ୍ଠି ରହିଥିବା ଜାତିପ୍ରଥାର ଦୋଷତ୍ରୁଟି ବିରୁଦ୍ଧରେ ଲଢ଼ିବା ନିମିତ୍ତ ହତିଆର ସ୍ୱରୂପ ଥିଲା। ତାଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ ବ୍ରାହ୍ମଣବାଦରେ ଦାସତ୍ୱ, ଦଳିତ ଜାତିମାନଙ୍କର ମୁକ୍ତି-ଦଳିତମାନଙ୍କର ନିଜସ୍ୱ ଚେଷ୍ଟା ଯୋଗେ ହିଁ ସମ୍ଭବ ହୋଇପାରିବ। ସବର୍ଣ୍ଣ ହିନ୍ଦୁମାନଙ୍କର ଉଦାରତା ଉପରେ ଭରସା କରିବାରେ ତାଙ୍କର ସ୍ୱୀକୃତି ନଥିଲା। ତାଙ୍କ ମତରେ ଦଳିତଙ୍କୁ ନିଜର ମୁକ୍ତି ନିଜେ ହିଁ ଅର୍ଜନ କରିବାକୁ ପଡ଼ିବ।

ସବର୍ଣ୍ଣମାନଙ୍କ ମଧ୍ୟରେ ଗାନ୍ଧୀ ଯେ ସର୍ବାଧିକ ଶକ୍ତିଶାଳୀ ସଂସ୍କାରକ ଥିଲେ; ଏଥିରେ କୌଣସି ସନ୍ଦେହ ନାହିଁ। ତାଙ୍କର ବିଚାର ଓ ତାଙ୍କର ବ୍ୟବହାର ହିନ୍ଦୁମାନଙ୍କ ମନରେ ମନୁଷ୍ୟପାଇଁ ମନୁଷ୍ୟର ଏ ଘୋର ଅନ୍ୟାୟ ବିରୁଦ୍ଧରେ ବିଚାର ଜାଗ୍ରତ କରିବାରେ ବହୁତ ବଡ଼ କାମ କଲା। ବାସ୍ତବରେ ଗାନ୍ଧିଜୀ ଓ ଆମ୍ବେଦକରଙ୍କର ଅନେକ ବିଷୟରେ ସମାନତା ଥିଲା। ଉଭୟେ ଦଳିତ ଜାତିର ସେବା କରିବାକୁ ଚାହୁଁଥିଲେ। ଉଭୟେ ସେମାନଙ୍କ ପରିସ୍ଥିତ ସୁଧାରିବାକୁ ଚାହୁଁଥିଲେ। ତେବେ ସେମାନେ ଉଭୟେ ଗୋଟିଏ ଲକ୍ଷ୍ୟ ନିମିତ୍ତ ପରସ୍ପର ମିଳିତ ଭାବରେ କାମ କରି ପାରିଲେ ନାହିଁ କାହିଁକି? କାହିଁକି ସେମାନେ ଉଭୟେ ସମ୍ମିଳିତ ଭାବେ ଅନ୍ଧବିଶ୍ୱାସ ଓ ସାମାଜିକ ଅନ୍ୟାୟ ବିରୁଦ୍ଧରେ ଲଢ଼ି ପାରିଲେ ନାହିଁ? ଏ ପ୍ରଶ୍ନଗୁଡ଼ିକର ଉତ୍ତର ସେମାନଙ୍କର ସ୍ୱଭାବଗତ ଭିନ୍ନତା କିମ୍ବା ସେମାନଙ୍କର ମାନସିକ ପାର୍ଥକ୍ୟ ମଧ୍ୟରେ ଖୋଜିବା ସମ୍ଭବ ନୁହେଁ। ଏହି ପାର୍ଥକ୍ୟ ହିଁ ସେମାନଙ୍କ ମଧ୍ୟରେ ଦୂରତ୍ୱର ସୀମାକୁ ବଢ଼ାଇ ଦେଇଥିଲା। ସେମାନଙ୍କ ବ୍ୟକ୍ତିତ୍ୱର ବିଷମତା ସଂଘର୍ଷର ମୂଳ କାରଣ ନଥିଲା। ସେମାନଙ୍କର ଜନ୍ମ ଓ ପାଳନ ପୋଷଣର ପରିସ୍ଥିତିଗତ ପାର୍ଥକ୍ୟ ହିଁ ଏହାର ମୁଖ୍ୟ କାରଣ। ଏହା ସହ ସେମାନଙ୍କ ଦୃଷ୍ଟିକୋଣର ମଧ୍ୟ ବିଶେଷ ପାର୍ଥକ୍ୟ ରହିଥିଲା। ବିଚାର ଦୃଷ୍ଟିରୁ ଉଭୟଙ୍କର ଆକାଶ ପାତାଳର ପାର୍ଥକ୍ୟ ଥିଲା।

ଆମ୍ବେଦକରଙ୍କୁ ଯେ କେବଳ ପଶ୍ଚିମରୁ ପ୍ରେରଣା ମିଳିଥିଲା ତା ନୁହେଁ, ଅଧିକନ୍ତୁ ପଶ୍ଚିମର ବସ୍ତୁବାଦୀ ସଭ୍ୟତା ତାଙ୍କ ମନକୁ ଜୟ କରିଥଲା। ପଶ୍ଚିମରେ ଗଣତାନ୍ତ୍ରିକ ବିକାଶ

ସମତା ମୂଳକ ବିଚାରର ସଫଳତାର ପରିପ୍ରକାଶ ଥିଲା । ପ୍ରତ୍ୟେକ ବ୍ୟକ୍ତିର ପ୍ରତିଷ୍ଠା ଏବଂ ତାର ମହତ୍ୱ ଉପରେ ଆସ୍ଥା ହିଁ ପଶ୍ଚିମର ଲୋକତାନ୍ତ୍ରିକ ଆଦର୍ଶର ସାରକଥା । ହିନ୍ଦୁମାନଙ୍କର ଦାର୍ଶନିକ ବିଭର ଉପନିଷଦର ତତ୍ତ୍ୱଜ୍ଞାନ ଓ ସହୃଦୟ କଳ୍ପନା ସତ୍ତ୍ୱେ ଲୋକତାନ୍ତ୍ରିକ ଆଦର୍ଶର ବାରଣ କରିଥାଏ । ଭାରତୀୟ ମାଟିରୁ ଜନ୍ମିଥିବା ପ୍ରତ୍ୟେକ ଧର୍ମ ପରସ୍ପରର ସମସ୍ତ ପାର୍ଥକ୍ୟ ସତ୍ତ୍ୱେ ପୁନର୍ଜନ୍ମ ଓ କର୍ମ ସିଦ୍ଧାନ୍ତରେ ବିଶ୍ୱାସ କରିଥାନ୍ତି । ହିନ୍ଦୁମାନଙ୍କ ଅନୁସାରେ ବର୍ତ୍ତମାନର ଜୀବନ ଅନେକ ଜୀବନ-ଶୃଙ୍ଖଳାର ଗୋଟିଏ କଡ଼ି ମାତ୍ର ଏବଂ ଏହି ଜନ୍ମ ପୁନର୍ଜନ୍ମର ଅନ୍ତହୀନ ଶୃଙ୍ଖଳା ମଧ୍ୟରେ ଗୋଟିଏ ରହଣି ସ୍ଥାନ ଅଟେ । ଏଥିରେ ଏକା ପ୍ରକାରର ଜମାଖର୍ଚ୍ଚର ଖାତା ରହିଛି ଏବଂ ନିଜର ବର୍ତ୍ତମାନ ଜୀବନରେ ବ୍ୟକ୍ତିକୁ ପୂର୍ବଜନ୍ମର କର୍ମଫଳ ଭୋଗିବାକୁ ହୋଇଥାଏ । ଶାସ୍ତ୍ରଅନୁସାରେ ମନୁଷ୍ୟ ଏ ଜନ୍ମରେ ଭଲ କାମ କରିଥିଲେ ତା'ର ଫଳ ତାକୁ ଏ ଜନ୍ମରେ ନୁହେଁ ବରଂ ପର ଜନ୍ମରେ ମିଳିବ । ଏ ଜନ୍ମରେ ଯଦି ତାକୁ ପ୍ରତିଷ୍ଠିତ ସ୍ଥାନ ମିଳିଥାଏ, ତେବେ ଗତଜନ୍ମରେ କରାଯାଇଥିବା ଭଲ କାର୍ଯ୍ୟ ହିଁ ତା'ର କାରଣ, ଏ ଜନ୍ମର କାର୍ଯ୍ୟ ନୁହେଁ । ମନୁଷ୍ୟ ଜନ୍ମରେ ଯାହା କିଛି କରିଥାଉ ବା ନକରିଥାଉ, ତାଦ୍ୱାରା ଏ ଜନ୍ମରେ ତା'ର ପରିସ୍ଥିତିରେ କୌଣସି ପାର୍ଥକ୍ୟ ଘଟିବ ନାହିଁ । ଏ ଜନ୍ମରେ ସେ ଯାହା କିଛି ଭଲ କାମ କରିବ ତାର ଫଳ ତାକୁ ପରଜନ୍ମରେ ହିଁ ମିଳିବ ।

ଇହଲୋକବାଦ ଓ ପରଲୋକବାଦ ଦର୍ଶନରେ ଏ ଯେଉଁ ପାର୍ଥକ୍ୟ ରହିଛି ତାକୁ ଦୂର କରିବା ଏ ପର୍ଯ୍ୟନ୍ତ ସମ୍ଭବ ହୋଇ ପାରିନାହିଁ । ଧର୍ମନିରପେକ୍ଷତାର ଯଥାର୍ଥ ଅର୍ଥ ହେଉଛି ଇହଲୋକବାଦ - ଯାହାର କି ମରଣୋତ୍ତର ଜୀବନ ସହିତ କୌଣସି ସମ୍ପର୍କ ନାହିଁ । ମୃତ୍ୟୁ ପରବର୍ତ୍ତୀ ଜୀବନକୁ ସେ ସ୍ୱୀକାର କରେ ନାହିଁ । ବ୍ୟକ୍ତି ଯେ କେବଳ ଗୋଟିଏ ମାତ୍ର ଜୀବନ ରହିଛି - ଏହି ସିଦ୍ଧାନ୍ତକୁ ସେ ମାନି ଥାଏ । ଏ ସିଦ୍ଧାନ୍ତ ଅନୁସାରେ ଯେହେତୁ ବ୍ୟକ୍ତିର କେବଳ ଗୋଟିଏ ମାତ୍ର ଜୀବନ ରହିଛି ତେଣୁ ଏ ପୃଥିବୀରେ ସାମାଜିକ, ରାଜନୈତିକ ଓ ଆର୍ଥିକ ବ୍ୟବସ୍ଥାକୁ ଏଭଳି ପରିପୂର୍ଣ୍ଣ କରାଯିବା ଆବଶ୍ୟକ ଯେ ବ୍ୟକ୍ତି ନିଜର ଜୀବନ କାଳରେ ନିଜର ସମ୍ପୂର୍ଣ୍ଣ କ୍ଷମତାର ଉପଯୋଗ କରିପାରିବ ।

ଯେଉଁ ବ୍ୟକ୍ତି ପୁନର୍ଜନ୍ମରେ ବିଶ୍ୱାସ କରିଥାଏ, ତାକୁ ହିଁ ସମ୍ପୂର୍ଣ୍ଣ ଅନୁଶାସନ ସମ୍ବଳିତ ଜାତି ବ୍ୟବସ୍ଥାକୁ ମାନିବାକୁ ପ୍ରସ୍ତୁତ କରାଯାଇପାରେ । ଏମିତି କି ସମାଜ ନିମ୍ନଜାତିଗୁଡ଼ିକ ଉପରେ ଯେଉଁ ଅତ୍ୟାଚାର କରିଥାଏ, ତାକୁ ମଧ୍ୟ ଏଇ ଭିତ୍ତିରେ ଉଚିତ୍ ପ୍ରମାଣିତ କରାଯାଇପାରେ ଯେ ନୀଚ ଜାତିରେ ଜନ୍ମ ନେବା ମନୁଷ୍ୟର ପୂର୍ବଜନ୍ମର ହିଁ କର୍ମଫଳ । ଦଳିତ ଜାତିମାନଙ୍କର କଷ୍ଟ, ସବର୍ଣ୍ଣ ହିନ୍ଦୁମାନଙ୍କ ଅନ୍ତରାତ୍ମାକୁ ଜାଗ୍ରତ କରିବା ପରିବର୍ତ୍ତେ ସେମାନଙ୍କ ହୃଦୟରେ ଘୋର ଉଦାସୀନତା ହିଁ ସୃଷ୍ଟି କରିଥାଏ । ଯେହେତୁ ଧର୍ମ ଓ ଦର୍ଶନ ଏ ଅତ୍ୟାଚାରକୁ ସମାପ୍ତ କରିବାର ଆବଶ୍ୟକ ଓ ସମ୍ଭାବନାକୁ ମଧ୍ୟ ସ୍ୱୀକାର

କରେ ନାହିଁ, ତେଣୁ ସବର୍ଣ୍ଣ ହିନ୍ଦୁ ନିଜର ଅନ୍ତରାତ୍ମାର ତାଡ଼ନା ପ୍ରତି ଉଦାସୀନ ରହି ନିଜର ଜନ୍ମଜାତ ବିଶେଷ ଅଧିକାରଗୁଡ଼ିକ ମଜାରେ ଉପଭୋଗ କରିପାରେ।

ଡଃ ଆମ୍ବେଦକର ଏହି ଦର୍ଶନକୁ ଏବଂ ଏହି ଧାର୍ମିକ ଦୃଷ୍ଟିକୋଣକୁ ମାନି ନେଇ ନଥିଲେ, ବିରୂପ ଯଥାର୍ଥ ସମ୍ମୁଖରେ ସେ ନିଜକୁ ଅସହାୟ ବୋଧ କରି ନଥିଲେ। ଅପର ପକ୍ଷେ ସେ ଅନ୍ୟାୟ ସହିତ ଲଢ଼ିବାପାଇଁ ଓ ସାମାଜିକ ବ୍ୟବସ୍ଥାକୁ ବଦଳାଇ ଦେବାପାଇଁ ପ୍ରତିଜ୍ଞା କରିଥିଲେ। ତାଙ୍କ ଦୃଷ୍ଟିରେ ଦଳିତ ସଂପ୍ରଦାୟର ପରିସ୍ଥିତିରେ ଉନ୍ନତି କରିବାର ପ୍ରଶ୍ନ ଜାତିପ୍ରଥାର ଉନ୍ମୂଳନ ସହିତ ମଧ୍ୟ ଜଡ଼ିତ ଥିଲା। ଏ ପ୍ରଶ୍ନକୁ ନେଇ ବୁଝାମଣା କରିବା ନିମିତ୍ତ ସେ ପ୍ରସ୍ତୁତ ନ ଥିଲେ କିମ୍ବା ବର୍ତ୍ତମାନର ଜାତି ଓ ବେଦର ଚତୁଃବର୍ଣ୍ଣ ଆଦର୍ଶର ନୈତିକ ପାର୍ଥକ୍ୟ ଦେଖିବା ନିମନ୍ତେ ମଧ୍ୟ ପ୍ରସ୍ତୁତ ନଥିଲେ। ତାଙ୍କ ଦୃଷ୍ଟିରେ ଆଜିର ଜାତିପ୍ରଥା ଜନ୍ମ-ଭିତ୍ତିକ ଚତୁର୍ବର୍ଣ୍ଣ୍ୟର ଅନିବାର୍ଯ୍ୟ ଓ ତାର୍କିକି ପରିଣତି ମାତ୍ର। ତେଣୁ ସେ ଆର୍ଯ୍ୟ ସମାଜର ଲୋକଙ୍କ ବିଚାର ସହ ଏକମତ ହୋଇ ପାରି ନଥିଲେ। ଆର୍ଯ୍ୟ ସମାଜରେ ଜାତିର ବର୍ତ୍ତମାନ ପ୍ରଚଳିତ ରୂପକୁ ନିନ୍ଦା କରାଯାଇଥାଏ। ମାତ୍ର ବର୍ଣ୍ଣ ପ୍ରଣାଳୀର ପ୍ରଶଂସା କରାଯାଇଥାଏ। ଗାନ୍ଧିଜୀ ମଧ୍ୟ ପ୍ରଥମେ ଚତୁଃବର୍ଣ୍ଣ-ପ୍ରଣାଳୀର ସମର୍ଥକ ଥିଲେ। ଡଃ ଆମ୍ବେଦକର ଓ ଗାନ୍ଧୀଜୀଙ୍କ ମଧ୍ୟରେ ଶେଷ ପର୍ଯ୍ୟନ୍ତ ଯେଉଁ ବିଚାର-ସଙ୍ଘର୍ଷ ଚାଲିଥିଲା, ଏହି ପାର୍ଥକ୍ୟ ହିଁ ତାର ମୂଳ କାରଣ। ଏ ସଙ୍ଘର୍ଷ ପ୍ରାୟ ୨୫ ବର୍ଷ ଧରି ଚାଲିଥିଲା ଏବଂ ବର୍ଷକୁବର୍ଷ ତା'ର ତିକ୍ତତା ବୃଦ୍ଧି ପାଇଥିଲା, ମାତ୍ର ଊଣା ହୋଇ ନଥିଲା। ଏ ତିକ୍ତତାର ସଙ୍ଘର୍ଷ ଯେ ଶେଷ ହୋଇଯିବ ଓ ଉଭୟେ ମିଶି କରି କାମ କରିବେ ଏଇଭଳି ଥରେ ଅଧେ ମନେ ହୋଇଛି ସତ, କିନ୍ତୁ ଦୃଷ୍ଟିକୋଣର ମୌଳିକ ପାର୍ଥକ୍ୟ ହେତୁ ଏ ଆଶା ଭିତ୍ତିହୀନ ହୋଇ ଯାଇଥିଲା।

ଗାନ୍ଧିଜୀଙ୍କର ପାଳନପୋଷଣ କାଠିଆବାଡ଼ର ବୈଷ୍ଣବ-ଜୈନ ବାତାବରଣରେ ହୋଇଥିଲା। ତାଙ୍କ ମାନସିକତାକୁ ଗଢ଼ିବାରେ ତାଙ୍କ ମା'ଙ୍କର ଅବଦାନ କେତେ ବେଶି ପ୍ରଭାବ ଥିଲା, ଏ କଥା ଖୁବ୍ କମ୍ ଲୋକେ ବୁଝି ପାରନ୍ତି। ତାଙ୍କର ଗଭୀର ଆସ୍ଥା ଓ ବିଶ୍ୱାସ, ବ୍ରତ ଉପବାସଗୁଡ଼ିକର ନିୟମକୁ ନିଷ୍ଠାର ସହିତ ପାଳନ, ଏସବୁ ଗାନ୍ଧୀଙ୍କ କୋମଳ ହୃଦୟରେ ଗଭୀର ପ୍ରଭାବ ପକାଇଥିଲା। 'ସୋସାଇଟି ଅଫ ଫ୍ରେଣ୍ଡସ୍'ଦ୍ୱାରା ପ୍ରଚାରିତ ଖ୍ରୀଷ୍ଟଧର୍ମର ପ୍ରଭାବ ହେଉଛି ତାଙ୍କ ଜୀବନ ଉପରେ ପଡ଼ିଥିବା ଦ୍ୱିତୀୟ ମହତ୍ୱପୂର୍ଣ୍ଣ ପ୍ରଭାବ। ପାଶ୍ଚାତ୍ୟ ଖ୍ରୀଷ୍ଟଧର୍ମ ଏବଂ ଗ୍ରୀକ୍ ରକ୍ଷଣଶୀଳ ଖ୍ରୀଷ୍ଟ ଧର୍ମଦ୍ୱାରା ପ୍ରଭାବିତ ଥୋଜରା, ରସ୍କିନ ଓ ଟଲଷ୍ଟୟଙ୍କ ଭଳି ଚିନ୍ତାନାୟକମାନେ ମଧ୍ୟ ଗାନ୍ଧିଜୀଙ୍କୁ ଅତ୍ୟନ୍ତ ପ୍ରଭାବିତ କରିଥିଲେ।

ଅଧିକାଂଶ ସମସ୍ୟା ଉପରେ ଗାନ୍ଧିଜୀଙ୍କର ବିଚାର ଦକ୍ଷିଣ ଆଫ୍ରିକାର ସଂଘର୍ଷ ଏବଂ ସେଠାରୁ ପ୍ରାପ୍ତ ଅନୁଭବ ଉପରେ ଆଧାରିତ ଥିଲା। ତାଙ୍କୁ ଯେତେ ବେଳେ ହୋମରୁଲ

ଲିଗ୍‌ରେ ସମ୍ମିଳିତ ହେବାପାଇଁ କୁହାଗଲା, ସେତେବେଳେ ସେ ସ୍ପଷ୍ଟ ଭାବରେ ଜଣାଇ ଦେଲେ ଯେ ଯଦି ସେ କୌଣସି ସଂସ୍ଥାରେ ମିଶିବେ ତେବେ ସେ ସଂସ୍ଥାକୁ ସେ ନିଜର ବିଚାର ଓ ନିଜର କାମ କରିବା ଢଙ୍ଗରେ ଗଢ଼ିବାକୁ ଚାହିଁବେ। ଅବଶ୍ୟ ଏହାର ଅର୍ଥ ନୁହେଁ ଯେ ସେ କେବଳ ନିଜ ଇଚ୍ଛାନୁସାରେ କାମ କରୁଥିଲେ। ତାଙ୍କ ମନ ଖୋଲା ଥିଲା, ସେ ନମନଶୀଳ ଥିଲେ। ଗାନ୍ଧିଜୀ ୧୯୧୪ରେ ଭାରତକୁ ଫେରିଲେ ଏବଂ ଏହାକୁ ନିଜ ଜୀବନର ଏକ ନୂଆ ମୋଡ଼ ବୋଲି ସେ ବର୍ଣ୍ଣନା କରିଛନ୍ତି। ଏହା କୁହାଯାଇପାରେ ଯେ ସେ ସମୟରେ ଗାନ୍ଧିଜୀ ଅସ୍ପୃଶ୍ୟତାର ବିରୋଧି, କିନ୍ତୁ ବିଶୁଦ୍ଧ ବର୍ଣ୍ଣ ବ୍ୟବସ୍ଥାର ସପକ୍ଷରେ ଦୃଢ଼ ପ୍ରତିଜ୍ଞ ଥିଲେ। ଅସ୍ପୃଶ୍ୟତାର ପାପ ଏବଂ ଜାତି ବ୍ୟବସ୍ଥାର ଉପଯୋଗିତା ମଧ୍ୟରେ ସେ କୌଣସି ପ୍ରକାର ବିରୋଧ ଦେଖୁ ନଥିଲେ।

ନାଗପୁର କଂଗ୍ରେସ (୧୯୨୦)ରେ ନିଜର ସମ୍ପୂର୍ଣ୍ଣ ବିଜୟର ପରିପ୍ରେକ୍ଷୀରେ ଗାନ୍ଧିଜୀ ଚାର୍ଲି ଏଣ୍ଡ ରୁଓଙ୍କୁ ନିଜର ଆସ୍ଥାର ଦୁଇଟି ଦିଗ ସମ୍ପର୍କରେ ଲେଖୁଥିଲେ ଯଦିଓ ସେ ବର୍ତ୍ତମାନ 'ସବୁଠାରୁ ବଡ଼ ଶତ୍ରୁ' ଇଂରେଜ ସରକାର ବିରୁଦ୍ଧରେ ଲଢ଼ିବାକୁ ପ୍ରତିଜ୍ଞା କରି ସାରିଛନ୍ତି, ତଥାପି ଇଂରେଜମାନଙ୍କ ସହିତ ନିଜର ସମ୍ପର୍କକୁ ସବୁ କ୍ଷେତ୍ରରେ ଭାଙ୍ଗି ଦେବାକୁ ପଡ଼ିବ ଏ ବିଷୟରେ ସେ ବର୍ତ୍ତମାନ ପ୍ରସ୍ତୁତ ନୁହନ୍ତି। ଇଂରେଜମାନଙ୍କ ସହିତ ତାଙ୍କର ସମ୍ପର୍କ ନିର୍ମଳତା ଭିତ୍ତିରେ ହେଉ-ଏହା ସେ ଚାହୁଁଥିଲେ। 'କୃଷ୍ଣକାୟ ଓ ଗହମରଙ୍ଗର ଜାତିମାନଙ୍କ ସହିତ ଇଂରେଜମାନଙ୍କ ସମ୍ପୂର୍ଣ୍ଣ ଆନ୍ତରିକତାର ସମ୍ପର୍କ ବୋଧ ହୁଏ ହୋଇ ପାରେ ନାହିଁ। ମୁଁ କିନ୍ତୁ ସମ୍ମାନଜନକ ସମାନତାର ସମ୍ଭାବନାକୁ ନଷ୍ଟ କରିବାକୁ ଚାହୁଁନାହିଁ। ଅନ୍ୟ ସମ୍ପ୍ରଦାୟଗୁଡ଼ିକର ମୂଲ୍ୟରେ ମୁଁ ଦଳିତ ସମ୍ପ୍ରଦାୟର ସ୍ୱରାଜ୍ୟ ଚାହେଁ ନାହିଁ। ମୋ ଦୃଷ୍ଟିରେ ତାହା ସ୍ୱରାଜ୍ୟ ହେବ ନାହିଁ। ଯେଉଁ ମୁହୂର୍ତ୍ତରେ ଭାରତର ଅନ୍ତଃଶୁଦ୍ଧି ହୋଇଯିବ ସେତେବେଳେ ହିଁ ସେ ସ୍ୱାଧୀନ ହେବ, ତା ପୂର୍ବରୁ ନୁହେଁ - "ଏହା ମୋର ଦୃଢ ବିଶ୍ୱାସ। ସରକାରଙ୍କ ବିରୁଦ୍ଧରେ ଲଢ଼େଇପାଇଁ କାର୍ଯ୍ୟକର୍ତ୍ତାମାନଙ୍କ ମନ୍ତବ୍ୟ ଭିନ୍ନଭିନ୍ନ ପ୍ରକାରର ହୋଇପାରେ, କିନ୍ତୁ ଅସ୍ପୃଶ୍ୟତା ରୂପୀ ସଇତାନ ବିରୁଦ୍ଧରେ ଲଢ଼ିବାପାଇଁ କେବଳ କେତେ ଜଣ ବଛାବଛା ଲୋକ ହିଁ ଯୋଗ ଦେଇ ପାରିବେ।" - ଏହା ଥିଲା ଗାନ୍ଧୀଙ୍କ ମନ୍ତବ୍ୟ। ପ୍ରଶ୍ନ ଉଠୁଛି ଯେ ଯେଉଁ ଗାନ୍ଧୀ ଅସ୍ପୃଶ୍ୟତାକୁ ପାପ ବୋଲି ମଣୁଥିଲେ ଏବଂ ତାହାର ଉନ୍ମୂଳନପାଇଁ ପ୍ରତିଜ୍ଞାବଦ୍ଧ ଥିଲେ, ତାଙ୍କ ସାଙ୍ଗରେ ସାମାଜିକ ବିଷମତାର ଶତ୍ରୁ ଆମ୍ବେଦକର କାହିଁକି ସହଯୋଗ କରିପାରିଲେ ନାହିଁ ?

ଏ ପ୍ରଶ୍ନର ଉତ୍ତର ଦୁଇ ପ୍ରକାରେ ଦିଆଯାଇପାରେ। ପ୍ରଥମତଃ ବ୍ରିଟିଶ୍ ଶାସନ ଓ ଅସ୍ପୃଶ୍ୟତା ଏ ଦୁଇଟି ଶତ୍ରୁ ସମ୍ପର୍କରେ ଆମ୍ବେଦକରଙ୍କର ମୂଲ୍ୟାଙ୍କନ ଗାନ୍ଧିଜୀଙ୍କ ମୂଲ୍ୟାଙ୍କନ

ଅପେକ୍ଷା ଭିନ୍ନ ଥିଲା । ଦ୍ୱିତୀୟତଃ ଆମ୍ବେଦକର ଅସ୍ପୃଶ୍ୟତାର ସ୍ୱରୂପ ଓ ଜାତିର ସ୍ୱରୂପ ମଧ୍ୟରେ ପାର୍ଥକ୍ୟ ଦେଖିବାକୁ ପ୍ରସ୍ତୁତ ନଥିଲେ । ଉଭୟ ତାଙ୍କ ଦୃଷ୍ଟିରେ ପରସ୍ପର ସହ ସଂପୃକ୍ତ- ତେଣୁ ଜାତିକୁ ନଷ୍ଟ ନ କରି ଅସ୍ପୃଶ୍ୟତାକୁ ନଷ୍ଟ କରାଯାଇ ପାରିବ ନାହିଁ ।

ଆମ୍ବେଦକରଙ୍କ ଦୃଷ୍ଟିରେ ଭାରତରେ ବ୍ରିଟିଶ୍ ରାଜତ୍ୱ ସବୁଠାରୁ ବଡ଼ ମାରାତ୍ମକ ନଥିଲା, ଜାତି ବ୍ୟବସ୍ଥା ହିଁ ସର୍ବାଧିକ ମାରାତ୍ମକ । ତେଣୁ ତାଙ୍କର ସମସ୍ତ ଶକ୍ତି ଜାତି ବ୍ୟବସ୍ଥାକୁ ନଷ୍ଟ କରିବାରେ ଲାଗିଥିଲା, ବ୍ରିଟିଶ୍ ଶାସନ ବିରୁଦ୍ଧରେ ସେ ଲଢ଼ି ନଥିଲେ । ବିଦେଶୀ ଆକ୍ରମଣକାରୀଙ୍କ ନିକଟରେ ବାରମ୍ବାର ଭାରତର ପରାଜୟର କାରଣ ସେ ଜାତିପ୍ରଥାଦ୍ୱାରା ଉତ୍ପନ୍ନ ପଙ୍ଗୁତା ଓ ଉଦାସୀନତାକୁ ହିଁ ମାନୁଥିଲେ । ମନରେ କୌଣସି ଗ୍ଲାନି ବା ଅନୁତାପ ନ ରଖି ସେ ବାରମ୍ବାର କହୁଥିଲେ ତାଙ୍କର ଜାତି ପେଶୱାମାନଙ୍କ ଅତ୍ୟାଚାରୀ ଶାସନକୁ ଧ୍ୱଂସ କରିବା ନିମନ୍ତେ ଇଂରେଜମାନଙ୍କୁ ସାହାଯ୍ୟ କରିଥିଲେ । ବମ୍ବେ ପ୍ରେସିଡେନ୍‌ସିରେ ଦଳିତ ଜାତିର ଶିକ୍ଷାଗତ ପରିସ୍ଥିତି ସମ୍ପର୍କରେ ସାଇମନ କମିଶନଙ୍କୁ ଦିଆଯାଇଥିବା ତାଙ୍କର ବକ୍ତବ୍ୟରେ ସେ କହିଥିଲେ ଯେ – ଦଳିତ ଜାତିମାନେ ହିଁ ଇଂରେଜମାନଙ୍କୁ ଭାରତ ଜୟ କରିବାରେ ସାହାଯ୍ୟ କରିଥିଲେ, କିନ୍ତୁ ବ୍ରିଟିଶ୍ ସରକାର ସେମାନଙ୍କ ପ୍ରତି କୃତଜ୍ଞତା ପ୍ରକାଶ କରିବା ପରିବର୍ତ୍ତେ ଉଚ୍ଚଜାତିମାନଙ୍କୁ ଶିକ୍ଷାର ସୁବିଧା ଦେଲା ଏବଂ ଶକ୍ତିଶାଳୀ ସମାଜ ନିକଟରୁ ଅଲଗା ହୋଇ ଯିବାର ଭୟରେ ଦଳିତ ସଂପ୍ରଦାୟକୁ ପୁରାପୁରି ଉପେକ୍ଷା କଲା ।

ପ୍ରଥମ ଗୋଲ୍‌ଟେବୁଲ ବୈଠକରେ ଦିଆଯାଇଥିବା ତାଙ୍କର ଭାଷଣରେ ସେ ସ୍ପଷ୍ଟ ଭାବରେ କହିଥିଲେ ଯେ "ଦଳିତ ବର୍ଗ ଓ ଇଂରେଜମାନେ ଗୋଟିଏ ଅସାଧାରଣ ବନ୍ଧନରେ ଆବଦ୍ଧ । ଦଳିତମାନେ ସନାତନୀ ହିନ୍ଦୁମାନଙ୍କର ଶହଶହ ବର୍ଷର ପୁରୁଣା ଅତ୍ୟାଚାରରୁ ମୁକ୍ତି ଦିଆଇବାପାଇଁ ମୁକ୍ତିଦାତା ଭାବରେ ଇଂରେଜମାନଙ୍କୁ ସ୍ୱାଗତ କରିଥିଲେ । ଇଂରେଜମାନଙ୍କପାଇଁ ସେମାନେ ହିନ୍ଦୁ, ମୁସଲମାନ ଓ ଶିଖମାନଙ୍କ ବିରୁଦ୍ଧରେ ଲଢ଼େଇ କରିଛନ୍ତି ଓ ସେମାନଙ୍କପାଇଁ ଭାରତର ମହାନ ସାମ୍ରାଜ୍ୟକୁ ଜିତିଛନ୍ତି ।"

ପ୍ରାୟ ଦଶ ବର୍ଷ ପରେ ଯେତେବେଳେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେଲା, ସେତେବେଳେ ଦଳିତ ଏବଂ ପଛୁଆ ଜାତିମାନଙ୍କୁ ସୈନ୍ୟବାହିନୀରେ ଯୋଗଦେବାପାଇଁ ଅପିଲ କରି ସେ କହିଥିଲେ ଯେ ଏକଦା ବମ୍ବେ ସୈନ୍ୟବାହିନୀର ପ୍ରାୟ ତିନି ଚତୁର୍ଥାଂଶ ମାହାରମାନଙ୍କଦ୍ୱାରା ଗଢ଼ା ଯାଇଥିଲା । ଇଂରେଜମାନଙ୍କ ସପକ୍ଷରେ ସେମାନେ ଅନେକ ବଡ଼ ଲଢ଼ାଇ ଲଢ଼ିଥିଲେ । ସେଗୁଡ଼ି ମଧ୍ୟରୁ କୋରେଗାଁଓର ପ୍ରସିଦ୍ଧ ଲଢ଼େଇ ଅନ୍ୟତମ । ସେ ଯୁଦ୍ଧରେ ପେଶୱାଙ୍କର ପରାଜୟ ହୋଇଥିଲା ଏବଂ ଇଂରେଜମାନେ ନିଜର ପ୍ରଭୁତ୍ୱ ସ୍ଥାପନ କରିଥିଲେ । ସୈନ୍ୟବାହିନୀରେ ମାହାରମାନଙ୍କୁ ନିଯୁକ୍ତି ସମ୍ପର୍କରେ ଜୋର ଦେଇ

ଟାଇମ୍‌ସ୍ ଅଫ୍ ଇଣ୍ଡିଆକୁ ଲେଖିଥିବା ଚିଠିରେ ସେ କୋରେଗାଁଦର ଲଢ଼େଇ ବିଷୟରେ ପୁନର୍ବାର ଉଲ୍ଲେଖ କରିଛନ୍ତି। ସେଥିରେ ସେ କହିଛନ୍ତି ଯେ ' ସେ ଯୁଦ୍ଧର ସ୍ମୃତିରେ ଇଂରେଜମାନେ କୋରେଗାଁଦରେ ଗୋଟିଏ ବିଜୟ ସ୍ତମ୍ଭ ନିର୍ମାଣ କରିଥିଲେ। ତା ଉପରେ ଇଂରେଜମାନଙ୍କ ପକ୍ଷନେଇ ମୃତ୍ୟୁବରଣ କରିଥିବା ସୈନ୍ୟମାନଙ୍କ ନାଁ ରହିଛି। ସେ ନାଁଗୁଡ଼ିକ ମଧ୍ୟରୁ ଦଶ ଭାଗରୁ ନଅ ଭାଗ ନାମ ମାହାରମାନଙ୍କର।'

ଭାରତକୁ ଇଂରେଜ ଶାସନରୁ ମୁକ୍ତ କରିବାକୁ ଆମ୍ବେଦକର କେବେ ବି ନିଜର ଜୀବନର ଲକ୍ଷ୍ୟ ବୋଲି ବିଚାରି ନାହାନ୍ତି। ଦଳିତମାନଙ୍କୁ ବ୍ରାହ୍ମଣବାଦ ଓ ଜାତି ପ୍ରଥାରୁ ମୁକ୍ତ କରାଯିବା ହିଁ ନିଜ ଜୀବନର ଲକ୍ଷ୍ୟ ବୋଲି ସେ ସବୁବେଳେ ବିଚାର କରନ୍ତି। ରେଳବାଇ-ଶ୍ରମିକମାନଙ୍କୁ ସମ୍ବୋଧନ କରି ୧୯୩୮ରେ ସେ କହିଥିଲେ ଯେ ଶ୍ରମିକମାନଙ୍କୁ ଦୁଇଟି ଶତ୍ରୁ ବିରୁଦ୍ଧରେ ଲଢ଼ିବାକୁ ହେବ ଯଥା: ବ୍ରାହ୍ମଣବାଦ ଓ ପୁଞ୍ଜିବାଦ। ବ୍ରାହ୍ମଣବାଦର ତାତ୍ପର୍ଯ୍ୟ କୌଣସି ସମୂହ ବିଶେଷପାଇଁ ନୁହେଁ। ସ୍ୱାଧୀନତା, ସମାନତା ଓ ଭ୍ରାତୃଭାବ ଭାବନାର ବିରୋଧ ହିଁ ବ୍ରାହ୍ମଣବାଦ ବୋଲି ତାଙ୍କର ମତ୍ ଥିଲା। ଏ ବିରୋଧ କେବଳ ବ୍ରାହ୍ମଣ ଜାତିରେ ହିଁ ନାହିଁ। ବ୍ରାହ୍ମଣମାନେ ଏ ପ୍ରଥାର ଆରମ୍ଭ କରିଥିଲେ ସତ ମାତ୍ର ଏ ଭୁଲ ବର୍ତ୍ତମାନ ସବୁ ଜାତିରେ ମିଶିଯାଇଛି। ଏହାରି ବିରୁଦ୍ଧରେ ଆମକୁ ଲଢ଼ିବାକୁ ହେବ।

ଦ୍ୱିତୀୟ ଗୋଲଟେବୁଲ୍ ବୈଠକରେ ଦଳିତ ବର୍ଗର ପ୍ରତିନିଧିତ୍ୱର ପ୍ରଶ୍ନକୁ ନେଇ ଡଃ ଆମ୍ବେଦକର ଓ ଗାନ୍ଧିଜୀଙ୍କ ମଧ୍ୟରେ ବିବାଦ ହୋଇ ଯାଇଥିଲା। ସଂଖ୍ୟାଲଘୁ ସଂପ୍ରଦାୟଙ୍କ ସମସ୍ୟା ଉପରେ ବିଚାର କରୁଥିବା କମିଟୀ ଆଗରେ ଗାନ୍ଧିଜୀ କହିଥିଲେ ଯେ - 'ବିଧାନ ମଣ୍ଡଳଗୁଡ଼ିକରେ ଅସ୍ପୃଶ୍ୟମାନଙ୍କ ପ୍ରତିନିଧିତ୍ୱକୁ ଆମେ ବିରୋଧ କରୁଛୁ କହିବାଦ୍ୱାରା ସତ୍ୟକୁ ବିକୃତ କରାଯାଇଛି। ମୁଁ ଯାହା କହିଥିଲି ସେ କଥା ପୁନର୍ବାର ଏଠାରେ କହିବାକୁ ଯାଉଛି ଯେ ଆମେ ବିଶେଷ ପ୍ରତିନିଧିତ୍ୱର ବିରୋଧ କରୁଛୁ। ତଦ୍ୱାରା ଦଳିତ ଜାତିର ଉପକାର ହୋଇ ପାରିବ ନାହିଁ ବୋଲି ମୋର ବିଶ୍ୱାସ। ସାବାଳକ ମତାଧିକାର (ଭୋଟ୍‌ଦାନ) ପାଇଁ କଂଗ୍ରେସ ବଚନବଦ୍ଧ। ଅସ୍ପୃଶ୍ୟତା ଖୁବ୍ ଶୀଘ୍ର ଲୋପ ପାଇବା ସଙ୍ଗେସଙ୍ଗେ ଦଳିତ ଜାତିର ପ୍ରାର୍ଥୀମାନଙ୍କୁ ଅଲଗା ରଖାଯିବ ନାହିଁ ବା ବହିଷ୍କୃତ କରାଯିବ ନାହିଁ। ନିର୍ବାଚନ ଅଧିକାର ଅପେକ୍ଷା ସାମାଜିକ ଓ ଧାର୍ମିକ ଉତ୍ପୀଡ଼ନରୁ ନିଷ୍କୃତି ପାଇବା ସେମାନଙ୍କ ନିମନ୍ତେ ଅଧିକ ଆବଶ୍ୟକ ବୋଲି ଗାନ୍ଧିଜୀଙ୍କର ମତ ଥିଲା। ସେ କହିଥିଲେ ଯେ ହିନ୍ଦୁମାନଙ୍କ ଅନ୍ତରାତ୍ମା ଜାଗ୍ରତ ହୋଇ ଉଠିଛି, ତେଣୁ ଭଗବାନଙ୍କ ଦୟାରୁ ଅସ୍ପୃଶ୍ୟତା ଖୁବ୍ ଶୀଘ୍ର ଅତୀତର କଥା ଭାବରେ ରହିଯିବ।'

ଏ କଥାରୁ ମନେହୁଏ ଯେ ଗାନ୍ଧିଜୀ ଅସ୍ପୃଶ୍ୟତା ଓ ତାର ସମସ୍ତ ପ୍ରକାରର ମନ୍ଦ ଗୁଣର ଶୀଘ୍ର ଲୋପ ପାଇବା ନେଇ ଅତ୍ୟନ୍ତ ଆଶାବାନ ଥିଲେ। ତେବେ ସଂରକ୍ଷଣ ବ୍ୟତିରେକେ ଦଳିତ ସଂପ୍ରଦାୟକୁ କୌଣସି ପ୍ରକାରର ପ୍ରତିନିଧିତ୍ୱ ବି ମିଳିଥାନ୍ତା କି ନାହିଁ ଏହା ମଧ୍ୟ ସନ୍ଦେହର ବିଷୟ।

ଗାନ୍ଧିଜୀଙ୍କର ଏ ପ୍ରକାର ବିଚାରକୁ ଆମ୍ବେଦକର ତୀବ୍ର ବିରୋଧ କରିଥିଲେ। ନିଜର ସ୍ୱଭାବଗତ ସ୍ପଷ୍ଟବାଦୀ ଢଙ୍ଗରେ ସେ କହିଥିଲେ ଯେ ଭାରତୀୟମାନଙ୍କ ହାତରେ ସଙ୍ଗେସଙ୍ଗେ ଶାସନ ଦାୟିତ୍ୱ ଅର୍ପଣ କରାଯିବାପାଇଁ ଦଳିତ ସମ୍ପ୍ରଦାୟ ଚିନ୍ତିତ ନୁହେଁ। ସେମାନେ ଏଇଥିପାଇଁ ଆନ୍ଦୋଳନ ଆରମ୍ଭ କରି ନାହାନ୍ତି। କିନ୍ତୁ ଯଦି ଶାସନ ଦାୟିତ୍ୱ ଅର୍ପଣ କରାଯିବାକୁ ହୁଏ, ତେବେ ସେ ଦାୟିତ୍ୱ କେବଳ ଗୋଟିଏ ଦଳ, ଗୋଟିଏ ସମୂହ କିମ୍ବା ଗୋଟିଏ ଅଳ୍ପ ସଂଖ୍ୟକଙ୍କୁ ଅର୍ପଣ କରାଯିବ ନାହିଁ। ଅପରନ୍ତୁ ସେଥିରେ ଦଳିତ ସମ୍ପ୍ରଦାୟଙ୍କ ସମେତ ସବୁ ସମୂହର ଜନସଂଖ୍ୟା ଅନୁପାତରେ ଭାଗ ରହିବ।'

ଗାନ୍ଧିଜୀ ଉତ୍ତର ଦେଇଥିଲେ ଯେ ଯଦି ଅସ୍ପୃଶ୍ୟଙ୍କର ଜନମତ ସଂଗ୍ରହ କରାଯାଏ ତେବେ ତାଙ୍କୁ ହିଁ ସବୁଠାରୁ ଅଧିକ ମତ ମିଳିବ। ଭାରତର ଗୋଟିଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ସେ ପ୍ରଚାର କରିବେ ଯେ ଅସ୍ପୃଶ୍ୟତା ଦଳିତ ଜାତିମାନଙ୍କର କଳଙ୍କ ନୁହେଁ; ସବର୍ଣ୍ଣମାନଙ୍କର କଳଙ୍କ। ତେଣୁ ପୃଥକ ମତଦାତା ତାଲିକା କିମ୍ବା ସଂରକ୍ଷଣ ବ୍ୟବସ୍ଥା ସେ କଳଙ୍କକୁ ଧୋଇ ଦେଇ ପାରିବ ନାହିଁ।

ଦଳିତମାନେ ବ୍ରିଟିଶ୍ ସୈନ୍ୟବାହିନୀରେ ଚାକିରି କଲେ, ଏ କାରଣରୁ ଯଦି କେତେକ ବ୍ୟକ୍ତି ଦଳିତ ଓ ସେମାନଙ୍କ ନେତାଙ୍କ ପ୍ରତି ଘୃଣାର ଦୃଷ୍ଟିକୋଣ ରଖନ୍ତି, କିମ୍ବା ସେମାନଙ୍କ ଉପରେ ବିଶ୍ୱାସଘାତକତାର ଦୋଷାରୋପ କରନ୍ତି ତେବେ ମୁଁ ସେମାନଙ୍କୁ ମନେ ପକାଇ ଦେବାକୁ ଚାହିଁବି ଯେ ଯେଉଁ ବଙ୍ଗ-ବାହିନୀ ଇଂରେଜମାନଙ୍କପାଇଁ ଉତ୍ତର ଭାରତ ଜୟ କଲେ ଓ ଶିଖ୍ ଶକ୍ତିକୁ ନଷ୍ଟ କଲେ, ସେଥିରେ ମୁଖ୍ୟ ଭାବରେ ବ୍ରାହ୍ମଣ, ରାଜପୁତ ଓ ଅନ୍ୟ ଉଚ୍ଚବର୍ଣ୍ଣର ଲୋକେ ଥିଲେ। ଏହି ଜାତିମାନେ ଦୁଇ ହଜାର ବର୍ଷ ପର୍ଯ୍ୟନ୍ତ ଭାରତର ସାଧାରଣ ଜନତା ଉପରେ ନିଜର ପ୍ରଭୁତ୍ୱ ଜାରି ରଖିଥିଲେ। ତଥାପି ବିଦେଶୀମାନଙ୍କ ଚାକିରି କରିବାରେ ଏମାନଙ୍କୁ ଲଜ୍ଜା ଲାଗିଲା ନାହିଁ, ଏମାନଙ୍କ ମନରେ ଦେଶଭକ୍ତିର ଭାବନା ତିଳେମାତ୍ର ଜାଗ୍ରତ ହେଲା ନାହିଁ। ପେଟପାଇଁ ସେମାନେ ନିଜକୁ ବିକିବାକୁ ପ୍ରସ୍ତୁତ ହୋଇଗଲେ।

ଦଳିତମାନଙ୍କ ଉପରେ ଖୁବ୍ ବେଶୀ ଅତ୍ୟାଚାର ହୋଇଛି। ଦୀର୍ଘ ଦୁଇ ହଜାର ବର୍ଷ ଧରି ସବର୍ଣ୍ଣ ହିନ୍ଦୁମାନେ ଶୁଦ୍ର ଏବଂ ଅନ୍ତ୍ୟଜମାନଙ୍କ ପ୍ରତି ଯେଉଁ ପ୍ରକାରର କ୍ରୁର

ଆଚରଣ କରିଛନ୍ତି, ସେଭଳି କ୍ରୁରତା ମଣିଷ ଜାତି ନିଜ ଜାତିର ସଦସ୍ୟମାନଙ୍କ ପ୍ରତି ବୋଧହୁଏ ଅନ୍ୟ କୌଣସିଠାରେ ଦେଖାଇ ନାହିଁ। ବଙ୍ଗ ବାହିନୀରେ ଭର୍ତ୍ତି ହୋଇଥିବା ଉଚ୍ଚଜାତିଙ୍କ ତୁଳନାରେ ଦଳିତମାନଙ୍କ ଭର୍ତ୍ତି ହେବାର ଔଚିତ୍ୟ ନିଶ୍ଚୟ ବେଶୀ। ଆମ୍ବେଦକରଙ୍କ ଭର୍ତ୍ତି ଅଭିଯାନ ଉପରେ ଯଦି ପ୍ରଶ୍ନ ଉଠେ, ତେବେ ଏତିକି ଯଥେଷ୍ଟ ହେବ ଯେ ଗାନ୍ଧିଜୀ ମଧ୍ୟ ପ୍ରଥମ ବିଶ୍ୱଯୁଦ୍ଧ ବେଳକୁ ବ୍ରିଟିଶ ବାହିନୀରେ ଭର୍ତ୍ତି ହେବା ନିମନ୍ତେ ପ୍ରଚାର କରିଥିଲେ। ସେତେବେଳେ ଇଂରେଜମାନଙ୍କ ସଦିଚ୍ଛା ଉପରେ ଗାନ୍ଧିଜୀଙ୍କର ଯଥେଷ୍ଟ ବିଶ୍ୱାସ ଥିଲା। ଏହିଭଳି ସାଭରକର ଓ ହିନ୍ଦୁ ମହାସଭା ମଧ୍ୟ ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ସୈନ୍ୟବାହିନୀରେ ଭର୍ତ୍ତି ହେବାପାଇଁ ଅଭିଯାନ ଚଳାଇଥିଲେ।

ସାମାଜିକ ସମସ୍ୟା ଉପରେ ଏଭଳି ବୈପ୍ଳବିକ ଦୃଷ୍ଟିକୋଣ କାରଣରୁ ବ୍ରିଟିଶ୍ ଶାସନକୁ ସବୁଠୁ ବଡ଼ ଶତ୍ରୁ ବୋଲି ଧରିନେବା ଆମ୍ବେଦକରଙ୍କ ପକ୍ଷରେ ଅସମ୍ଭବ ଥିଲା। ଉଚ୍ଚଜାତିମାନଙ୍କ ଶାସନ, ବ୍ରାହ୍ମଣବାଦର ଦର୍ଶନ ଏବଂ ଜାତିପ୍ରଥା, ଏ ସବୁ ଆମ୍ବେଦକରଙ୍କପାଇଁ ବଡ଼ ସଇତାନ ଥିଲା।

ତେଣୁ ଜାତି ପ୍ରଣାଳୀ ବିଷୟରେ ଗାନ୍ଧିଜୀ ଓ ଆମ୍ବେଦକରଙ୍କ ମଧ୍ୟରେ କୌଣସି ଗୋଟିଏ ମିଳନ ବିନ୍ଦୁ ନଥିଲା। ୧୯୨୦ ମସିହାରେ ୟଙ୍ଗ ଇଣ୍ଡିଆରେ ଗାନ୍ଧିଜୀ ଦୁଇଟି ପ୍ରବନ୍ଧ ଲେଖିଥିଲେ। ତହିଁରେ ସେ ନିଜର ଦୃଷ୍ଟିକୋଣ ଓ ବିଚାର ଅତ୍ୟନ୍ତ ସ୍ପଷ୍ଟ ଭାବରେ ଲେଖିଥିଲେ। ସେ ଲେଖାଗୁଡ଼ିକୁ ଆମେ ତାଙ୍କ ବିଚାରର ମାଇଲଖୁଣ୍ଟ ବୋଲି ମାନି ନେଇପାରୁ। ଏହି ପ୍ରବନ୍ଧମାନଙ୍କରୁ ଗାନ୍ଧିଜୀଙ୍କର ବିଚାର ଆମ୍ବେଦକରଙ୍କଠାରୁ କେତେ ଭିନ୍ନ ତାହା ସ୍ପଷ୍ଟ ଜାଣି ହେଉଥିଲା। ପରବର୍ତ୍ତୀ ସତେଇଶ ବର୍ଷରେ ଗାନ୍ଧିଜୀଙ୍କ ଦୃଷ୍ଟିକୋଣରେ ଯେଉଁ ପରିବର୍ତ୍ତନ ଘଟିଲା, ତା କେତେ ବେଶି ମହତ୍ତ୍ୱପୂର୍ଣ୍ଣ, ତା ମଧ୍ୟ ଆମେ ଜାଣିବାପାରିବା।

'ଅସହମତି'ପାଇଁ ତାଙ୍କର ପତ୍ରିକା ଖୋଲା ରହିବ ବୋଲି ଘୋଷଣା କରି ଗାନ୍ଧିଜୀ ସ୍ପଷ୍ଟ ପ୍ରକାଶ କରିଥିଲେ ଯେ ତିକ୍ତତାକୁ ତର୍କବାଦ ବୋଲି କୁହାଯିବ ନାହିଁ। ତାଙ୍କୁ ଚିଠି ଲେଖିଥିବା ବ୍ୟକ୍ତିଙ୍କ ଯୁକ୍ତିଗୁଡ଼ିକର ସାରାଂଶ ଥିଲା ଯେ, ଜାତି ପ୍ରଥା ତିଷ୍ଠି ରହିବାଦ୍ୱାରା ଭାରତର ସର୍ବନାଶ ହୋଇଯିବ। ଜାତିପ୍ରଥା ହିଁ ଭାରତର ଦାସତ୍ୱର କାରଣ (ଆମ୍ବେଦକରଙ୍କ ମଧ୍ୟ ଏଇ ପ୍ରକାର ବିଚାର ଥିଲା। ସେତେବେଳେ ସେ ବିଦେଶରେ ଅଧ୍ୟୟନ କରୁଥିଲେ।) ଗାନ୍ଧିଜୀ କହିଥିଲେ, "ମୋ ମତରେ ଆମର ବର୍ତ୍ତମାନର ଦୁର୍ଦ୍ଦଶାର କାରଣ ଜାତିପ୍ରଥା ନୁହେଁ,... ଜାତିପ୍ରଥା ହିନ୍ଦୁ ଧର୍ମକୁ ନଷ୍ଟ ହେବାରୁ ରକ୍ଷା କରିବ ବୋଲି ମଧ୍ୟ ମୋର ବିଶ୍ୱାସ।"

ହିନ୍ଦୁ ସମାଜର ଚତୁର୍ବର୍ଣ୍ଣ ବ୍ୟବସ୍ଥାକୁ ଗାନ୍ଧିଜୀ ମୌଳିକ, ସ୍ୱାଭାବିକ ଓ ଅନିବାର୍ଯ୍ୟ ବୋଲି କହି ସମର୍ଥନ କରିଥିଲେ। ସେ ଚାହୁଁଥିଲେ ଯେ ବର୍ତ୍ତମାନ ଥିବା ଅସଂଖ୍ୟ ଜାତି ଏ ଚତୁର୍ବର୍ଣ୍ଣରେ ମିଶି ଯାଆନ୍ତୁ। ଏହା ପରେ ଗାନ୍ଧିଜୀ ହିନ୍ଦୁମାନଙ୍କ ସୁପ୍ରଚଳିତ ଯୁକ୍ତିର ଅବତାରଣ କରି କହିଥିଲେ, "ଯେଉଁ ହିନ୍ଦୁଧର୍ମ ଜାତିର ସିଦ୍ଧାନ୍ତକୁ ରକ୍ଷା କରିଛି, ସେହି ହିନ୍ଦୁଧର୍ମ ହିଁ କେବଳ ମଣିଷଙ୍କ ମଧ୍ୟରେ ନୁହେଁ, ସବୁ ପ୍ରାଣୀଙ୍କ ମଧ୍ୟରେ ଭାତୃତ୍ୱର ଭାବନାର ବିକାଶ କରିଛି।

ଜାତିପ୍ରଥାର କେନ୍ଦ୍ରସ୍ଥଳର ଉଲ୍ଲେଖ କରି ସେ କହିଥିଲେ, 'ଆନୁବଂଶିକତାର ନିମୟ ହେଉଛି ଏକ ଶାଶ୍ୱତ ନିୟମ। ତାକୁ ବଦଳାଇବାକୁ ଚେଷ୍ଟା କରାଗଲେ, ସମାଜରେ ଅରାଜକତା ବ୍ୟାପିଯିବ।' - ଏ ବିଷୟ ସିଧାସଳଖ ଭଗବତ୍ ଗୀତାରୁ ନିଆଯାଇଛି। ବର୍ଣ୍ଣଶଙ୍କର ବିଷୟରେ ଅର୍ଜୁନ ଏଭଳି ଆଶଙ୍କା ପ୍ରକାଶ କରିଥିଲେ।

ଗାନ୍ଧିଜୀ କହୁଥିଲେ ଯେ ଦଣ୍ଡ, ପୁରସ୍କାର, ଅବନତି, ଉନ୍ନତି ଆଦିର ସମାଧାନ କରିବାପାଇଁ ମଣିଷ ତିଆରି କରିଥିବା ଅଦାଲତ (କୋର୍ଟ) ଅସମର୍ଥ ହେବ। ହିନ୍ଦୁମାନେ ଯଦି ଆତ୍ମାର ଅନଶ୍ୱରତା ଓ ପୁନର୍ଜନ୍ମରେ ବିଶ୍ୱାସ କରୁଥାନ୍ତି, ତେବେ ସେମାନଙ୍କୁ ମାନିବାକୁ ହେବ ଯେ ପ୍ରକୃତି ନିର୍ଭୁଲ ଭାବରେ ଭାରସାମ୍ୟ ରକ୍ଷା କରିବ। ତେଣୁ ଏ ଜନ୍ମରେ ଭଲ କାମ କରୁଥିବା ଶୁଦ୍ରମାନଙ୍କୁ ପରଜନ୍ମରେ ବ୍ରାହ୍ମଣର ପ୍ରତିଷ୍ଠା ଦେବ ଏବଂ ଏ ଜନ୍ମର ସିଦ୍ଧାନ୍ତ ପ୍ରତ୍ୟେକ ବ୍ୟକ୍ତିର ଜମା ଖର୍ଚ୍ଚର ହିସାବକୁ ଠିକ୍ ରଖିବେ। ଯେ ପର୍ଯ୍ୟନ୍ତ ଜଣେ ମନୁଷ୍ୟ ଜନ୍ମ-ମରଣର ଶୃଙ୍ଖଳାରୁ ନିଜକୁ ମୁକ୍ତ କରି ପାରିନାହିଁ ଓ ମୋକ୍ଷ ପାଇ ପାରିନାହିଁ, ସେ ପର୍ଯ୍ୟନ୍ତ ତାର ଏ ହିସାବ ଖାତା ଚାଲିଥିବ।

ଗଣତନ୍ତ୍ର ନିମିତ୍ତ ଏକତ୍ର ଭୋଜନ ବା ଅଜାତି-ବିବାହକୁ ଯେଉଁମାନେ ଆବଶ୍ୟକ ବୋଲି ବିଚାରୁଥିଲେ ସେମାନଙ୍କ ସହିତ ଗାନ୍ଧିଜୀଙ୍କର ମତ ପାଥକ୍ୟ ରହିଥିଲା। ଜାତି ଭିତରେ ଭୋଜନ ଓ ବିବାହର ପ୍ରଚଳିତ ପ୍ରଥାକୁ ସେ ସଂଯମ ଓ ଅନୁଶାସନପାଇଁ ଆବଶ୍ୟକ ବୋଲି କହି ସମର୍ଥନ କରୁଥିଲେ। ସେ କହିଥିଲେ ଯେ କେତେଗୁଡ଼ିଏ ଅନୁଶାସନାତ୍ମକ ବନ୍ଧନ ରହିବା କୌଣସି ଖରାପ ବୋଲି କୁହାଯାଇପାରିବ ନାହିଁ। ବର୍ଣ୍ଣ ବ୍ୟବସ୍ଥାକୁ ଦୃଢ଼ ଭାବରେ ସମର୍ଥନ କରିବା ପରେ ସେ ଅସ୍ପୃଶ୍ୟତାକୁ ଘୃଣିତ ପାପ ବୋଲି କହି ନିନ୍ଦା କରିଥିଲେ ଓ ତାକୁ ସମାପ୍ତ କରିବାପାଇଁ ନିଜର ପ୍ରତିଜ୍ଞା ବ୍ୟକ୍ତ କରିଥିଲେ। ଏହା ସତ୍ତ୍ୱେ ସେ ଯୋର ଦେଇ କହୁଥିଲେ ଯେ ଯଦି କୌଣସି ଶାସ୍ତ୍ର ଯୁକ୍ତି ଓ ଅନ୍ତରାତ୍ମାର ଆଦେଶ ବିରୁଦ୍ଧରେ ହୋଇଥାଏ ତାହାକୁ ସେ ସ୍ୱୀକାର କରିବେ ନାହିଁ। ଏହି ସମୟରେ ଗାନ୍ଧିଜୀ ବିଚାରୁ ଥିଲେ ଯେ ଜାତିପ୍ରଥା ସମର୍ଥନରେ ଏବଂ ଅସ୍ପୃଶ୍ୟତା ବିରୁଦ୍ଧରେ ଅକାଟ୍ୟ ଯୁକ୍ତି ରହିଛି।

ଉକ୍ତ ପ୍ରବନ୍ଧ ଲେଖିବାର ସତର ଦିନ ପରେ ଗାନ୍ଧିଜୀ ପୁନର୍ବାର ଏ ପ୍ରସଙ୍ଗ ଉତ୍‌ଥାପନ କରିଥିଲେ। ୨୯ ଡିସେମ୍ବର ୧୯୨୦ରେ ସେ ଜାତିପ୍ରଥାରେ ନିହିତ ସୌନ୍ଦର୍ଯ୍ୟର ଗୁଣଗାନ କରିଥିଲେ। ରକ୍ତ ଓ ଆନୁବଂଶିକତାର ସିଦ୍ଧାନ୍ତ, ଯାହା ଉପରେ ଜାତିପ୍ରଥା ତିଷ୍ଠି ରହିଛି; ତାକୁ ସେ ପୁନର୍ବାର ସମର୍ଥନ କରିଥିଲେ। ତାଙ୍କ ଦୃଷ୍ଟିରେ ଭୋଜନ, ପାଣି ଓ ବିବାହ ବିଷୟଗୁଡ଼ିକର କୌଣସି ସାମାଜିକ ମହତ୍ତ୍ୱ ନଥିଲା। ସେ କହିଥିଲେ, ‘ଏ ସବୁ ନିୟମ ଇନ୍ଦ୍ରିୟଗୁଡ଼ିକୁ ନିଜ ଅଧିନରେ ରଖିବାପାଇଁ, ଇଚ୍ଛାଶକ୍ତିପାଇଁ ସାଧନା କରିବାପାଇଁ ଓ କେତେକ ସାମାଜିକ ମୂଲ୍ୟର ସୁରକ୍ଷାପାଇଁ ଆବଶ୍ୟକ ଅଟେ। ‘

ନିଜର ଏପ୍ରକାର ବିଚାର ଉପରେ ଗାନ୍ଧିଜୀ ଅନେକ ଦିନ ଧରି ଦୃଢ ରହିଥିଲେ। ଆମ୍ବେଦକରଙ୍କ ଭାଷଣ ‘ଜାତି ପ୍ରଥାରୁ ମୂଳୋତ୍ପାଟନ’ ଉପରେ ସମାଲୋଚନା କରି ଗାନ୍ଧିଜୀ ୧୯୩୬ରେ କହିଥିଲେ ଯେ ‘ଶାସ୍ତ୍ରଗୁଡ଼ିକର ଯେଉଁ ସବୁ ବିଷୟ ମୋ ବିଚାର ସହ ମିଶୁନାହିଁ, ସେଗୁଡ଼ିକୁ ମୁଁ ଅପ୍ରାମାଣିକ ଓ ଅସ୍ୱୀକାର୍ଯ୍ୟ ବିଚାରୁଛି। ଶାସ୍ତ୍ରଗୁଡ଼ିକର ଏଭଳି ବିଷୟକୁ ବାହାର କରି ଦେବାକୁ ସେ ଚାହୁଁଥିଲେ। ଶାସ୍ତ୍ରଗୁଡ଼ିକର ଉଚିତ୍ ବ୍ୟାଖ୍ୟା କରାଯିବା ଦରକାର ଏବଂ ସେଗୁଡ଼ିକର ବିଶୁଦ୍ଧ ସଂସ୍କରଣ ବାହାରିବା ଆବଶ୍ୟକ। ଶାସ୍ତ୍ରରେ ଅସ୍ପୃଶ୍ୟତାପାଇଁ ସ୍ୱୀକୃତି ନାହିଁ, ଯଦିବା କୌଣସିଠାରେ ସେଭଳି ଥାଏ, ସେ ଅଂଶଟି ପ୍ରକ୍ଷିପ୍ତ ବୋଲି ସେ ବିଶ୍ୱାସ ପ୍ରକାଶ କରିଥିଲେ। ବର୍ଣ୍ଣ ବ୍ୟବସ୍ଥା ନିୟମଗୁଡ଼ିକର ବ୍ୟାଖ୍ୟା ଗାନ୍ଧୀଜୀ ନିମ୍ନମତେ କରିଥିଲେ।-

“ଆମ୍ଭେମାନେ ନିଜର ପୂର୍ବପୁରୁଷଙ୍କ ପେଶା ଅବଲମ୍ବନ ପୂର୍ବକ ନିଜର ଜୀବିକା ଅର୍ଜନ କରିବାପାଇଁ ଆମକୁ ବର୍ଣ୍ଣ ବ୍ୟବସ୍ଥା ଶିକ୍ଷା ଦେଇଥାଏ। ଜାତି ବ୍ୟବସ୍ଥା ଆମର ଅଧିକାର ନିରୂପଣ କରେ ନାହିଁ, ଅପରନ୍ତୁ ଆମର କର୍ତ୍ତବ୍ୟ ନିର୍ଦ୍ଧାରଣ କରିଥାଏ। ମାନବ ଜାତିର କଲ୍ୟାଣ ନିମିତ୍ତ ଉଦ୍ଦିଷ୍ଟ ଥିବା ଆବଶ୍ୟକୀୟ ପେଶା ସମ୍ପର୍କରେ ହିଁ ଏଥିରେ ଉଲ୍ଲେଖ ରହିଛି। କୌଣସି ପେଶା ବା କାର୍ଯ୍ୟ ଯେ ଉଚ୍ଚ-ନୁହେଁ ବା ନୀଚ ନୁହେଁ - ଏହି ଅଭିପ୍ରାୟ ଏଥିରେ ନିହିତ ରହିଛି। ସବୁ ପ୍ରକାରର ପେଶା ଭଲ, ବିଧି ସମ୍ମତ ଏବଂ ପ୍ରତ୍ୟେକ ସମାନ ସ୍ତରର ଅଟେ। ଆଧ୍ୟାତ୍ମିକ ଶିକ୍ଷକ ବ୍ରାହ୍ମଣର କାର୍ଯ୍ୟ, ମେହେନ୍ତରର କାର୍ଯ୍ୟ ସହ ସମାନ। ଏ ସବୁ ପେଶାରେ କାର୍ଯ୍ୟ କରୁଥିବା ସମସ୍ତ ମଣିଷଙ୍କୁ ଇଶ୍ୱରଙ୍କ ଦୃଷ୍ଟିରେ ସମାନ ସମ୍ମାନ ମିଳିଥାଏ। ମଣିଷମାନଙ୍କ ଦୃଷ୍ଟିରେ ମଧ୍ୟ ଏକଦା ଏମାନଙ୍କୁ ସମାନ ଦୃଷ୍ଟିରେ ଦେଖାଯାଉଥିଲା। ଭିନ୍ନଭିନ୍ନ ପେଶାର ବ୍ୟକ୍ତିଙ୍କପାଇଁ ପେଶାଗତ ଅଧିକାର ରହିଛି। ଏହାଠାରୁ ଅନ୍ୟ କିଛି ଅଧିକାର ମିଳିବ ନାହିଁ।”

ସାର୍ବଜନୀକ ଆଲୋଚନା ସମୟରେ ଗାନ୍ଧିଜୀ ନମ୍ରତା ଓ ସୌଜନ୍ୟର ଉତ୍କୃଷ୍ଟ ବ୍ୟବହାର ପ୍ରଦର୍ଶନ କରୁଥିଲେ। ତଥାପି କେବେକେବେ ତାଙ୍କ ଲେଖନୀରୁ ଏଭଳି ଶବ୍ଦ ବାହାରୁଥିଲା, ଯାହାକି ବିରୋଧିମାନଙ୍କୁ ଆଘାତ ଦେଉଥିଲା। ହୁଏତ ଲେଖିଲା ବେଳେ

ଗାନ୍ଧିଜୀ ତାହା ଜାଣିପାରୁ ନଥିଲେ । ଥରେ ସେ କହିଥିଲେ ଯେ ଯାହାହେଉ ନା କାହିଁକି ସୁବାଷ ବୋଷ ଦେଶର ଶତ୍ରୁ ତ ନୁହନ୍ତି । ଏ ମନ୍ତବ୍ୟ ସୁବାଷ ବୋଷଙ୍କୁ ଅତ୍ୟନ୍ତ କଷ୍ଟ ଦେଇଥିଲା । ସେପରି ଭାବରେ ଗାନ୍ଧିଜୀ ଆମ୍ବେଦକରଙ୍କ ବିଷୟରେ ମଧ୍ୟ କେତେକ ମନ୍ତବ୍ୟ ପ୍ରକାଶ କରିଥିଲେ ଯାହା ଆମ୍ବେଦକରଙ୍କୁ ଗଭୀର ଦୁଃଖ ଦେଇଥିଲା ।

ମହାତ୍ମାଗାନ୍ଧୀଙ୍କ ଯୁକ୍ତିକୁ ଖଣ୍ଡନ କରି ଆମ୍ବେଦକର କହିଥିଲେ ଯେ ମୁଁ ଯେତେଦୂର ଅଧ୍ୟୟନ କରିଛି, ମୁଁ ଜାଣିଛି ଯେ ସନ୍ଥମାନେ କେବେ ହେଲେ ଜାତିପ୍ରଥା ବା ଅସ୍ପୃଶ୍ୟତା ବିରୁଦ୍ଧରେ ଅଭିଯାନ ଚଳାଇ ନାହାନ୍ତି । ଏ ଦୁନିଆରେ କଣ ଘଟୁଛି, ବିଭିନ୍ନ ସମ୍ପ୍ରଦାୟର ସ୍ଥିତି କଣ ବା ସେମାନଙ୍କ ମଧ୍ୟରେ ପାର୍ଥୀବ ସଂଘର୍ଷ କି ପ୍ରକାରର - ଏସବୁ ବିଷୟରେ ସେମାନଙ୍କର ଚିନ୍ତା ନଥିଲା । ମନୁଷ୍ୟ ଓ ପରମାତ୍ମାଙ୍କ ସମ୍ପର୍କ ବିଷୟରେ ହିଁ କେବଳ ସେମାନଙ୍କର ଚିନ୍ତା ଥିଲା । ସବୁ ମନୁଷ୍ୟ ସମାନ ବୋଲି ସନ୍ଥମାନେ କେବେବି କହି ନାହାନ୍ତି । ସେମାନେ କହନ୍ତି ଯେ ଭଗବାନଙ୍କ ଦୃଷ୍ଟିରେ ସବୁ ମଣିଷ ସମାନ । ଏହା ଏକ ନିରାପଦ ବକ୍ତବ୍ୟ । ଏଭଳି ଉପଦେଶ ଦେବା କାହାପାଇଁ ମଧ୍ୟ କଠିଣ ହେବନାହିଁ । ସନ୍ଥମାନେ କେବେ ବି ଜାତିପ୍ରଥା ନଷ୍ଟ କରିବାପାଇଁ କିମ୍ବା ଏ ଦୁନିଆର ଉଚ୍ଚନୀଚ ଭେଦଭାବକୁ ସମାପ୍ତ କରିବାର କଥା କହି ନାହାନ୍ତି । ଯଦିବା କେବେ କେମିତି ସେମାନେ ନିଜେ ଜାତିପ୍ରଥାକୁ ଭାଙ୍ଗିଛନ୍ତି, ସାଧାରଣ ଜନତାକୁ ଜାତିପ୍ରଥା ଭାଙ୍ଗିବାକୁ ଉପଦେଶ ଦେଇନାହାନ୍ତି ।

ଏହାପରେ ଆମ୍ବେଦକର ଗାନ୍ଧିଜୀଙ୍କୁ ତାଙ୍କର କଥା ଓ କାର୍ଯ୍ୟର ବିରୋଧାଭାସ ସମ୍ପର୍କରେ ବିଚାର କରିବାକୁ ଆହ୍ୱାନ କରିଥିଲେ । ସେ କହିଥିଲେ ଯେ - ଗାନ୍ଧିଜୀ ନିଜ ବାପ ଅଜାଙ୍କ ପେଶାକୁ ଗ୍ରହଣ କରିବାପାଇଁ ସମସ୍ତଙ୍କୁ ଉପଦେଶ ଦେଉଛନ୍ତି । କିନ୍ତୁ ସେ ନିଜେ ଏ ନିୟମକୁ ପାଳନ କରୁଛନ୍ତି ତ ? ମୁଁ ଯଦି ପଚାରେ ଯେ ମହାତ୍ମାଗାନ୍ଧୀ ନିଜ ଆଦର୍ଶକୁ ବ୍ୟବହାରରେ ପ୍ରୟୋଗ କରିବାକୁ କେତେ ଚେଷ୍ଟା କରିଛନ୍ତି, ତେବେ ମୋତେ ଦୋଷ ଦିଆଯାଇ ନପାରେ ।

ଆମ୍ବେଦକରଙ୍କର ଯୁକ୍ତି ଥିଲା ଯେ ମହାତ୍ମାଗାନ୍ଧୀ ଜନ୍ମତଃ ବେପାରୀ(ବଣିଆ) । ତେଣୁ ତାଙ୍କର ଓ ତାଙ୍କ ବାପ ଅଜାଙ୍କ ପେଶା ହେଉଛି ବ୍ୟବସାୟ । କିନ୍ତୁ ତାଙ୍କ ବାପଅଜା ବ୍ୟବସାୟ ଛାଡ଼ି, ଗଡ଼ଜାତମାନଙ୍କରେ ଦେଓ୍ୱାନ ହୋଇଥିଲେ, ସେ ପେଶାଟି ବ୍ରାହ୍ମଣମାନଙ୍କର । ମହାତ୍ମାଗାନ୍ଧୀ ନିଜେ ମଧ୍ୟ ଓକିଲାତି ପେଶା ଗ୍ରହଣ କରିଥିଲେ । ବାପଅଜାଙ୍କ ପେଶା ଗ୍ରହଣ କରି ସେ କେବେ ତରାଜୁ ଛୁଇଁ ନାହାନ୍ତି । ତାଙ୍କର ସବୁଠାରୁ ସାନ ପୁଅ, ବୈଶ୍ୟ ଭାବରେ ଜନ୍ମ ଗ୍ରହଣ କରିଥିଲା । ମାତ୍ର ସେ ବ୍ରାହ୍ମଣ କନ୍ୟାକୁ ବିବାହ

କଲା ଓ ଶେଷରେ ସାମ୍ବାଦିକତାକୁ ପେଶା ଭାବରେ ଗ୍ରହଣ କଲା । ବାପଅଜାଙ୍କ ପେଶା ଗ୍ରହଣ କରି ନଥିବାରୁ ମହାତ୍ମାଗାନ୍ଧୀ କଣ ତାକୁ ନିନ୍ଦା କରିଥିଲେ ?

ଆମ୍ବେଦକରଙ୍କ ଆଲୋଚନା ଯେ ସମ୍ପୂର୍ଣ୍ଣ ଉଚିତ୍ ଓ ମର୍ମସ୍ପର୍ଶୀ ଏ ବିଷୟରେ କୌଣସି ସନ୍ଦେହ ନାହିଁ । ନିଜ ବାପଅଜାଙ୍କ ଜୀବିକା ଗ୍ରହଣ କରିବାରେ ଏବଂ ଆନ୍ତର୍ଜାତୀୟ ବିବାହ ସମ୍ପର୍କରେ - ଏ ଉଭୟ ପ୍ରଶ୍ନ ଉପରେ ମହାତ୍ମାଗାନ୍ଧୀଙ୍କର ସ୍ଥିତି ଯୁକ୍ତି ସଙ୍ଗତ ନଥିଲା । ଗାନ୍ଧିଜୀଙ୍କର 'ରକ୍ତ ଓ ଆନୁବଂଶିକତା' ଭିତ୍ତିରେ ଚତୁର୍ଥବର୍ଣ୍ଣର ସମର୍ଥନ, ସହ-ଭୋଜନ ଉପରେ କଟକଣା ସପକ୍ଷରେ ଯୁକ୍ତି, ସଂଯମ ଓ ଇଚ୍ଛାଶକ୍ତିର ସାଧାନା ଦୃଷ୍ଟିରୁ ଅଜାତି-ବିବାହ ନିଷେଧର ସମର୍ଥନ, ଏସବୁ ନିଶ୍ଚିତ ଭାବରେ ଭୁଲ ବିଚାର ତର୍କ ଦୃଷ୍ଟିରୁ ବିଶେଷ ବଳିଷ୍ଠ ଜଣାଯାଏ । ଜାତି ଓ ବର୍ଣ୍ଣ ବ୍ୟବହାର ବିରୋଧୀ ଆମ୍ବେଦକର ଓ ସମର୍ଥକ ଗାନ୍ଧିଜୀଙ୍କ ମଧ୍ୟରେ ଚାଲି ଆସି ଥିବା ଏହି ଲମ୍ବା ବିବାଦରେ ବିବେକ ଓ ସତ୍ୟତା ଆମ୍ବେଦକରଙ୍କ ସପକ୍ଷରେ ରହି ଥିଲା । ଆମ୍ବେଦକରଙ୍କର ଦୂରଦୃଷ୍ଟି ଓ ବିବେକ ଶକ୍ତିକୁ ପ୍ରଶଂସା କରି ଏତିକି କହିଲେ ଯଥେଷ୍ଟ ହେବ ଯେ - ନିଜ ଜୀବନର ଶେଷ ବର୍ଷଗୁଡ଼ିକରେ ଗାନ୍ଧିଜୀ ନିଜର ବିଚାର ବଦଳାଇ ଦେଇଥିଲେ । ଏ ପ୍ରସଙ୍ଗଟି ଗାନ୍ଧିଜୀଙ୍କର ନିଜକୁ ପରିବର୍ତ୍ତନ କରି ନେବାର କ୍ଷମତାର ଏକ ସୁନ୍ଦର ଉଦାହରଣ ମଧ୍ୟ । ନିଜ ବିଚାରରେ ସେ ମୌଳିକ ପରିବର୍ତ୍ତନ କରି ଦେଇ ପାରିଥିଲେ । ତାପରେ ସେ କେବଳ ଯେ ଆନ୍ତର୍ଜାତିକ ବିବାହର ଦୃଢ଼ ସମର୍ଥକ ହୋଇ ଯାଇଥିଲେ ତା ନୁହେଁ, ଦଳିତ ଓ ସବର୍ଣ୍ଣଙ୍କ ମଧ୍ୟରେ ବିବାହକୁ ମଧ୍ୟ ପ୍ରବଳ ସମର୍ଥନ କରିଥିଲେ ।

୩୧ ମେ' ୧୯୪୫ରେ ଗାନ୍ଧୀଜୀ 'ବର୍ଣ୍ଣବ୍ୟବସ୍ଥା' ନାମରେ ନିଜର ଏକ ପ୍ରବନ୍ଧ ସଂଗ୍ରହର ଭୂମିକା ଲେଖିଥିଲେ । ସେଥିରେ ସେ ଲେଖିଥିଲେ ଯେ ମଣିଷ ପ୍ରତିଦିନ କିଛି ଆଗେଇଥାଏ କିମ୍ବା ପଛଘୁଞ୍ଚା ଦେଇଥାଏ । ଗୋଟିଏ ସ୍ଥାନରେ ସେ କେବେ ଛିଡ଼ାହୋଇ ପାରେ ନାହିଁ । ସମଗ୍ର ବିଶ୍ୱ ଗତିଶୀଳ - ଏ ନିୟମର କୌଣସି ଅପବାଦ ନାହିଁ । "ମୁଁ ଯଦି କହେ ଯେ ମୁଁ ଆଜି ଯାହା ଅଛି ଗତକାଲି ତାହାହିଁ ଥିଲି ଓ ଭବିଷ୍ୟତରେ ମଧ୍ୟ ତାହାହିଁ ରହିବି; ତେବେ ତା ଏକ ଭୁଲ ମନ୍ତବ୍ୟ ହେବ । ବସ୍ତୁତଃ ଏଭଳି ଇଚ୍ଛା ମଧ୍ୟ ମୋ ମନରେ ହେବା ଉଚିତ୍ ନୁହେଁ ।" ଏ ପ୍ରକାରେ ପ୍ରସ୍ତାବନା ଲେଖିବା ପରେ ସେ ଆହୁରି ମଧ୍ୟ ଲେଖିଥିଲେ ଯେ "ସତ୍ୟ ଓ ଅହିଂସା ସମ୍ପର୍କରେ ମୋର କଳ୍ପନା ଦିନକୁଦିନ ସ୍ପଷ୍ଟତର ହୋଇଯାଉଛି । ତଥାପି ବର୍ଣ୍ଣାଶ୍ରମ ବ୍ୟବସ୍ଥା ସମ୍ପର୍କରେ ମୋ ବିଚାର ପୂର୍ବରୁ ଯାହା ଥିଲା ଆଜି ମଧ୍ୟ ତାହା ହିଁ ଅଛି ବୋଲି କହିବା ଠିକ୍ ହେବ ନାହିଁ ।"

୧୯୪୬, ଜୁଲାଇ ୨୦ରେ 'ହରିଜନ ସେବକ ସଂଘ'ର ଜଣେ କାର୍ଯ୍ୟକର୍ତ୍ତାଙ୍କ ପ୍ରଶ୍ନର ଉତ୍ତର ଦେଇ ସେ କହିଥିଲେ, ମୋ ମନ ଯେ ଅବିରତ ବିକଶିତ ହେଉଛି, ଆଗକୁ

ଯାଉଛି ଏଇଭଳି ମୋର ମନେ ହୁଏ । ସମସ୍ତେ ଯେ ମୋ ସହିତ ପାଦ ମିଳାଇ ଚାଲି ପାରିବେ, ଏହା ହୁଏତ ସମ୍ଭବ ନୁହେଁ ।' ଉକ୍ତ କାର୍ଯ୍ୟକର୍ତ୍ତାଙ୍କୁ ଗାନ୍ଧିଜୀ କହିଥିଲେ, "ଯଦି ତୁମର କେହି ଅବିବାହିତା କନ୍ୟା ଥାଆନ୍ତି, ତେବେ ନିର୍ମଳ ସାତ୍ତ୍ୱିକ ଓ ଧାର୍ମିକ ଭାବନାରେ ଯଦି କନ୍ୟାଟିର ବିବାହ କୌଣସି ଦଳିତ ବ୍ୟକ୍ତି ସହିତ କରନ୍ତି, ତେବେ ମୁଁ ଅତ୍ୟନ୍ତ ଆନନ୍ଦିତ ହେବି ଓ ତାଙ୍କୁ ଅଭିନନ୍ଦନ ଜଣାଇବି ।"

୧୯୪୫ ମାର୍ଚ୍ଚ ୯ ତାରିଖରେ ଜଣେ ସାମାଜିକ କାର୍ଯ୍ୟକର୍ତ୍ତାଙ୍କୁ ଗାନ୍ଧିଜୀ ଲେଖିଥିଲେ, "ଏ ବିବାହ ଯଦି ଏକାଜାତିରେ ହେଉଥାଏ ତେବେ ମୋର ଆଶୀର୍ବାଦ ମାଗିବ ନାହିଁ । କନ୍ୟାଟି ଯଦି ଭିନ୍ନ ଜାତିର ହୋଇଥାଏ ତେବେ ଯାଇ ମୁଁ ଆଶୀର୍ବାଦ ଦେବି ।"

୧୯୪୫ ମେ ୬ ତାରିଖରେ ଗାନ୍ଧିଜୀ ନିଜର ଅନ୍ୟତମ ସହକର୍ମୀ ନରହରି ପାରିଖଙ୍କୁ ଲେଖିଥିଲେ ଯେ ସବର୍ଣ୍ଣ ଓ ଅତିଶୂଦ୍ରଙ୍କ ମଧ୍ୟରେ ବିବାହ ସମ୍ପର୍କକୁ ବିନା ଦ୍ୱିଧାରେ ପ୍ରଥମ ସ୍ଥାନ ଦେବା ଉଚିତ୍ । ତାପରେ ସେ ପୁଣି ଲେଖିଥିଲେ ଯେ, "ଯେଉଁଠାରେ ବାପା ମା ବିଚାରବନ୍ତ, ସେଠାରେ ଭିନ୍ନଧର୍ମୀ ମଧ୍ୟରେ ବିବାହରେ କୌଣସି ଅସୁବିଧା ନହେବା ଉଚିତ୍ । ଆମେ କଣ ସବୁ ଧର୍ମଗୁଡ଼ିକୁ ସମାନ ଦୃଷ୍ଟିରେ ଦେଖୁନାହୁଁ ? ଆମେ ଆମର ପ୍ରାର୍ଥନାରେ ଭିନ୍ନ ଧର୍ମଗୁଡ଼ିକୁ ଯେଉଁ ସ୍ଥାନ ଦେଇଛୁ, ତାର ମଧ୍ୟ ଆବଶ୍ୟକତା ରହିଛି ୮ ପିଲାମାନେ ଯେକୌଣସି ଧର୍ମକୁ ବାଛି ପାରନ୍ତି । ଆମ ବିଚାରର ସ୍ୱାମୀ ଓ ସ୍ତ୍ରୀ ନିଜ ସନ୍ତାନଙ୍କୁ ଏ ସମ୍ପର୍କରେ ଉଦାର ଶିକ୍ଷା ଦେବେ । 'କନ୍ୟାମାନଙ୍କୁ ପତ୍ର'ରେ ମୁଁ ଏ ବିଚାର ସ୍ପଷ୍ଟ ଭାବରେ ଉପସ୍ଥାପିତ କରିଛି ।"

ଏପରି ଭାବରେ ଜାତିପ୍ରଥାର ଉତ୍ପାଟନ ପ୍ରସଙ୍ଗରେ ମହାତ୍ମାଗାନ୍ଧୀଙ୍କ ବିଚାରରେ ପରିବର୍ତ୍ତନ ଆଣିବାରେ ଆମ୍ବେଦକର ସଫଳ ହୋଇଥିଲେ । ଏ କଥା ଭିନ୍ନ ଯେ ନିଜ ମତ ପରିବର୍ତ୍ତନପାଇଁ ଗାନ୍ଧିଜୀ ଆମ୍ବେଦକରଙ୍କୁ ଗୁରୁତ୍ୱ ଦେଇ ନାହାନ୍ତି । ଏହି ପ୍ରଶ୍ନ ହୁଏତ ଗାନ୍ଧିଜୀଙ୍କପାଇଁ ପ୍ରାସଙ୍ଗିକ ନଥିଲା । କିନ୍ତୁ ପରବର୍ତ୍ତୀ କାଳରେ ଯେତେବେଳେ ଆମେ ଗାନ୍ଧୀ ଏବଂ ଆମ୍ବେଦକରଙ୍କ ସଂପର୍କ ଓ ସଂଘର୍ଷ ବିଷୟରେ ଚିନ୍ତା କରୁଛୁ ଏହା ଆମପାଇଁ ଏକ ମହତ୍ତ୍ୱପୂର୍ଣ୍ଣ କଥା ଭାବେ ବିବେଚିତ ହେଉଛି ।

(ଏହି ପ୍ରବନ୍ଧଟି ବିଶିଷ୍ଟ ସମାଜବାଦୀ ଚିନ୍ତକ ଶ୍ରୀ ମଧୁ ଲିମାୟେଙ୍କ ହିନ୍ଦୀ ପୁସ୍ତକ ଓଡ଼ିଆ ଅନୁବାଦ ଅରୁନ୍ଧତୀ ପାତ୍ରଙ୍କ "ଡକ୍ଟର ଆମ୍ବେଦକର : ଏକ ଚିନ୍ତନ"ର ଏକ ଅଧ୍ୟାୟ ।)

ସୌଜନ୍ୟ : *ବିକଳ୍ପ ବିଚାର*, ଦଳିତ ସମସ୍ୟା, ସପ୍ତମ ସଂଖ୍ୟା, ୧୯୯୪ ।

# ଦୂରଦ୍ରଷ୍ଟା ଡକ୍ଟର ଆମ୍ବେଦକର

ପ୍ରବୋଧକୁମାର ମିଶ୍ର

ଅବହେଳିତ ଜନସଂପ୍ରଦାୟରୁ ଉଦ୍ଭବ ହୋଇ ଅଧ୍ୟବସାୟୀ, ଗଭୀର ଜ୍ଞାନ ଅନ୍ୱେଷୀ, ଅନାହତ ସଂଗ୍ରାମୀ ଡକ୍ଟର ଆମ୍ବେଦକରଙ୍କ ଦୀର୍ଘ ୪୦ ବର୍ଷର ରାଜନୀତିକ ଜୀବନର ଅବସାନ ସ୍ୱାଧୀନ ଭାରତପାଇଁ ଏକ ଅପୂରଣୀୟ କ୍ଷତି ଥିଲା । ସହସ୍ରାଧିକ ବର୍ଷ ତଳେ ରଚିତ 'ମନୁସ୍ମୃତି' ର ବ୍ୟାଖ୍ୟା କରି ଜାତିପ୍ରଥାର ମୂଳ ଉନ୍ମୋଚନ କରିବା ସହିତ ଅସ୍ପୃଶ୍ୟତା ନିବାରଣ ଦିଗରେ ସେ ଯେଉଁ ସାମ୍ବିଧାନିକ ବ୍ୟବସ୍ଥା କରିଗଲେ ତାହାର ପଟାନ୍ତର ନାହିଁ । ତାଙ୍କ ଜ୍ଞାନ ବିଶ୍ୱ ବିଦ୍ୟାଳୟର ଶୀର୍ଷତମ ଡିଗ୍ରୀରେ ସୀମାବଦ୍ଧ ନ ଥିଲା । ସେ ବହୁ ଶାସ୍ତ୍ର ଓ ସାହିତ୍ୟ ଅଧ୍ୟୟନ କରି ସେ ସବୁର ଉତ୍କର୍ଷତା ନିଜ ହୃଦୟରେ ସଞ୍ଚୟ କରି ରଖିଥିଲେ । ସାମାଜିକ ବିପ୍ଳବ ସୃଷ୍ଟି କରିବାରେ ତାଙ୍କ ପରି ଯୋଗ୍ୟ ବ୍ୟକ୍ତି ସେତେବେଳେ ଅନ୍ୟ କେହି ନଥିଲେ । ତାଙ୍କଦ୍ୱାରା ରଚିତ ଗ୍ରନ୍ଥମାନଙ୍କରୁ ସେହି ଅମାପ ଜ୍ଞାନର ପ୍ରମାଣ ମିଳେ । ୧୯୪୪ ରେ ବେଭର୍ଲି ନିକୋଲସ ତାଙ୍କୁ ଭାରତର ଶ୍ରେଷ୍ଠ ଜ୍ଞାନୀ ଓ ଦୂରଦ୍ରଷ୍ଟା ବୋଲି ଅଭିହିତ କରିଥିଲେ । ସେ କାହାରି ସ୍ତାବକ ନ ଥିଲେ କି ନିନ୍ଦୁକ ନ ଥିଲେ । ସତ୍ୟନିଷ୍ଠ ବ୍ୟକ୍ତି ଭାବରେ ସେ ଖ୍ୟାତିଲାଭ କରିଥିଲେ । ରାଜନୀତିକ ଆବିଳତା ଭିତରେ ସେ ଥିଲେ ପଦ୍ମପତ୍ର ଉପରେ ଏକ ଚଳମାନ ଜଳବିନ୍ଦୁ । ତିଲକ, ରାଣାଡ଼େ, ଭଣ୍ଡାରକର ଓ ତେଲାଙ୍ଗଙ୍କ ପରି ସେ ମହାରାଷ୍ଟ୍ରର ଏକ ଅନାବିଳ ପବିତ୍ର ବ୍ୟକ୍ତିତ୍ୱ ଥିଲେ ।

ଭାରତୀୟ ସମାଜ ଓ ରାଜନୀତିରେ ଡକ୍ଟର ଆମ୍ବେଦକର ଥିଲେ ଏକ ଧ୍ରୁବତାରା । ଗଭୀର ଅନ୍ତର୍ଦୃଷ୍ଟି ଓ ଦୂରଦୃଷ୍ଟିରୁ ସେ ମହାତ୍ମାଗାନ୍ଧି, ପଣ୍ଡିତ ନେହେରୁ ଓ ଅନ୍ୟ ନେତାମାନଙ୍କଠାରୁ ଊଣା ନ ଥିଲେ । ସଂସଦରେ ଭାରତର ବୈଦେଶିକ ନୀତି ଆଲୋଚନା ପରିପ୍ରେକ୍ଷୀରେ ସେ ଦିନେ ଚୀନ ଭାରତ ଆକ୍ରମଣ କରିବା ସମ୍ଭାବନାକୁ ଘୋଷଣା କରିଥିଲେ । ଦିନେ ନା ଦିନେ ଭାରତ ବିଭାଜନଦ୍ୱାରା ପାକିସ୍ଥାନ ସୃଷ୍ଟି ହେବା ବିଷୟରେ ସେ ନିଃସନ୍ଦେହ ଥିଲେ । ସେତେବେଳେ ଯେଉଁ ଅମୂଲ୍ୟ ଜନଜୀବନ ନଷ୍ଟ ହେବ ତାହାର ପ୍ରତିକାରପାଇଁ ସତର୍କ ରହିବାକୁ ପରାମର୍ଶ ଦେଇଥିଲେ । ଭାରତର ସାମାଜିକ ସ୍ଥିତିର ଦୃଢ଼ତାପାଇଁ ସମ୍ବିଧାନରେ ଥିବା ପ୍ରତିକାର ବ୍ୟବସ୍ଥା ଯେପରି ସ୍ୱୀକୃତ ଓ ଗୃହୀତ ହୁଏ ସେ ଦିଗରେ ସତର୍କ ରହିବାକୁ କହିଥିଲେ । ସେ ଥିଲେ ଜଣେ ଦୂରଦ୍ରଷ୍ଟା ରାଜନୀତିଜ୍ଞ ।

ଭାବପ୍ରବଣତାରେ ଅନ୍ଧ ହୋଇ ସେ କିଛି କହୁ ନ ଥିଲେ । ତାଙ୍କର ଅନୁଶୀଳନାତ୍ମକ ରଚନା, ଭାଷଣ ଓ ଉଦ୍‌ବୋଧନମାନ ବାସ୍ତବତା ଉପରେ ଆଧାରିତ ଥିଲା ।

ଯେଉଁ ଦଳିତ ସଂପ୍ରଦାୟ ବହୁ ଶତାବ୍ଦୀ ଧରି ମୂକ, ବଧିର ଓ ଅନ୍ଧ ଥିଲା ତାକୁ ଡକ୍ଟର ଆମ୍ବେଦକର ଶିକ୍ଷା ଓ ପ୍ରେରଣାଦ୍ୱାରା ଆତ୍ମବିଶ୍ୱାସର ଅମୋଘ ଶକ୍ତି ଦେଇପାରିଥିଲେ । ଭାରତର ଛ' କୋଟି ଅବହେଳିତ ଜନତାକୁ ସେ କରିଥିଲେ ପ୍ରାଣବନ୍ତ ଓ ଜାଗ୍ରତ । ସମ୍ରାଟ୍ ଅଶୋକଙ୍କ ପରେ ସେ ବୌଦ୍ଧଧର୍ମର ପ୍ରସାର କାର୍ଯ୍ୟକୁ ତ୍ୱରାନ୍ୱିତ କରିବାରେ ସମର୍ଥ ହୋଇଥିଲେ । ତାଙ୍କୁ ସେଥିପାଇଁ କେତେକ ମୋଜେଶ୍ ଓ ଆବ୍ରାହମ ଲିଙ୍କନଙ୍କ ସହ ତୁଳନା କରିଥାନ୍ତି । ଅସାଧାରଣ ବକ୍ତା ଭାବରେ ସେ ଶ୍ରୋତାମାନଙ୍କୁ ମନ୍ତ୍ରମୁଗ୍ଧ କରିପାରୁଥିଲେ । ସରଳ ଭାଷା, ଅକାଟ୍ୟ ଯୁକ୍ତି ଏବଂ ହୃଦୟସ୍ପର୍ଶୀ ଉଦାହରଣଦ୍ୱାରା ସେ ଜନତା ଓ ସାଂସଦମାନଙ୍କୁ ହତବାକ୍ କରୁଥିଲେ । ଅନେକ ଗୁଣରେ ସେ ମହୀୟାନ୍ ଥିବାରୁ ସମସ୍ତଙ୍କର ପ୍ରିୟଭାଜନ ଥିଲେ । ସେ ଜଣେ ଭଲ ସଂଗଠକ ଓ ସାମ୍ବାଦିକ ମଧ୍ୟ ଥିଲେ । ସମ୍ବାଦପତ୍ର ମାଧ୍ୟମରେ ସଚେତନତା ସୃଷ୍ଟି କରିବା ତାଙ୍କର ଲକ୍ଷ୍ୟ ଥିଲା । ସେ ଦଳିତମାନଙ୍କୁ ଯେପରି ସଂଗଠିତ କରିପାରିଲେ ତାହା ସମସ୍ତଙ୍କୁ ଚକିତ କରିଥିଲା । ମୁସଲମାନ ନେତା ଡକ୍ଟର ସୌକତ ଅଲ୍ଲୀ, ହିନ୍ଦୁ ମହାସଭାରେ ଡକ୍ଟର ମୁଞ୍ଜେ, କଂଗ୍ରେସର ବାବାସାହେବ ଖେର ଓ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଏବଂ ବିପ୍ଳବୀ ସବରକର ଆଦି ତାଙ୍କର ଉଚ୍ଛ୍ୱସିତ ପ୍ରଶଂସା କରିଥିବାର ଦେଖାଯାଏ ।

ଡକ୍ଟର ଆମ୍ବେଦକର ଯେଉଁ ସାମାଜିକ ବିପ୍ଳବର କର୍ଣ୍ଣଧାର ଥିଲେ ତାହା ଦଳିତ ସଂପ୍ରଦାୟ ଭିତରେ ଜାଗରଣ ସୃଷ୍ଟି କଲା । ଫଳରେ, ନିର୍ବାଚନରେ ସେମାନେ ବହୁ ସଂଖ୍ୟାରେ ଅଂଶଗ୍ରହଣ କରିବା ଦେଖାଗଲା । ୧୯୪୬ ନିର୍ବାଚନରେ ସେମାନଙ୍କ ଭିତରୁ ୮୦% ଏବଂ ହିନ୍ଦୁମାନଙ୍କ ଭିତରୁ ମାତ୍ର ୩୦% ଭୋଟ ଦେବା ତଥ୍ୟ ସମ୍ବାଦପତ୍ରରେ ପ୍ରକାଶିତ ହୋଇଥିଲା । ଏହାହିଁ ଥିଲା ଆମ୍ବେଦକରଙ୍କ ପରିଚାଳିତ ଦଳିତ ଆନ୍ଦୋଳନର ଅସାଧାରଣ ସଫଳତା । ଗଣତାନ୍ତ୍ରିକ ଭାରତପାଇଁ ଏହାର ଆବଶ୍ୟକତା ଥିଲା ଅପରିହାର୍ଯ୍ୟ ।

ଡକ୍ଟର ଆମ୍ବେଦକର ଜଣେ ଦେଶପ୍ରେମୀ ଭାରତୀୟ ଥିଲେ । ଧର୍ମବିଶ୍ୱାସଦ୍ୱାରା ତାଙ୍କର ଦେଶପ୍ରେମ ପ୍ରଭାବିତ ହୋଇ ନ ଥିଲା । ସେ ଗଣତନ୍ତ୍ରରେ ଗଭୀର ବିଶ୍ୱାସ କରୁଥିଲେ । ପାର୍ଲାମେଣ୍ଟକୁ ଗଣତନ୍ତ୍ରର ମନ୍ଦିର ବୋଲି ସେ କହୁଥିଲେ । ଶୃଙ୍ଖଳା ଓ ଅନୁଶାସନର ସେ ପୃଷ୍ଠପୋଷକ ଥିଲେ । ପଦପଦବୀ ଓ କ୍ଷମତାଦ୍ୱାରା ସେ ଅନ୍ଧ ହେଉ ନ ଥିଲେ । ସ୍ତାବକତା ତାଙ୍କର ସ୍ୱଭାବ ନ ଥିଲା । କାଶ୍ମୀର ଆକ୍ରମଣ ସମୟରେ ସେନାଚାଳନା କରିବାକୁ ପ୍ରଧାନମନ୍ତ୍ରୀ ନେହେରୁଙ୍କୁ ସେ ପରାମର୍ଶ ଦେଇଥିଲେ । ଏପରିକି ଗୋଆ ମୁକ୍ତିପାଇଁ ମଧ୍ୟ ଦୃଢ଼ କାର୍ଯ୍ୟାନୁଷ୍ଠାନ କରିବାକୁ ତାଙ୍କର ପରାମର୍ଶ ଥିଲା ।

ଡକ୍ଟର ଆମ୍ବେଦକରଙ୍କ ସ୍ୱଭାବ ଧୀର ବା ନମ୍ର ନ ଥିଲା । ଅନ୍ୟାୟ ବିରୋଧରେ, କୁସଂସ୍କାର ବିରୋଧରେ ସେ ଉଗ୍ରରୂପ ପ୍ରକାଶ କରୁଥିଲେ । ଗାନ୍ଧିଜୀଙ୍କ ନୀତି ଓ ଆଦର୍ଶକୁ ସେ ସମୟରେ ତୀବ୍ର ସମାଲୋଚନା  କରୁଥିଲେ ମଧ୍ଧ ତାଙ୍କ ପ୍ରତି ଗଭୀର ମମତା ଓ ସମ୍ମାନବୋଧ ତାଙ୍କର ରହିଥିଲା । ସେ ବିସ୍ଫୋରକ ସ୍ୱଭାବର ହେଲେ ମଧ୍ଧ ଅତି ଶୀଘ୍ର ଶାନ୍ତ ଓ ସହାନୁଭୂତିଶୀଳ ହୋଇ ପାରୁଥିଲେ । ମନଖୋଲା ହସ ତାଙ୍କୁ ବିଶେଷ ଆନନ୍ଦ ଦେଉଥିଲା । ଥଟ୍ଟା, ପରିହାସ ଓ ମଜା କରିବା ତାଙ୍କ ଦୁଃଖ ଓ ବିଷାଦଭରା ପାରିବାରିକ ଜୀବନର ଅନ୍ୟ ଏକ ସ୍ୱରୂପ ଥିଲା ।

ଜୀବନର ଅନ୍ତିମ ଲଗ୍ନରେ ସେ ବୌଦ୍ଧଧର୍ମ ଗ୍ରହଣ କରିଥିଲେ, କାରଣ ତହିଁରେ ସମତା, ସ୍ୱାଧୀନତା ଓ ଭ୍ରାତୃତ୍ୱଭାବ ଥିବାରୁ ମାନସିକ ଶାନ୍ତି ଓ ଚିରନ୍ତନ ସୁଖର ସନ୍ଧାନ ସେଥିରୁ ତାଙ୍କୁ ମିଳୁଥିଲା । ଗଣତାନ୍ତ୍ରିକ ରାଜନୀତି ସହିତ ଗଣତାନ୍ତ୍ରିକ ସମାଜ ଗଠନରେ ବୌଦ୍ଧଧର୍ମ ତାଙ୍କୁ ପ୍ରେରଣା ଯୋଗାଇଥିଲା । ସେ ଯେଉଁ ସମ୍ବିଧାନ ପ୍ରସ୍ତୁତ କଲେ ତାହା ହେଉଛି ଗଣତନ୍ତ୍ରର ପ୍ରତୀକ ଏବଂ ଦେଶବାସୀଙ୍କୁ ତାହାହିଁ ତାହାହିଁ ତାଙ୍କର ଶ୍ରେଷ୍ଠତମ ଅବଦାନ ।

**ସୌଜନ୍ୟ:** ପ୍ରଫେସର ପ୍ରବୋଧ କୁମାର ମିଶ୍ର, *ଡକ୍ଟର ବାବାସାହେବ ଭୀମରାଓ ଆମ୍ବେଦକର,* ୨୦୧୧, କଟକ: ବିଦ୍ୟାପୁରୀ ।

# ଭାରତୀୟ ରାଜନୀତିରେ ଡକ୍ଟର ଆମ୍ବେଦକରଙ୍କ ଭୂମିକା

ଅତୁଲଚନ୍ଦ୍ର ପ୍ରଧାନ

ଗାନ୍ଧୀ ଯୁଗର ଭାରତୀୟ ରାଜନୀତିରେ ତିନିଜଣ ମୁଖ୍ୟ ପ୍ରତିନିଧିତ୍ୱ କରୁଥିବା ବ୍ୟକ୍ତି ହେଲେ ମହାତ୍ମା ଗାନ୍ଧୀ, ମହମ୍ମଦ ଅଲ୍ଲି ଜିନ୍ନା ଏବଂ ଡଃ ଭୀମରାଓ ରାମଜୀ ଆମ୍ବେଦକର । ଗାନ୍ଧୀ ଥିଲେ କଂଗ୍ରେସର ତୁଙ୍ଗ ନେତା, ଜିନ୍ନା ଥିଲେ ବିଚ୍ଛିନ୍ନତାବାଦୀ ମୁସଲମାନ ଗୋଷ୍ଠୀର ନେତା ଏବଂ ଆମ୍ବେଦକର ଥିଲେ ଦଳିତ ଜାତିର ମୁଖ୍ୟ ମୁଖପାତ୍ର । ଗାନ୍ଧୀ ଓ ଆମ୍ବେଦକର ଉଭୟେ ଦଳିତ ଜାତିର କର୍ଣ୍ଣଧାର ଥିଲେ । କିନ୍ତୁ ଉଭୟଙ୍କ ମଧ୍ୟରେ ବିଭିନ୍ନ ଦୃଷ୍ଟିରୁ ମୌଳିକ ପାର୍ଥକ୍ୟ ଥିଲା । ସମାଜର ସବୁ ପ୍ରକାର ଦୀନ ଦଳିତମାନଙ୍କ ପ୍ରତି ଉତ୍ସର୍ଗୀକୃତ ମନୋଭାବାପନ୍ନ ହୋଇଥିଲେ ହେଁ ଗାନ୍ଧୀ ଥିଲେ ଜଣେ ସବର୍ଣ୍ଣ ହିନ୍ଦୁ ଏବଂ ସମଗ୍ର ଭାରତବାସୀଙ୍କର ବିଶେଷତଃ ହିନ୍ଦୁ ସମାଜର ଗୌରବ ଓ ଗର୍ବର ମୂର୍ତ୍ତିମାନ ପ୍ରତୀକ । କିନ୍ତୁ ଆମ୍ବେଦକର ଜନ୍ମ ହୋଇଥିଲେ ଦଳିତ ସମାଜରେ ଏବଂ ସେଥିପାଇଁ ଲାଞ୍ଛିତ ହୋଇଥିଲେ । ନିଜର ବଳିଷ୍ଠ ସାଧନା ଓ ଅଧ୍ୟବସାୟ ବଳରେ ସେ ନିଜକୁ ଦଳିତ ଜାତିର ଅପ୍ରତିଦ୍ୱନ୍ଦ୍ୱୀ ନେତା ତଥା ଭାରତୀୟ ରାଜନୀତିରେ ଏକ ଅନୁପମ ପ୍ରତିଭାଶାଳୀ ବ୍ୟକ୍ତି ଭାବରେ ପ୍ରତିଷ୍ଠିତ କରି ପାରିଥିଲେ । ତେଣୁ ଆମ୍ବେଦକରଙ୍କପାଇଁ ଦଳିତ ଜାତିର ଲୋକମାନେ ବିଶେଷ ଭାବରେ ଗର୍ବ ଅନୁଭବ କରିବାର ଯଥାର୍ଥତା ରହିଛି ।

ଦେଶର ସ୍ୱାଧୀନତା ପରେ ଚାରି ଦଶନ୍ଧିରୁ ଅଧିକ ସମୟ ବିତି ଗଲାଣି । ଆମ୍ବେଦକର ବର୍ତ୍ତମାନ ଏକ ଐତିହାସିକ ଅନୁଷ୍ଠାନରେ ପରିଣତ ହେଲେଣି । ତାଙ୍କ ଜୀବଦ୍ଦଶାରେ ଯେଉଁସବୁ ପ୍ରଶ୍ନନେଇ ସେ ଜଣେ ବିବାଦମାନ ବ୍ୟକ୍ତି ବୋଲି ପରିଗଣିତ ହୋଇଥିଲେ, ଏବେ ସେସବୁର ଉପଯୁକ୍ତ ସମୀକ୍ଷା କରିବାର ଠିକଣା ସମୟ ଆସିଛି ।

ଆମ୍ବେଦକର କଂଗ୍ରେସ ନେତୃତ୍ୱରେ ପରିଚାଳିତ ଜାତୀୟ ସ୍ରୋତରୁ ଦୂରରେ ରହି କାର୍ଯ୍ୟ କରୁଥିଲେ । ଇଂରେଜ ସରକାରଙ୍କ ରାଜନୈତିକ ତଥା ସାମ୍ବିଧାନିକ ଢାଞ୍ଚା ଭିତରେ ରହି ଦଳିତ ଜାତିର ସ୍ୱାର୍ଥ ସଂରକ୍ଷଣପାଇଁ ସେ ଚେଷ୍ଟା କରୁଥିଲେ । ଏହା ପଛରେ ଏକ ଯୁକ୍ତିଯୁକ୍ତ ସାମାଜିକ ତଥା ମନସ୍ତାତ୍ତ୍ୱିକ କାରଣ ଥିଲାପରି ମନେହୁଏ । ସେ ଦୃଢ଼ ଭାବରେ ଅନୁଭବ କରୁଥିଲେ ଯେ ସାମାଜିକ ସ୍ତରରେ ଏକ 'ଦଳିତ' ବ୍ୟକ୍ତି ହିସାବରେ ଘୃଣିତ ଓ ନିକ୍ଷେପିତ ହୋଇ କଂଗ୍ରେସ ରାଜନୀତିରେ ସେ ସବର୍ଣ୍ଣ ହିନ୍ଦୁ ରାଜନୀତିଜ୍ଞମାନଙ୍କ ସହିତ

ସମମର୍ଯ୍ୟାଦା ଲାଭ କରିପାରିବେ ନାହିଁ । ଗାନ୍ଧୀ ଆମ୍ବେଦକରଙ୍କର ଏହି ମନୋଭାବକୁ ଉପଲବ୍ଧି କରି କହିଥିଲେ:-

"He is pronounced as belonging to the Depressed Classes and as being untouchable. Intellectually he is superior to thousands of intelligent and educated caste Hindus. His personal cleanliness is as high as that of any one of us. Today he is an eminent Lecturer in Law. Tommorow you may find him a judge of the High Court. In other words, there is no position in the Government of this country to which he may not aspire or rise and to which an orthodox Brahmin can rise. But that orthoox Brahmin will be defiled by the touch of Dr Amhedkar and that because of his unpardonable sin that he was born a Mahar (untouchable)".

**ନିର୍ଭିକ ବ୍ୟକ୍ତିତ୍ୱ**

ଆମ୍ବେଦକରଙ୍କ ମତରେ କଂଗ୍ରେସ ନେତାମାନେ ରାଜନୈତିକ କ୍ଷେତ୍ରରେ ବୈପ୍ଳବିକ ମନୋଭାବ ପୋଷଣ କଲେ ମଧ୍ୟ ସାମାଜିକ ଦୃଷ୍ଟିଭଙ୍ଗୀ ଥିଲା ପାରମ୍ପରିକ ଏବଂ ସାମାଜିକ ସମତାର ପରିପନ୍ଥୀ । ଗାନ୍ଧୀ ମଧ୍ୟ ଅନୁଭବ କରୁଥିଲେ ଯେ, ବହୁ କଂଗ୍ରେସ ଲୋକ ରାଜନୈତିକ ଉଦ୍ଦେଶ୍ୟ ପ୍ରଣୋଦିତ ହୋଇ ତାଙ୍କ ଅସ୍ପୃଶ୍ୟତା ବିରୋଧ କାର୍ଯ୍ୟକ୍ରମକୁ ସମର୍ଥନ କରୁଛନ୍ତି କିନ୍ତୁ ସେଥିପ୍ରତି ସେମାନଙ୍କର ପ୍ରକୃତ ହାର୍ଦ୍ଦିକ ସମର୍ଥନ ନାହିଁ ।

ଆମ୍ବେଦକର ଜାତୀୟ କଂଗ୍ରେସର ରାଜନୈତିକ କାର୍ଯ୍ୟକଳାପରୁ ନିଜକୁ ଅଲଗା ରଖୁଥିଲେ ମଧ୍ୟ ସେ ଇଂରେଜ ସରକାରଙ୍କର ଚାଟୁକାର ନଥିଲେ । ଇଂରେଜ ସରକାରଙ୍କର ଦୋଷତ୍ରୁଟିକୁ ସେ ନିର୍ଭୀକ ଭାବରେ ସମାଲୋଚନା କରୁଥିଲେ । ସେ କହୁଥିଲେ ଯେ ଇଂରେଜ ସରକାର ଦଳିତ ଜାତି ସମସ୍ୟାକୁ କେବଳ ରାଜନୈତିକ ଦୃଷ୍ଟିକୋଣରୁ ବିଚାର କରୁଛନ୍ତି ଏବଂ ହିନ୍ଦୁ ସମାଜର ନ୍ୟସ୍ତସ୍ୱାର୍ଥ ଏବଂ ରକ୍ଷଣଶୀଳ ବ୍ୟକ୍ତିମାନଙ୍କର ମତାମତକୁ ସମ୍ମାନ ଦେଉଛନ୍ତି ।

ଆମ୍ବେଦକର କହିଥିଲେ ଯେ ଦଳିତ ଜାତିର ସ୍ୱାର୍ଥକୁ ସୁରକ୍ଷା କରିବା ତାଙ୍କ ଜୀବନର ମୂଳ ଲକ୍ଷ୍ୟ । ଏକ ଜାତିୟତାବାଦୀ ରାଜନୈତିକ ନେତାର ମର୍ଯ୍ୟାଦା ଲାଭ

କରିବାପାଇଁ ସେ ଲାଳାୟିତ ନଥିଲେ । ତେଣୁ ଦଳିତ ଜାତିର ସ୍ୱାର୍ଥକୁ ରକ୍ଷା କରିବା ପାଇଁ ସେ ନିର୍ଭୀକ ଭାବରେ ନିଜର ମତ ବ୍ୟକ୍ତ କରୁଥିଲେ ଏବଂ ଏପରିକି ଗାନ୍ଧୀଙ୍କ କେତେକ ମତକୁ ମଧ୍ୟ ବିରୋଧ କରୁଥିଲେ । ୧୯୩୨ ମସିହା ସେପ୍‌ଟେମ୍ବର ମାସରେ ବ୍ରିଟିଶ୍ ସରକାରଙ୍କର ଅଛୁଆମାନଙ୍କୁ ପୃଥକ୍ ସାମ୍ପ୍ରଦାୟିକ ପ୍ରତିନିଧିତ୍ୱ ଦାନ ବ୍ୟବସ୍ଥା ବିରୋଧରେ ସେତେବେଳେ ମହାତ୍ମା ଗାନ୍ଧୀ ଆମରଣ ଅନଶନ କରିଥିଲେ ଏବଂ ସାରା ଦେଶରେ ଲୋକେ ତାଙ୍କୁ ସମର୍ଥନ କରିଥିଲେ, ସେତେବେଳେ ଆମ୍ବେଦକର ନିର୍ଭିକ ଭାବରେ ଗାନ୍ଧୀଙ୍କର ଅନଶନ ବିରୋଧରେ ନିଜର ମତ ବ୍ୟକ୍ତ କରିଥିଲେ । ଗାନ୍ଧୀ ମଧ୍ୟ ଆମ୍ବେଦକରଙ୍କ ମତକୁ ଗୁରୁତ୍ୱ ଦେଇଥିଲେ ଏବଂ ସାଧାରଣ ନିର୍ବାଚନ ମଣ୍ଡଳୀରେ ଦଳିତମାନଙ୍କପାଇଁ ସ୍ଥାନ ସଂରକ୍ଷଣ ବ୍ୟବସ୍ଥାକୁ ଗ୍ରହଣ କରିଥିଲେ ।

## ଅନନ୍ୟ ବିପ୍ଳବୀ

ଆମ୍ବେଦକର ଜଣେ ସାମାଜିକ ବିପ୍ଳବୀ ଥିଲେ । ଦଳିତ ଜାତିର ଲୋକମାନଙ୍କ ମଧ୍ୟରେ ଆତ୍ମସଚେତନତା ଏବଂ ଆତ୍ମସମ୍ମାନ ବୋଧ ଜାଗ୍ରତ କରିବାପାଇଁ ସେ ଚାହୁଁଥିଲେ । ସେ ସେମାନଙ୍କୁ କହୁଥିଲେ, "ସିଂହପରି ସାହାସୀ ହୁଅ, ଛାଗଳ ପରି ନିରୀହ ହୁଅ ନାହିଁ, କାରଣ ନିରୀହମାନେ ହିଁ ସବୁ ଅତ୍ୟାଚାରର ଶିକାର ହୁଅନ୍ତି ।" ହିନ୍ଦୁ ସମାଜରୁ ବର୍ଣ୍ଣ ବୈଷମ୍ୟ ଓ ଜାତିଆଣ ଭେଦକୁ ବିଦୂରିତ କରି ସ୍ୱାଧୀନତା, ସାମ୍ୟ ଏବଂ ଭ୍ରାତୃତ୍ୱ ଭିତ୍ତିରେ ଏକ ନୂତନ ସମାଜ ଗଠନ ତାଙ୍କର କାମନା ଥିଲା । ଏଥିପାଇଁ ଜୀବନର ଶେଷ ଅବସ୍ଥାରେ ହିନ୍ଦୁଧର୍ମ ପରିତ୍ୟାଗ କରି ସେ ତାଙ୍କର ଅନୁଗାମୀମାନଙ୍କ ସହିତ ବୌଦ୍ଧଧର୍ମ ଗ୍ରହଣ କରିଥିଲେ ।

କଂଗ୍ରେସ ବାହାରେ ରହି ଦଳିତମାନଙ୍କ ସ୍ୱାର୍ଥରକ୍ଷାପାଇଁ ନିର୍ଭୀକ ଭାବରେ ନିଜର ମତକୁ ବ୍ୟକ୍ତ କରୁଥିବାରୁ ତାଙ୍କୁ ଅନେକ ଜାତୀୟ ସ୍ରୋତର ବିରୋଧୀ ତଥା ଇଂରେଜ ସମର୍ଥକ ବୋଲି ଭାବୁଥିଲେ । କିନ୍ତୁ ଦେଶ ପ୍ରତି ତାଙ୍କର ଅନୁରକ୍ତି ଅତୁଟ ଥିଲା । ସେ କହୁଥିଲେ ଯେ ଦେଶଭକ୍ତି କଂଗ୍ରେସର ଏକଚାଟିଆ ଅଧିକାର ନୁହେଁ, କଂଗ୍ରେସରେ ନ ରହି ମଧ୍ୟ ଜଣେ ଦେଶକୁ ଭଲ ପାଇ ପାରେ । ଦେଶର ସ୍ୱାର୍ଥଠାରୁ ଦଳିତ ଜାତିର ଲୋକମାନଙ୍କର ସ୍ୱାର୍ଥରକ୍ଷାକୁ ସେ ବଡ଼ ମନେ କରୁଥିଲେ । ଏହାର ଯଥାର୍ଥ ଅର୍ଥ ହେଲା ସମାଜର ଦଳିତ ଓ ନିସ୍ପେଷିତ ଲୋକମାନଙ୍କ ଅଭ୍ୟୁଦୟ ବ୍ୟତିରେକ ସ୍ୱାଧୀନତା ହେବ ଅର୍ଥହୀନ । ଗାନ୍ଧୀ ମଧ୍ୟ ଏହି ପ୍ରକାର ମତ ପୋଷଣ କରୁଥିଲେ ।

## ସମ୍ବିଧାନ ପ୍ରଣୟନ

ଜାତୀୟ କଂଗ୍ରେସ ତଥା ଗାନ୍ଧୀଙ୍କ ସହିତ ତାଙ୍କର ତୀବ୍ର ମତପାର୍ଥକ୍ୟ ରହିଥିଲେ ମଧ୍ୟ ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ରାଷ୍ଟ୍ର ଗଠନପାଇଁ କଂଗ୍ରେସର ଆହ୍ୱାନକୁ ସେ

ଗ୍ରହଣ କରିଥିଲେ । ନୂତନ ସମ୍ବିଧାନ ପ୍ରଣୟନରେ ସେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । କଂଗ୍ରେସ ଦଳର ପ୍ରଗତିଶୀଳ ଚିନ୍ତାଧାରାକୁ ସେ ସାମ୍ବିଧାନିକ ରୂପରେଖ ପ୍ରଦାନ କରିଥିଲେ । କେ.ଭି.ରାଓଙ୍କ ମତରେ ସେ ସମ୍ବିଧାନର ପିତା ନୁହନ୍ତି, ସେ ହେଉଛନ୍ତି ସମ୍ବିଧାନର ଜନନୀ । ସ୍ୱାଧୀନ ଭାରତର ପ୍ରଥମ ମନ୍ତ୍ରୀମଣ୍ଡଳରେ ଆଇନମନ୍ତ୍ରୀ ଥିଲେ ମଧ୍ୟ କଂଗ୍ରେସ ତଥା ନେହେରୁଙ୍କ ସହିତ ତାଙ୍କର ମତଭେଦକୁ ସେ ସାହସର ସହିତ ବ୍ୟକ୍ତ କରିଥିଲେ ଏବଂ ଶେଷରେ ସ୍ୱେଚ୍ଛାରେ ଇସ୍ତଫା ଦେଇଥିଲେ ।

ଭାରତୀୟ ରାଜନୀତିରେ ଆମ୍ବେଦକର ଏକ ବିରଳ ବ୍ୟକ୍ତିତ୍ୱ । ଏକାଧାରରେ ସେ ଜଣେ ଅର୍ଥନୀତିଜ୍ଞ, ଆଇନଜ୍ଞ, ସାମାଜିକ ବିପ୍ଳବୀ ଓ ପ୍ରତିଭାଶାଳୀ ରାଷ୍ଟ୍ରନୀତିଜ୍ଞ ଥିଲେ । କଲମ୍ବିଆ ବିଶ୍ୱବିଦ୍ୟାଳୟରୁ ଅର୍ଥନୀତିରେ ଡକ୍ଟରେଟ୍, ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍ସରୁ ଡି:ଏସ୍:ସି ଏବଂ ଗ୍ରେଜ୍ ଇନ୍‌ରୁ ବାର-ଏଟ୍-ଲ ଲାଭ କରି ସେ ସାଧାରଣ ଜୀବନରେ ଜଣେ ସୁସଜ୍ଜିତ ସୈନିକ ଭାବରେ ପ୍ରବେଶ କରିଥିଲେ । ଘୃଣିତ ଓ ଅବହେଳିତ ଦଳିତ ସମାଜରେ ଜନ୍ମ ଲାଭ କରି ପ୍ରତିଭା ତଥା ଅଧ୍ୟବସାୟ ବଳରେ ସେ ନିଜକୁ ଜାତୀୟ ରାଜନୀତିରେ ଏକ ବିରାଟ ବ୍ୟକ୍ତିତ୍ୱରୂପେ ପ୍ରତିଷ୍ଠିତ କରି ପାରିଥିଲେ । ତାଙ୍କର ଜୀବନ ସଂଗ୍ରାମ ସମାଜର ସବୁଶ୍ରେଣୀର ଲୋକ ବିଶେଷତଃ ଦଳିତ ସମାଜପାଇଁ ପ୍ରେରଣାର ଉତ୍ସ ହୋଇ ରହିଥିବ ।

ସୌଜନ୍ୟ: ଡକ୍ଟର ଅତୁଲଚନ୍ଦ୍ର ପ୍ରଧାନ, *ଉତ୍କଳ ପ୍ରସଙ୍ଗ*, ୪୭ ଭାଗ, ୯ମ ସଂଖ୍ୟା, ଏପ୍ରିଲ ୧୯୯୧, ଭୁବନେଶ୍ୱର: ସୂଚନା ଓ ଲୋକସଂପର୍କ ବିଭାଗ, ଓଡ଼ିଶା ।

# ଆମ୍ବେଦକରଙ୍କ ଦୃଷ୍ଟିରେ ସାମାଜିକ ଗଣତନ୍ତ୍ର ଓ ରାଜନୈତିକ ଭାବନା

ଜୟକୃଷ୍ଣ ବରାଳ

ଆମ୍ବେଦକର ଗଣତନ୍ତ୍ରର ଏକ ଦୃଢ଼ ସମର୍ଥକ ଥିଲେ । ସେ ଗଣତନ୍ତ୍ରକୁ ସାମଗ୍ରିକ ଦୃଷ୍ଟିକୋଣରୁ ଦେଖୁଥିଲେ । ତାଙ୍କ ଦୃଷ୍ଟିରେ, ଗଣତନ୍ତ୍ର ମୁଖ୍ୟତଃ ସାମାଜିକ । ଏହାର ରାଜନୈତିକ ଦିଗ ଅପେକ୍ଷା ସାମାଜିକ ଦିଗ ଅଧିକ ଗୁରୁତ୍ୱପୂର୍ଣ୍ଣ । ରାଜନୈତିକ ଗଣତନ୍ତ୍ର ବାଞ୍ଛନୀୟ, କିନ୍ତୁ ସାମାଜିକ ଗଣତନ୍ତ୍ର ବିନା ଏହା ଅର୍ଥହୀନ ଅଟେ । ଏକ ଅତ୍ୟାଚାରୀ ସରକାର ବିରୋଧରେ ସତର୍କ ରହିବା ଉଚିତ । ସରକାରଙ୍କର କର୍ତ୍ତବ୍ୟ ହେଉଛି ଲୋକମାନଙ୍କର ସେବା କରିବା; କିନ୍ତୁ ସରକାର ଖରାପ ଲୋକଙ୍କ ହାତରେ ପଡ଼ିଲେ ସ୍ୱେଚ୍ଛାଚାରୀ ଓ ଅତ୍ୟାଚାରୀ ହୋଇପାରେ । କିନ୍ତୁ ଆମ୍ବେଦକର ଯୁକ୍ତି କରିଛନ୍ତି, ବହୁତ ଲୋକଙ୍କର ହୃଦ୍‌ବୋଧ ହୋଇ ନ ଥାଏ ଯେ ସରକାରଙ୍କ ଅପେକ୍ଷା ସମାଜ ଅଧିକ ଅତ୍ୟାଚାରୀ ହୋଇପାରେ । ଅତ୍ୟାଚାରୀ ହେବାପାଇଁ ସରକାରଙ୍କ ଅପେକ୍ଷା ସମାଜପାଇଁ ଅଧିକ ରାସ୍ତା ଓ ସମ୍ଭାବନା ଅଛି; ଏଗୁଡ଼ିକ ମଧ୍ୟ ଅଧିକ ଫଳପ୍ରଦ ଅଟେ ।

ଜାତି ବ୍ୟବସ୍ଥା ଫଳରେ ନିଜେ ବହୁବାର ଅତ୍ୟାଚାର ଓ ଅପମାନର ଶିକାର ହୋଇଥିବାରୁ ଆମ୍ବେଦକର ଏହାର ଘୋର ବିରୋଧୀ ଥିଲେ । ସେ ଚାହୁଁଥିଲେ, ଜାତିଗତ ଅସମାନତା ଏହି ଅତ୍ୟାଚାରର ମୂଳ ହୋଇଥିବାରୁ ଦୂରୀଭୂତ ହେବା ଉଚିତ ଏବଂ ଜାତି ବ୍ୟବସ୍ଥାର ବିଲୋପ ନ ହେବା ପର୍ଯ୍ୟନ୍ତ ତାହା ସମ୍ଭବ ନୁହେଁ । ସମାଜରେ ସ୍ପଷ୍ଟ ଓ ଗଭୀର ଅସମାନତା ଥିବା ପର୍ଯ୍ୟନ୍ତ ସମାଜର ଦଳିତମାନଙ୍କପାଇଁ ଗଣତନ୍ତ୍ରର କିଛି ଅର୍ଥ ନାହିଁ, କାରଣ ଜାତି ବ୍ୟବସ୍ଥାରେ ସେମାନେ ଉଚ୍ଚ ବର୍ଗର ଆଧିପତ୍ୟଶାଳୀ ଲୋକମାନଙ୍କ ଦ୍ୱାରା ଅତ୍ୟାଚାରିତ ହେଉଥିବେ । ଆମ୍ବେଦକର କହିଛନ୍ତି, "ସମାଜରେ ଏକ ଅତ୍ୟାଚାରିତ ଶ୍ରେଣୀ ରହିବ ନାହିଁ । ଗୋଟିଏ ଶ୍ରେଣୀ ପାଖରେ ସମସ୍ତ ସୁବିଧାସୁଯୋଗ ରହିବ ନାହିଁ ଏବଂ ଅନ୍ୟ ଏକ ଶ୍ରେଣୀ ମୁଣ୍ଡରେ ସମସ୍ତ ଭାର ଲଦି ଦିଆହେବ ନାହିଁ । ସମାଜରେ ଏହି ବିଭାଜନ ଓ ବ୍ୟବସ୍ଥା ମଧ୍ୟରେ ଏକ ରକ୍ତାକ୍ତ ବିପ୍ଳବର ଜୀବାଣୁ ଅଛି ଏବଂ ସମ୍ଭବତଃ ଗଣତନ୍ତ୍ର ଏହି ରୋଗକୁ ଭଲ କରିପାରିବ ନାହିଁ ।"

ଆମ୍ବେଦକର ଜୋର୍ ଦେଇ କହିଛନ୍ତି ଯେ, ସାମାଜିକ ଗଣତନ୍ତ୍ରର ଭିତ୍ତି ଉପରେ ରାଜନୈତିକ ଗଣତନ୍ତ୍ର ଗଢ଼ା ହେବା ଉଚିତ ।

ସେ କହିଛନ୍ତି,

*"ଆମେ ଆମର ରାଜନୈତିକ ଗଣତନ୍ତ୍ରକୁ ଏକ ସାମାଜିକ ଗଣତନ୍ତ୍ର ମଧ୍ୟ କରିବା ଉଚିତ । ରାଜନୈତିକ ଗଣତନ୍ତ୍ର ସାମାଜିକ ଗଣତନ୍ତ୍ରର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ନ ହେଲେ ବହୁଦିନ ତିଷ୍ଠିବ ନାହିଁ ।"*

କାର୍ଲ ମାର୍କସ୍ ନାଗରିକ ସମାଜ (Civil Society) ବିଷୟରେ କହିଛନ୍ତି; ତାଙ୍କ ମତରେ, ଅର୍ଥନୀତି ଏହାର ଅନ୍ତର୍ଭୁକ୍ତ ଅଟେ । ଆମ୍ବେଦକର ଏ ଅର୍ଥରେ ସମାଜ (Society) ଶବ୍ଦ ବ୍ୟବହାର କରି ନାହାଁନ୍ତି । ସେ ଅର୍ଥନୈତିକ ଗଣତନ୍ତ୍ର ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । କିନ୍ତୁ ଏହାର ସଫଳତା ମଧ୍ୟ ନିର୍ଭର କରିବ ସାମାଜିକ ଗଣତନ୍ତ୍ର ଉପରେ । ତେଣୁ ଉଭୟ ରାଜନୈତିକ ଗଣତନ୍ତ୍ର ଓ ଅର୍ଥନୈତିକ ଗଣତନ୍ତ୍ରର ସଫଳତା ସାମାଜିକ ଗଣତନ୍ତ୍ର ଉପରେ ନିର୍ଭର କରେ । ଏହା ମଧ୍ୟ ଯୁକ୍ତି କରାଯାଇପାରେ ଯେ, ସାମାଜିକ ଗଣତନ୍ତ୍ର ଏକ ପ୍ରାସାଦର ଭିତ୍ତି ସ୍ତର ହୋଇଥିବା ସ୍ଥଳେ ଉଭୟ ଅର୍ଥନୈତିକ ଗଣତନ୍ତ୍ର ଓ ରାଜନୈତିକ ଗଣତନ୍ତ୍ର ଏହାର ଉପର ସ୍ତର ଅଟେ । ଆମ୍ବେଦକର କିନ୍ତୁ ରାଜନୈତିକ ଗଣତନ୍ତ୍ର ଅପେକ୍ଷା ଅର୍ଥନୈତିକ ଗଣତନ୍ତ୍ରକୁ ଅପେକ୍ଷାକୃତ ଭାବରେ ଅଧିକ ଗୁରୁତ୍ୱ ଦେଇଛନ୍ତି ।

ଆମ୍ବେଦକର ବାରମ୍ବାର କହିଛନ୍ତି ଯେ, ଯେଉଁ ସମାଜ ଅସମାନ ଗୋଷ୍ଠୀ ବା ଶ୍ରେଣୀମାନଙ୍କ ଭିତରେ ବିଭାଜିତ, ତାହା ଗଣତନ୍ତ୍ରପାଇଁ ଅନୁକୂଳ ନୁହେଁ । ସମାଜରେ ଅସମାନ ଶ୍ରେଣୀ ନ ଥିଲେ ଗଣତନ୍ତ୍ର ସଫଳ ହୋଇପାରେ । ଗଣତନ୍ତ୍ର ସଫଳତାର ଅନ୍ୟ ଏକ କାରଣ ହେଉଛି ପରସ୍ପରର ସ୍ୱାର୍ଥ ଓ ମଙ୍ଗଳକୁ ସ୍ୱୀକୃତି ଦେବାକୁ ଓ ତଦନୁଯାୟୀ ନିଜନିଜ ବ୍ୟବହାର ଓ ନୀତିରେ ପରିବର୍ତ୍ତନ ଆଣିବାକୁ ବ୍ୟକ୍ତି ଓ ଗୋଷ୍ଠୀମାନଙ୍କର ପ୍ରସ୍ତୁତି । ଗଣତନ୍ତ୍ରରେ ଏକାଧିକ ଗୋଷ୍ଠୀ ଓ ସ୍ୱାର୍ଥ ମଧ୍ୟରେ ଆବଶ୍ୟକ ବୁଝାମଣା ଓ ତାଳମେଳ ରହିଲେ ଏହା ସଫଳ ହେବ ।

ଗଣତନ୍ତ୍ରରେ ଏକ ଗଣତାନ୍ତ୍ରିକ ଢାଞ୍ଚା ଥାଏ । ଗଣତାନ୍ତ୍ରିକ ନିର୍ବାଚନ ମାଧ୍ୟମରେ ବ୍ୟବସ୍ଥାପକ ସଭାକୁ ସଭ୍ୟମାନେ ନିର୍ବାଚିତ ହୋଇଥାନ୍ତି । ସରକାରୀ ସଂଗଠନ ମଧ୍ୟରେ ଗଣତାନ୍ତ୍ରିକ ଆତ୍ମା ରହିବା ବିଧେୟ । ପ୍ରତି ପାଞ୍ଚ ବର୍ଷରେ ଥରେ ନିୟମିତ ନିର୍ବାଚନ ହେବା ଉଚିତ ଓ ନିର୍ବାଚନରେ ଅନ୍ତତଃ ଦୁଇଟି ରାଜନୈତିକ ଦଳ ପ୍ରତିଦ୍ୱନ୍ଦ୍ୱିତା କରିବା ଉଚିତ । ବିରୋଧୀ ଦଳ ଶକ୍ତିଶାଳୀ ଓ ଦୃଢ଼ ହେବା ଉଚିତ । ଆମ୍ବେଦକର ସଂସଦୀୟ ଗଣତନ୍ତ୍ର ପସନ୍ଦ କରିଥିଲେ, ଯେଉଁଥିରେ କାର୍ଯ୍ୟପାଳିକା ବ୍ୟବସ୍ଥାପକ ସଭାର ଅଧୀନସ୍ଥ ହେବ ଓ ଏକ ସ୍ୱାଧୀନ ନ୍ୟାୟପାଳିକା ଉଭୟ କାର୍ଯ୍ୟପାଳିକା ଓ ବ୍ୟବସ୍ଥାପକ ସଭାକୁ ନିୟନ୍ତ୍ରଣ କରିବ ଓ ସେମାନଙ୍କୁ ସୀମା ଭିତରେ ରଖିବ ।

ସରକାର ଗଠନ ଓ ଆକାରରେ ଗଣତାନ୍ତ୍ରିକ ହୋଇପାରେ, କିନ୍ତୁ ଏଥିରେ ଗଣତାନ୍ତ୍ରିକ ଆତ୍ମା ଓ ଅନୁଭୂତି ନ ଥାଇପାରେ । ଆମ୍ବେଦକର ଜୋର୍ ଦେଇ କହିଛନ୍ତି

ଯେ, ସରକାରୀ ସଂଗଠନରେ ଗଣତାନ୍ତ୍ରିକ ଆତ୍ମା ରହିବା ବିଧେୟ । ଗଣତନ୍ତ୍ର ଲୋକମାନଙ୍କର ସରକାର, ଲୋକମାନଙ୍କପାଇଁ ସରକାର ଓ ଲୋକମାନଙ୍କଦ୍ୱାରା ସରକାର ହେବ, ଯଦି ଲୋକମାନେ ସେମାନଙ୍କ ମନରେ ଗଣତାନ୍ତ୍ରିକ ଅଟନ୍ତି । ସେ ଯଥାର୍ଥରେ କହିଛନ୍ତି, "ଯଦି ଲୋକମାନଙ୍କର ମାନସିକ ପ୍ରବୃତ୍ତି ଗଣତାନ୍ତ୍ରିକ ନୁହେଁ, ତେବେ ଏକ ଗଣତାନ୍ତ୍ରିକ ସରକାର ସହଜରେ ଭୟଙ୍କର ଆକାର ଧାରଣ କରିବ ।" ସେ ଆହୁରି ମଧ୍ୟ କହିଛନ୍ତି, "ଗଣତନ୍ତ୍ର କେବଳ ଏକ ସାମାଜିକ ବ୍ୟବସ୍ଥା ନୁହେଁ, ଏହା ତାହାଠାରୁ ଅଧିକ ଅଟେ । ଏହା ଏକ ମାନସିକ ମନୋଭାବ, ଏକ ଜୀବନ ଦର୍ଶନ ।"

## ନାରୀ-ପୁରୁଷ ସମତା

ପାଶ୍ଚାତ୍ୟ ଶିକ୍ଷା ପ୍ରାପ୍ତ ଆମ୍ବେଦକରଙ୍କର ସାମାଜିକ ସମ୍ପର୍କ ବିଷୟରେ ଆଧୁନିକ ଓ ପ୍ରଗତିଶୀଳ ମତ ଥିଲା । ତାଙ୍କ ମତରେ, ସମାଜରେ ମହିଳାମାନଙ୍କର ସମାନ ଓ ସମ୍ମାନନୀୟ ସ୍ଥାନ ରହିବା ଉଚିତ । ଯେଉଁ ସମାଜରେ ନାରୀମାନେ ଲାଞ୍ଛନା ଓ ବିଦ୍ୱେଷର ଶିକାର ହୁଅନ୍ତି, ସେ ସମାଜର ବିକାଶ ସମ୍ଭବ ନୁହେଁ । ସେ ଅଭିଯୋଗ କରିଛନ୍ତି ଯେ, ଭାରତରେ ବୌଦ୍ଧଧର୍ମର ପ୍ରାଧାନ୍ୟ ଥିବାବେଳେ ମହିଳାମାନେ ସମ୍ମାନ ଓ ସ୍ୱୀକୃତି ପାଇଥିଲେ, କିନ୍ତୁ ବ୍ରାହ୍ମଣ୍ୟବାଦର ପୁନରୁତ୍ଥାନ ପରେ ସେମାନଙ୍କର ସାମାଜିକ ସ୍ଥିତିରେ ଦ୍ରୁତ ଅବନତି ଘଟିଲା । ସେ ବହୁ ପରିମାଣରେ ନାରୀମାନଙ୍କର ନିମ୍ନ ସାମାଜିକ ସ୍ଥିତିପାଇଁ ମନୁଙ୍କୁ ଦାୟୀ କରିଛନ୍ତି, କାରଣ, ମନୁ ନାରୀମାନଙ୍କର ବଶ୍ୟତା ଓ ନିକୃଷ୍ଟତାକୁ ଆଇନ୍‌ର ଏକ ଅଂଶବିଶେଷ କରିଦେଲେ । ମନୁ ଏବଂ ଅନ୍ୟ କେତେକ ପଣ୍ଡିତ ଯୁକ୍ତି କରିଛନ୍ତି ଯେ, ନାରୀମାନେ ବେଦ ଉପନିଷଦ ପଢ଼ିପାରିବେ ନାହିଁ କି ଧର୍ମକର୍ମ କରିପାରିବେ ନାହିଁ । ବାପମାଆଙ୍କର ସମ୍ପତ୍ତି ପାଇବାରେ ମନୁ ନାରୀମାନଙ୍କୁ ବଞ୍ଚିତ କରିଛନ୍ତି । ସାମାଜିକ ନ୍ୟାୟପାଇଁ ସଂଗ୍ରାମ କରୁଥିବା ଆମ୍ବେଦକର ମହିଳାମାନଙ୍କୁ ସମତା ଓ ନ୍ୟାୟ ଦେବା ସପକ୍ଷରେ ସ୍ୱର ଉତ୍ତୋଳନ କରିଥିଲେ । ୧୯୪୨ ମସିହା ଜୁଲାଇ ମାସରେ ଆମ୍ରାଓତିଠାରେ ଅବସ୍ଥିତ ଡି.ସି. ମହିଳା ମହାବିଦ୍ୟାଳୟରେ ଭାଷଣ ଦେଇ ସେ ମତ ଦେଇଥିଲେ ଯେ ମହିଳା ବିକାଶ ହିଁ ସମାଜିକ ବିକାଶର ପ୍ରକୃତ ମାପକାଠି । ନିଜେ ପରିଷ୍କାର ରହିବାକୁ, ପିଲାମାନଙ୍କୁ ଶିକ୍ଷା ଦେବାକୁ ଓ ହୀନମ୍ମନ୍ୟତାରୁ ମୁକ୍ତ ରହିବାକୁ ସେ ମହିଳାମାନଙ୍କୁ ପରାମର୍ଶ ଦେଇଥିଲେ । ହିନ୍ଦୁ ସଂହିତା ଆଇନ୍ (Hindu Code Bill) ପ୍ରଣୟନରେ ସେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ଏହି ବିଲ୍ ପୃଥକ ଭାବରେ ଗୃହୀତ ହୋଇ ଆଇନ୍ ହେବା ପରେ ନାରୀମାନେ ବାପମାଆଙ୍କ ସମ୍ପତ୍ତି ସମାନ ଭାବରେ ପାଇବାରେ ଅଧିକାର ପାଇଲେ ।

**ସମାଜବାଦ**

ଆମ୍ବେଦକର ଅସ୍ପୃଶ୍ୟମାନଙ୍କ ସପକ୍ଷରେ ସଂଗ୍ରାମ କରିବା ସଂଗେସଂଗେ ଅନ୍ୟାନ୍ୟ ଦୁର୍ବଳ ଶ୍ରେଣୀର ଲୋକମାନଙ୍କ ବିଷୟରେ ଚିନ୍ତା ଓ ଉଦ୍‌ବେଗ ପ୍ରକାଶ କରିଥିଲେ । ତାଙ୍କ ଦୃଷ୍ଟିରେ ଦାରିଦ୍ର୍ୟ ଏକ ବଡ଼ ପ୍ରସଂଗ ଥିଲା । ସେ ସେମାନଙ୍କ ଅବସ୍ଥାରେ ଉନ୍ନତି ଚାହୁଁଥିଲେ । ତେଣୁ ସେ ସାମାଜିକ ଓ ଅର୍ଥନୈତିକ ଗଣତନ୍ତ୍ର ପ୍ରତିଷ୍ଠାପାଇଁ ସ୍ୱର ଉଠାଇଥିଲେ । ସେ କହିଥିଲେ ଯେ ଅର୍ଥନୈତିକ ଗଣତନ୍ତ୍ର ବିନା ରାଜନୈତିକ ଗଣତନ୍ତ୍ର ଅର୍ଥହୀନ ଅଟେ । ସେ ଭାରତରେ ଗଣତନ୍ତ୍ର ପ୍ରତିଷ୍ଠାର ସମର୍ଥକ ଥିଲେ । ସେ କିନ୍ତୁ ପଚାରିଥିଲେ, ସ୍ୱାଧିନତା କାହାପାଇଁ ? ଅର୍ଥନୈତିକ ଗଣତନ୍ତ୍ର ପ୍ରତିଷ୍ଠା ନ ହେଲେ ରାଜନୈତିକ ଗଣତନ୍ତ୍ରର ଅର୍ଥ ହେବ, କେବଳ ଜମିଦାର ଓ ପୁଞ୍ଜିବାଦୀମାନଙ୍କପାଇଁ ସ୍ୱାଧିନତା ଏବଂ ଗରିବମାନଙ୍କ ଉପରେ ଧନୀମାନଙ୍କର ଏକଛତ୍ରବାଦ । ତେଣୁ ଆମ୍ବେଦକର ଗରିବମାନଙ୍କ ସପକ୍ଷରେ ରାଷ୍ଟ୍ରର ହସ୍ତକ୍ଷେପ ନିମିତ୍ତ ଯୁକ୍ତି କରିଥିଲେ । ସେ "ରାଷ୍ଟ୍ର ସମାଜବାଦ" ର ପ୍ରବକ୍ତା ଥିଲେ ।

ସେ ଅର୍ଥନୀତିର ଜାତୀୟକରଣପାଇଁ ଯୁକ୍ତି କରିଥିଲେ, ଯେହେତୁ ତାଙ୍କର ଭୟ ଥିଲା ଯେ ଘରୋଇ ଅର୍ଥନୀତି ଅର୍ଥନୈତିକ ବୈଷମ୍ୟ ବୃଦ୍ଧି କରିବ । "ଏହା ଏକ ସତର୍କ ଘଣ୍ଟି", ସେ କହିଥିଲେ । ଶୋଷଣର ଅବସାନପାଇଁ ଯୋଜନାର ଆବଶ୍ୟକତା ସପକ୍ଷରେ ସେ ଯୁକ୍ତି ବାଢ଼ିଥିଲେ ।

ଆମ୍ବେଦକରଙ୍କ ମତରେ, 'ରାଷ୍ଟ୍ର ସମାଜବାଦ' ଆଇନ୍ ହେବା ଉଚିତ । ଏହା ସଂବିଧାନରେ ଅନ୍ତର୍ଭୁକ୍ତ ହେବା ଉଚିତ ଯାହାଦ୍ୱାରା ଜାତୀୟ ବ୍ୟବସ୍ଥାପକ ସଭାରେ ସଂଖ୍ୟାଗରିଷ୍ଠ ସଭ୍ୟ ଏହାକୁ କ୍ଷୁର୍ଣ୍ଣ କରିପାରିବେ ନାହିଁ । ଏହି ଆଇନ୍ ପ୍ରଣୟନ ହେଲେ ତିନୋଟି ଲକ୍ଷ୍ୟ ସାଧନ ହେବ ଯଥା : ରାଷ୍ଟ୍ର ସମାଜବାଦ, ସଂସଂଦୀୟ ଗଣତନ୍ତ୍ର ଓ ଏକଛତ୍ରବାଦର ନିରାକରଣ ।

ଆମ୍ବେଦକରଙ୍କ ମତରେ, ପଶୁ ଓ ମଣିଷ ଭିତରେ ତଫାତ୍ ହେଉଛି, ପଶୁ ପାର୍ଥିବ ସୁଖ ଚାହେଁ, କିନ୍ତୁ ମଣିଷ ଏକ ସଂସ୍କୃତିସଂପନ୍ନ ଜୀବନଯାପନ କଲେ ସୁଖୀ ହୁଏ । ମଣିଷ ସଂସ୍କୃତି ଉପଲବ୍ଧ କରିପାରିବ, ଯଦି ତା' ପାଖରେ ଅବାଶ୍ୟକୀୟ ଅବକାଶ ଥିବ । ସେ ଅବକାଶ ପାଇପାରିବ ଯଦି ଜିନିଷଗୁଡ଼ିକ ଶାରୀରିକ ପରିଶ୍ରମଦ୍ୱାରା ଉତ୍ପାଦିତ ନ ହୋଇ ମେସିନ୍‌ଦ୍ୱାରା ଉତ୍ପାଦିତ ହେବ । ଆମ୍ବେଦକର ଓ ମାର୍କ୍‌ସଙ୍କ ମଧ୍ୟରେ କିଛି ସାମଞ୍ଜସ୍ୟ ରହିଛି, ଯଦିଓ ସେମାନଙ୍କ ମଧ୍ୟରେ ଗୁରୁତ୍ୱପୂର୍ଣ୍ଣ ପାର୍ଥକ୍ୟ ଅଛି ବୋଲି କୁହାଯାଏ ।

ପୁଞ୍ଜିବାଦୀଙ୍କଦ୍ୱାରା ଶୋଷିତ ଶ୍ରମିକମାନଙ୍କ ବିଷୟରେ ଆମ୍ବେଦକର ଯଥେଷ୍ଟ ଚିନ୍ତିତ ଥିଲେ । ସେମାନଙ୍କ ଅବସ୍ଥାରେ ଉନ୍ନତି ଆଣିବାପାଇଁ ସେ ଯୁକ୍ତି ବାଢ଼ିଥିଲେ । ସେ

ଭାରତୀୟ ସ୍ୱାଧୀନ ଶ୍ରମିକ ଦଳ (Independent Labour Party of India) ନାମକ ଏକ ରାଜନୈତିକ ଦଳ ଗଢ଼ିଥିଲେ । ଶ୍ରମିକ ଶ୍ରେଣୀର କଲ୍ୟାଣ ତାଙ୍କର ଏକ ପ୍ରମୁଖ ଲକ୍ଷ୍ୟ ଥିଲା । ସେ ଶ୍ରମିକମାନଙ୍କ ବିଷୟରେ କହୁଥିଲାବେଳେ ଦଳିତମାନଙ୍କ ବିଷୟରେ ଚିନ୍ତା କରୁଥିଲେ । ଶ୍ରମିକମାନେ ହରତାଳ (Strike) ଅଧିକାର ପାଇବା ଉଚିତ ବୋଲି ତାଙ୍କର ମତ ଥିଲା । ହରତାଳ ଆଇନ୍ ଦୃଷ୍ଟିରେ ଭୁଲ (Civil Wrong), କିନ୍ତୁ ଏକ ଅପରାଧ (Crime) ନୁହେଁ । ଶିଳ୍ପ ସଂବନ୍ଧୀୟ ବିବାଦ ବିଲ୍ ଶ୍ରମ ଦାୟିତ୍ୱରେ ଥିବା ସଭ୍ୟ ହିସାବରେ ଶିଳ୍ପ ଶ୍ରମିକମାନଙ୍କର ଅବସ୍ଥାରେ ଉନ୍ନତି ଆଣିବାପାଇଁ ସେ ଅନେକ ପ୍ରଚେଷ୍ଟା କରିଥିଲେ । ସେ ଦ୍ୱିପାକ୍ଷିକ ମିଳାମିଶା ବା ମଧ୍ୟସ୍ଥତାଦ୍ୱାରା ନିଷ୍ପତ୍ତି ଅନୁମୋଦନ କରିଥିଲେ ଯାହା ଶ୍ରମିକମାନଙ୍କର ମଙ୍ଗଳ କରିବ । ସେ ସେମାନଙ୍କପାଇଁ ସାପ୍ତାହିକ ଛୁଟିଦିନ ସହ ସର୍ବନିମ୍ନ ମଜୁରି ଅନୁମୋଦନ କରିଥିଲେ ।

ଆମ୍ବେଦକର ଚାଷଜମିର ରାଷ୍ଟ୍ରାୟତ୍ତ ମାଲିକାନା ଏବଂ ଗଣତାନ୍ତ୍ରିକ ଭିତ୍ତିରେ ମିଳିମିଶି ଏକତ୍ର ଜମି ଚାଷ ସପକ୍ଷରେ ମତ ଦେଇଥିଲେ । ସେ କହିଥିଲେ, "ଜମି ସବୁ ଏକାଠି ରଖିବା ଏବଂ ରୟତ ଆଇନ୍ ଜମିହୀନ କୃଷି ଶ୍ରମିକ ଓ ଦାସ ଶ୍ରେଣୀର-ଶୂଦ୍ର ଏବଂ ଅସ୍ପୃଶ୍ୟ-ଉପକାର କରିବ ନାହିଁ । କେବଳ ସମବାୟ ସୂତ୍ରରେ ଚାଷ କଲେ ହିଁ ସେମାନେ ଉପକୃତ ହୋଇପାରିବେ ଯଦି କୃଷି ଏକ ରାଷ୍ଟ୍ରାୟତ୍ତ ଶିଳ୍ପ ହୁଏ ।"

ଭାରତୀୟ ସଂବିଧାନର ମୌଳିକ ଅଧିକାର ଅଧ୍ୟାୟରେ ସାମାଜିକ ଓ ଅର୍ଥନୈତିକ ଅଧିକାରଗୁଡ଼ିକୁ ଅନ୍ତର୍ଭୁକ୍ତ କରିବାକୁ ଆମ୍ବେଦକର ଚାହିଁଥିଲେ, କିନ୍ତୁ କଂଗ୍ରେସ ଦଳର କେତେକ ଶକ୍ତିଶାଳୀ ନେତାଙ୍କର ବିରୋଧ ଯୋଗୁଁ ସେ ଏହା କରିପାରି ନ ଥିଲେ । କିନ୍ତୁ ସେ ଏହି ଅଧିକାରଗୁଡ଼ିକୁ ରାଷ୍ଟ୍ରୀୟ ନିର୍ଦ୍ଦେଶମୂଳକ ନୀତିରେ ଅନ୍ତର୍ଭୁକ୍ତ କରିପାରିଥିଲେ । ତାଙ୍କର ବିଶ୍ୱାସ ଥିଲା ଯେ, ଏହି ନୀତିଗୁଡ଼ିକ ସମାଜବାଦ ପ୍ରତିଷ୍ଠା କରିବାରେ ସାହାଯ୍ୟ କରିବ ।

ମାର୍କ୍ସଙ୍କ ଭଳି ଆମ୍ବେଦକର ସମାଜରେ ଥିବା ସୁସ୍ପଷ୍ଟ ଅର୍ଥନୈତିକ ବୈଷମ୍ୟ ସଂବନ୍ଧରେ ଉଦ୍‌ବେଗ ପ୍ରକାଶ କରିଥିଲେ । ମାର୍କ୍ସଙ୍କ ମତାନୁଯାୟୀ, ଅର୍ଥନୈତିକ ଦ୍ୱନ୍ଦ୍ୱଗୁଡ଼ିକ ଗୋଟିଏ ପ୍ରାସାଦର ତଳ ସ୍ତର ହୋଇଥିବା ସ୍ଥଳେ ସାମାଜିକ ଓ ରାଜନୈତିକ ସଂପର୍କଗୁଡ଼ିକ ସେହି ପ୍ରାସାଦର ଉପର ସ୍ତର । କିନ୍ତୁ ଆମ୍ବେଦକରଙ୍କ ମତାନୁଯାୟୀ, ସାମାଜିକ ସଂପର୍କଗୁଡ଼ିକ ପ୍ରାସାଦର ତଳସ୍ତର ହୋଇଥିବା ବେଳେ ଅର୍ଥନୈତିକ ଓ ରାଜନୈତିକ ସଂପର୍କଗୁଡ଼ିକ ତାହାର ଉପର ସ୍ତର ଅଟନ୍ତି । ତେଣୁ ଆମ୍ବେଦକର ସମାଜରେ ଅର୍ଥନୈତିକ ନ୍ୟାୟ ପ୍ରତିଷ୍ଠାପାଇଁ ସମାଜରେ ମୌଳିକ ପରିବର୍ତ୍ତନ-ବିଶେଷତଃ ଜାତିପ୍ରଥାର ବିଲୋପ ଦାବି କରିଥିଲେ ।

ଧନୀ ଲୋକମାନେ ଗରିବମାନଙ୍କୁ ଶୋଷଣ କରନ୍ତି-ଏ ବିଷୟରେ ମାର୍କ୍ସଙ୍କ ସହିତ ଆମ୍ବେଦକର ଏକମତ ଥିଲେ, ସେ କିନ୍ତୁ ମାର୍କ୍ସଙ୍କର ହିଂସାତ୍ମକ ବିପ୍ଳବତତ୍ତ୍ୱ ଗ୍ରହଣ କରି ନ ଥିଲେ । ସେ ବିଶ୍ୱାସ କରୁଥିଲେ ଯେ ଶାନ୍ତିପୂର୍ଣ୍ଣ ସାମ୍ବିଧାନିକ ଉପାୟଦ୍ୱାରା ସମାଜବାଦ ପ୍ରତିଷ୍ଠା ହୋଇପାରିବ ।

## ରାଜନୈତିକ ଭାବନା

ଆମ୍ବେଦକର ପ୍ରଥମେପ୍ରଥମେ ରାଜନୀତିକୁ ପସନ୍ଦ କରୁ ନ ଥିଲେ । କିନ୍ତୁ ପରେ ସେ ରାଜନୀତିକୁ ଗ୍ରହଣ କରିଥିଲେ । ସେ ମୁଖ୍ୟତଃ ଏକ ସମାଜ ସଂସ୍କାରକ ବା ସାମାଜିକ ବିପ୍ଳବୀ ଥିଲେ । କିନ୍ତୁ ସାମାଜିକ ଅନ୍ୟାୟ ଓ ଅତ୍ୟାଚାର ବିରୋଧରେ ଲଢ଼େଇ କରୁକରୁ ସେ ଅନୁଭବ କଲେ ଯେ ଦଳିତ ଓ ଅନ୍ୟାନ୍ୟ ଦୁର୍ବଳ ଶ୍ରେଣୀର ଲୋକମାନେ ନିଜର ଦାବି ହାସଲପାଇଁ ରାଜନୈତିକ ସଂଗଠନ ଗଢ଼ିବା ଉଚିତ । ରାଜନୈତିକ କ୍ଷମତା ହାସଲ କରି ନିଜକୁ ଦାସତ୍ୱରୁ ମୁକ୍ତ କରିବାକୁ ସେମାନେ ସରକାରଙ୍କ ଉପରେ ଯଥେଷ୍ଟ ପ୍ରଭାବ ପକାଇପାରିବେ । ଉଭୟ ସ୍ୱାଧୀନତା ପୂର୍ବରୁ ଓ ପରେ ସେ ଏହି ରଣକୌଶଳ ପ୍ରୟୋଗ କରିଥିଲେ । କିନ୍ତୁ ଏ ଦିଗରେ ସେ ବିଶେଷ କୃତକାର୍ଯ୍ୟ ହୋଇ ନ ଥିଲେ ।

ସ୍ୱାଧୀନତା ସଂଗ୍ରାମ ସମୟର ଭାରତୀୟ ଜାତୀୟ କଂଗ୍ରେସ ବହୁ ପରିମାଣରେ ଜନପ୍ରିୟତା ଅର୍ଜନ କରିଥିଲା । ଏପରିକି ଅନେକ ଅସ୍ପୃଶ୍ୟ ଲୋକ ମଧ୍ୟ କଂଗ୍ରେସକୁ ସମର୍ଥନ କରିଥିଲେ । ମୁସ୍‌ଲିମ୍ ଲିଗ୍ ପାକିସ୍ତାନ ରାଷ୍ଟ୍ର ଗଠନପାଇଁ ଆନ୍ଦୋଳନ କରି ଯୁକ୍ତି କରିଥିଲା ଯେ ମୁସ୍‌ଲିମ୍‌ମାନଙ୍କପାଇଁ କହିବାକୁ କଂଗ୍ରେସର ଅଧିକାର ନାହିଁ । କଂଗ୍ରେସ ଦଳରେ ମଧ୍ୟ ଅନେକ ମୁସଲମାନ ସମର୍ଥକ ଥିଲେ, କିନ୍ତୁ ବ୍ରିଟିଶ୍ ସରକାର ବ୍ରିଟିଶ ଭାରତର ଭବିଷ୍ୟତ୍ ବିଷୟରେ ମୁସ୍‌ଲିମ୍‌ଲିଗ୍ ସହିତ ଆଲୋଚନା କରିବାରୁ ମୁସ୍‌ଲିମ୍‌ଲିଗ୍ ପାକିସ୍ତାନ ସୃଷ୍ଟିପାଇଁ ଦାବି କରିବାକୁ ପ୍ରୋତ୍ସାହିତ ହୋଇଥିଲା । ଏଇ ପରିପ୍ରେକ୍ଷୀରେ ଆମ୍ବେଦକର ଦଳିତମାନଙ୍କର ଏକ ସ୍ୱତନ୍ତ୍ର ସଂଗଠନ ଗଠନ କରି ତାହା ଜରିଆରେ ସେମାନଙ୍କୁ ଏକ ସ୍ୱତନ୍ତ୍ର ରାଜନୈତିକ ପରିଚୟ (Identity) ଦେବାକୁ ଚେଷ୍ଟା କରିଥିଲେ । ତାଙ୍କର ଆଶା ଥିଲା ଯେ, ଏହି ସଂଗଠନ ଉଭୟ କଂଗ୍ରେସ ଓ ମୁସ୍‌ଲିମ୍‌ଲିଗ୍‌ଠାରୁ ଦୂରତ୍ୱ ରଖି ବ୍ରିଟିଶ ସରକାର ଉପରେ ଯଥେଷ୍ଟ ପ୍ରଭାବ ପକାଇପାରିବ ।

ଆମ୍ବେଦକର ନିଜେ ଜଣେ ମାହାର ଥିଲେ ଓ ବମ୍ବେ ପ୍ରେସିଡେନ୍‌ସିର ମାହାରମାନଙ୍କ ଉପରେ ତାଙ୍କର ବିଶେଷ ପ୍ରଭାବ ଥିଲା । କିନ୍ତୁ ଭାରତର ଅନ୍ୟାନ୍ୟ ଅଞ୍ଚଳର ଅସ୍ପୃଶ୍ୟମାନଙ୍କ ଭିତରେ ସିଏ ସେତେ ଜଣାଶୁଣା ନ ଥିଲେ । ୧୯୩୭ ମସିହାରେ ଅନୁଷ୍ଠିତ ପ୍ରାଦେଶିକ ଆସେମ୍ବ୍ଲି ନିର୍ବାଚନ ଓ ସ୍ୱାଧୀନତା ପରବର୍ତ୍ତୀ ପ୍ରଥମ ସାଧାରଣ ନିର୍ବାଚନରେ

ଏହା ପ୍ରମାଣ ହୋଇଗଲା ଯେ ବମ୍ବେ ପ୍ରେସିଡେନ୍‌ସିର ମାହାରମାନଙ୍କ ଭିତରେ ଆମ୍ବେଦକରଙ୍କର ପ୍ରଭାବ ସୀମାବଦ୍ଧ ଥିଲା; କିନ୍ତୁ ଅନ୍ୟାନ୍ୟ ପ୍ରଦେଶର ଦଳିତମାନଙ୍କ ଉପରେ ତାଙ୍କର ପ୍ରଭାବ ବିଶେଷ କିଛି ନ ଥିଲା । ନିର୍ବାଚନ ରାଜନୀତିରେ ତାଙ୍କର ବିଫଳତା ପରେ ତାଙ୍କର ହୃଦବୋଧ ହୋଇଥିଲା ଯେ ଦଳିତମାନଙ୍କର ସାମାଜିକ ମୁକ୍ତି ରାଜନୀତି ମାଧ୍ୟମରେ ନ ହୋଇ ଧର୍ମ ମାଧ୍ୟମରେ ସଂଭବ ହୋଇପାରିବ । ସେ ତାଙ୍କର ଅନୁଗାମୀମାନଙ୍କୁ ହିନ୍ଦୁଧର୍ମ ଛାଡ଼ି ବୌଦ୍ଧଧର୍ମ ଗ୍ରହଣ କରିବାକୁ ପରାମର୍ଶ ଦେଇଥିଲେ, କାରଣ ବୌଦ୍ଧଧର୍ମରେ ଜାତିଗତ ଅସମାନତା ଏବଂ ଅତ୍ୟାଚାର ନାହିଁ ବୋଲି ସେ ଅନୁଭବ କରିଥିଲେ ।

ବ୍ରିଟିଶ ଶାସନରୁ ମୁକ୍ତି ପାଇବାପାଇଁ ଚାଲିଥିବା ସ୍ୱାଧୀନତା ସଂଗ୍ରାମ ବିଷୟରେ ସେ ବିଶେଷ ଆଗ୍ରହୀ ନ ଥିଲେ । ତାଙ୍କର ଭୟ ଥିଲା ଯେ ସ୍ୱାଧୀନତା ପରେ କଂଗ୍ରେସରେ ଆଧିପତ୍ୟ ବିସ୍ତାର କରିଥିବା ଉଚ୍ଚଜାତିର ଲୋକମାନଙ୍କ ହାତକୁ କ୍ଷମତା ଚାଲିଯିବ ଓ ସେମାନେ ପୂର୍ବଭଳି ଅସ୍ପୃଶ୍ୟମାନଙ୍କୁ ଶୋଷଣ ଓ ଅତ୍ୟାଚାର କରିବେ । ସେ ଅନୁଭବ କରିଥିଲେ ଯେ ବ୍ରିଟିଶ ସରକାର ଭାରତ ଛାଡ଼ିଲେ ବି ଅସ୍ପୃଶ୍ୟମାନେ ପୂର୍ବଭଳି 'ଦାସ' ହୋଇ ରହିବେ । ତାଙ୍କ ଦୃଷ୍ଟିରେ ସମାଜର ସଦସ୍ୟମାନଙ୍କ ମଧ୍ୟରେ ଥିବା ବଂଶଗତ ବଂଧନ ବିଷୟରେ ସଚେତନତା ହେଉଛି ଜାତୀୟତାବାଦ । ଜାତୀୟତାବାଦ ହେଉଛି ଏକ "ସାମାଜିକ ଭ୍ରାତୃତ୍ୱ" । ସେ ବିଶ୍ୱାସ କରି ନ ଥିଲେ ଯେ ଭାରତୀୟ ସମାଜରେ ଏ ପ୍ରକାର ବନ୍ଧନ ବା ଭ୍ରାତୃଭାବ ଥିଲା । ତେଣୁ ସେ ରାଜନୈତିକ ମୁକ୍ତି ଦାବି ନ କରି ସାମାଜିକ ମୁକ୍ତିପାଇଁ ସଂଗ୍ରାମ କରିଥିଲେ । ସେ ଯୁକ୍ତି କରିଥିଲେ ଯେ ଭାରତରେ ଜାତି ବୈଷମ୍ୟ ଥିବା ପର୍ଯ୍ୟନ୍ତ ଜାତୀୟତାବାଦ ବିଷୟରେ କହିବା ଅର୍ଥହୀନ । ତାଙ୍କ ମତରେ, ବହିଃ ଦାସତ୍ୱ ତୁଳନାରେ ଅଭ୍ୟନ୍ତରୀଣ ଦାସତ୍ୱ ଅଧିକ ବିପଜ୍ଜନକ । ସେ ଯୁକ୍ତି କରିଥିଲେ ଯେ, ଲୋକମାନେ ବାସ୍ତବରେ ସ୍ୱାଧୀନ ନ ହେବା ପର୍ଯ୍ୟନ୍ତ ଜାତୀୟତାବାଦ କେବଳ ଅଭ୍ୟନ୍ତରୀଣ ଦାସତ୍ୱ; ଗୋତି ଶ୍ରମିକ ପ୍ରଥା ଏବଂ ଦଳିତ ଓ ଅନ୍ୟାନ୍ୟ ଦୁର୍ବଳ ଶ୍ରେଣୀର ଲୋକମାନଙ୍କ ଉପରେ ସଂଗଠିତ ଅତ୍ୟାଚାର ଚାଲୁ ରଖିବାପାଇଁ ଏକ ଅସ୍ତ୍ର ହେବ । ଦଳିତମାନେ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେବା ବିପକ୍ଷରେ ସେ ଥିଲେ, କାରଣ ସେ ନିଶ୍ଚିତ ଥିଲେ ଯେ ସ୍ୱାଧୀନତା ସେମାନଙ୍କପାଇଁ ସମାନତା ଓ ନ୍ୟାୟ ଆଣିପାରିବ ନାହିଁ । ସେ ଉଦ୍‌ବେଗ ପ୍ରକାଶ କରିଥିଲେ ଯେ, ଭାରତ ସ୍ୱାଧୀନତା ପାଇଲେ ବି ଲୋକମାନେ ସ୍ୱାଧୀନ ନ ହୋଇପାରନ୍ତି । ତାଙ୍କର କଂଗ୍ରେସ ଦଳ ଅପେକ୍ଷା ବ୍ରିଟିଶ୍ ସରକାର ଉପରେ ଅଧିକ ଆସ୍ଥା ଥିଲା, କାରଣ କଂଗ୍ରେସ ଦଳର ନେତୃତ୍ୱରେ ଥିବା ଅନେକ ଲୋକ ଅସ୍ପୃଶ୍ୟମାନଙ୍କୁ ଶୋଷଣ ଓ ଅତ୍ୟାଚାର କରୁଥିଲେ ।

**ଆଇନ୍ ଓ ଗଣତନ୍ତ୍ର**

ଗଣତନ୍ତ୍ରରେ ସଂଖ୍ୟାଗରିଷ୍ଠ ଦଳ ବା ଗୋଷ୍ଠୀ ସରକାର ଗଢ଼ିବ । କିନ୍ତୁ ସଂଖ୍ୟାଲଘୁ ଦଳ ବା ଗୋଷ୍ଠୀ ବା ସଭ୍ୟମାନଙ୍କ ଉପରେ ଏହା ନିଜର ମତ ବା କାର୍ଯ୍ୟକ୍ରମ ଲଦି ଦେବା ଉଚିତ ନୁହେଁ । ଏପରି ବାତାବରଣ ସୃଷ୍ଟି ହେବା ଉଚିତ ନୁହେଁ ଯେଉଁଥିରେ ସଂଖ୍ୟାଲଘୁ ଭୟଭୀତ ବା ନିଃସଂଗ ଅନୁଭବ କରିବେ । ନିଜକୁ ପ୍ରକାଶ କରିବାକୁ ଓ ଦୁଃଖଦୁର୍ଦ୍ଦଶା ଜଣାଇବାକୁ ଏହାକୁ ସୁଯୋଗ ମିଳିବା ଉଚିତ । ସଂଖ୍ୟାଗରିଷ୍ଠ ଗୋଷ୍ଠୀ ସଂଖ୍ୟାଲଘୁ ଗୋଷ୍ଠୀକୁ ଉପେକ୍ଷା ଓ ଅସମ୍ମାନ କଲେ ଗଣତନ୍ତ୍ରର କ୍ଷତି ହୋଇଥାଏ ।

ସଂଖ୍ୟାଗରିଷ୍ଠ ଓ ଆଧିପତ୍ୟଶାଳୀ ଗୋଷ୍ଠୀ ଓ ସଂପ୍ରଦାୟ ଉପରେ ଆମ୍ବେଦକରଙ୍କର ସନ୍ଦେହ ଥିବାରୁ ସେମାନଙ୍କ କଥା ଉପରେ ତାଙ୍କର ବିଶ୍ୱାସ ନ ଥିଲା । ବ୍ୟକ୍ତି, ବିଶେଷତଃ ଦଳିତ ଓ ଦୁର୍ବଳ ଶ୍ରେଣୀର ସଭ୍ୟମାନେ, ସାମ୍ବିଧାନିକ ସୁରକ୍ଷା ବିନା ସୁରକ୍ଷିତ ନୁହନ୍ତି ବୋଲି ତାଙ୍କର ମତ ଥିଲା । ତେଣୁ ସମ୍ବିଧାନରେ ବ୍ୟକ୍ତିମାନଙ୍କର ଅଧିକାର ସନ୍ନିବେଶିତ ହେଉ ବୋଲି ସେ ଯୁକ୍ତି କରିଥିଲେ ।

ଆମ୍ବେଦକର ଜୋର୍ ଦେଇ କହିଥିଲେ ଯେ, ଆଇନ୍ ସମାଜର ସମସ୍ତ ସଭ୍ୟଙ୍କୁ ସମାନ ଭାବରେ ଗ୍ରହଣ କରିବା ଉଚିତ । ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ଆଇନ୍ ଓ ଶାସନ ଆଖିରେ ସମାନ । ଆଇନ୍ ମଣିଷ ତିଆରି କରି ନାହିଁ, ବରଂ ମଣିଷ ଆଇନ୍ ତିଆରି କରିଛି । ମଣିଷକୁ ଅତ୍ୟାଚାର ଓ ବିଦ୍ୱେଷରୁ ରକ୍ଷା କରିବା, ତାକୁ ନ୍ୟାୟ ଦେବା ଆଇନ୍‌ର କାର୍ଯ୍ୟ । ଆମ୍ବେଦକର ପୁନର୍ବାର ଯୁକ୍ତି କରିଛନ୍ତି ଯେ ରାଷ୍ଟ୍ର ଆଇନ୍‌ଦ୍ୱାରା ଶାସିତ ହେଲେହେଁ ଆଇନ୍‌ର ସାହାଯ୍ୟରେ ଶାସନ କରିଥାଏ । ଏଣୁ ରାଷ୍ଟ୍ରରେ ସମତା ଓ ନ୍ୟାୟ ପ୍ରତିଷ୍ଠା କରିବାରେ ଆଇନ୍‌ର ଏକ ବିଶିଷ୍ଟ ଭୂମିକା ରହିଛି ।

ଆଇନ୍‌ର ଭୂମିକା ଉପରେ ଗୁରୁତ୍ୱ ଦେବା ସଂଗେସଂଗେ ଆମ୍ବେଦକର ସମାଜରେ ନୈତିକତାର ଗୁରୁତ୍ୱ ସପକ୍ଷରେ ମତ ଦେଇଥିଲେ । ଅଧିକାର ସୁରକ୍ଷାପାଇଁ ଆଇନ୍‌ର ଆବଶ୍ୟକତା ଅଛି, କିନ୍ତୁ ଆଇନ୍ ଏକାକୀ ଏହା କରିପାରିବ ନାହିଁ । ଆଇନ୍ ବ୍ୟତୀତ ସମାଜର ସାମାଜିକ ଓ ନୈତିକ ବିବେକୀ ବ୍ୟକ୍ତି ଅଧିକାରକୁ ସୁରକ୍ଷା ଦେବାରେ ସାହାଯ୍ୟ କରିପାରିବ ।

ଆମ୍ବେଦକର ଭାରତର ଅନେକ ଅସ୍ପୃଶ୍ୟମାନଙ୍କର ନେତା ଥିଲେ । ଆଜି ମଧ୍ୟ ଭାରତର, ବିଶେଷତଃ ମହାରାଷ୍ଟ୍ର ଓ ଉତ୍ତର ପ୍ରଦେଶର ଅନେକ ଦଳିତ ତାଙ୍କୁ ସେମାନଙ୍କର ଆଦର୍ଶ ନେତାରୂପେ ସମ୍ମାନ ଦେଉଛନ୍ତି । ସେମାନେ ବସ୍ତୁତଃ ତାଙ୍କୁ ପୂଜା କରନ୍ତି । ତାଙ୍କ ନାମ ଧରି ଭୋଟ ମଗାଯାଉଛି । କିନ୍ତୁ ଆମ୍ବେଦକର ନିଜେ 'ବୀରପୂଜା' ର ବିରୋଧୀ ଥିଲେ । ସେ ଏହାକୁ ଗଣତନ୍ତ୍ରର ଏକ ପ୍ରତିବନ୍ଧକ ବୋଲି ଭାବୁଥିଲେ । ତାଙ୍କ ମତରେ, କୌଣସି ନେତାଙ୍କର ଚୁମ୍ବକୀୟ ବ୍ୟକ୍ତିତ୍ୱ ଅପେକ୍ଷା ସ୍ୱାତନ୍ତ୍ର୍ୟ, ସମତା ଓ ଭ୍ରାତୃଭାବ ଭଳି ସାମାଜିକ ନ୍ୟାୟର ନୀତି ଅଧିକ ଗୁରୁତ୍ୱପୂର୍ଣ୍ଣ ଅଟେ ।

## ପ୍ରତିରୋଧ ତତ୍ତ୍ୱ

ସମାଜର ପ୍ରତିପତ୍ତିଶାଳୀ ଓ ସୁବିଧାପ୍ରାପ୍ତ ଗୋଷ୍ଠୀଗୁଡ଼ିକ ନିଜେ ସେମାନଙ୍କର ଅବୈଧ ସ୍ୱାର୍ଥ ତ୍ୟାଗ କରିବେ ନାହିଁ, ଏହା ଥିଲା ଆମ୍ବେଦକରଙ୍କର ଭୟ । ତେଣୁ ସେ ସେମାନଙ୍କୁ ପ୍ରତିରୋଧ କରିବାକୁ ଯୁକ୍ତି କରିଥିଲେ । ସେ ଅସ୍ପୃଶ୍ୟ ଓ ଅନ୍ୟାନ୍ୟ ଅତ୍ୟାଚାରିତ ଗୋଷ୍ଠୀଗୁଡ଼ିକୁ ଅନ୍ୟାୟ ଓ ଅତ୍ୟାଚାର ବିରୋଧରେ ଲଢ଼ାଇ କରିବାକୁ ଆହ୍ୱାନ ଦେଇଥିଲେ । ବ୍ରିଟିଶ୍ ଶାସନ ସମୟରେ ସେ ଚାପ ରାଜନୀତି ସମର୍ଥନ କରିଥିଲେ । ସେ ଦଳିତମାନଙ୍କୁ ସର୍ବସାଧାରଣ ମନ୍ଦିର ଓ ପୋଖରୀରେ ଶାନ୍ତିପୂର୍ଣ୍ଣ ଉପାୟରେ ପ୍ରବେଶ କରିବାକୁ ଏବଂ ନିଜେ ଏକ ଶକ୍ତିଶାଳୀ ଚାପ ଗୋଷ୍ଠୀରୂପେ ସଂଗଠିତ ହୋଇ ବ୍ରିଟିଶ ସରକାରଙ୍କ ଉପରେ ନିଜର ଲକ୍ଷ୍ୟ ସାଧନପାଇଁ ଚାପ ପ୍ରୟୋଗ କରିବାକୁ ଆହ୍ୱାନ ଦେଇଥିଲେ । ସେ ଦଳିତମାନଙ୍କୁ ପରାମର୍ଶ ଦେଇଥିଲେ ସେମାନଙ୍କର ଅତ୍ୟାଚାରୀମାନଙ୍କୁ ମୁକାବିଲା କରିବାକୁ, କିନ୍ତୁ ସେମାନଙ୍କର ମୁକ୍ତିପାଇଁ ମୁକାବିଲା ଏକ ମାତ୍ର ରାସ୍ତା ନ ଥିଲା । ସେ ମଧ୍ୟ ଅନ୍ୟମାନଙ୍କ ସହିତ ମିଳିମିଶି କାମ କରିବାକୁ ପରାମର୍ଶ ଦେଇଥିଲେ । ତାଙ୍କର ରଣନୀତି ଥିଲା ମୁକାବିଲା ଓ ମିଳିମିଶି କାମ କରିବା । ସାଧାରଣରେ, ସେ ହିଂସାର ବିରୋଧୀ ଥିଲେ । କିନ୍ତୁ ଅନ୍ୟାୟ ଓ ଅତ୍ୟାଚାର ବିରୋଧୀ ଲଢ଼ାଇରେ ହିଂସା ପ୍ରୟୋଗର ଆବଶ୍ୟକତାକୁ ସେ ସମ୍ପୂର୍ଣ୍ଣରୂପେ ଅସ୍ୱୀକାର କରି ନ ଥିଲେ । ତାଙ୍କ ଆଭିମୁଖ୍ୟରେ ସେ ଅନମନୀୟ ନ ଥିଲେ । ଲକ୍ଷ୍ୟ ଏବଂ ସମୟ ଓ ପରିସ୍ଥିତିକୁ ଆଖିରେ ରଖି ପ୍ରତିରୋଧର ରଣକୌଶଳ ନିର୍ଣ୍ଣୟ ହେବା ଉଚିତ ବୋଲି ଆମ୍ବେଦକର ମତ ଦେଇଥିଲେ । ଆମ୍ବେଦକର ଜଣେ ସାମାଜିକ ବିପ୍ଳବୀ ଥିଲେ, କିନ୍ତୁ ରାଜନୀତିରେ ସେ ବାସ୍ତବବାଦୀ ଥିଲେ । 'ଚାପ ରାଜନୀତି' ଓ 'ହିଂସା ରାଜନୀତି' - ଏ ଦୁଇ ରାସ୍ତା ମଝିରେ ସେ ଏକ ମଧ୍ୟମ ରାସ୍ତାର ସନ୍ଧାନୀ ଥିଲେ ।

## ଉପସଂହାର

ଆମ୍ବେଦକର ଜଣେ ଉଚ୍ଚାଭିଳାଷୀ ତଥା ବିପ୍ଳବୀ ଥିଲେ । ତାଙ୍କର ସ୍ୱପ୍ନ ଥିଲା ଏକ ନୂତନ ସାମାଜିକ ବ୍ୟବସ୍ଥା ଯେଉଁଥିରେ ସ୍ୱାତନ୍ତ୍ର୍ୟ, ସମତା ଓ ଭ୍ରାତୃଭାବ ଥିବ ଏବଂ ବ୍ୟକ୍ତି ଜାତି ଓ ଧର୍ମ ନିର୍ବିଶେଷରେ ମର୍ଯ୍ୟାଦା ଓ ନ୍ୟାୟ ପାଇବ । ସେ ସ୍ୱପ୍ନ ଦେଖିଥିଲେ ସମତା ଓ ମାନବିକତା ଉପରେ ଆଧାରିତ ଏବଂ ଜାତିପ୍ରଥାମୁକ୍ତ ଏକ ସମାଜ । ଏପରି ଏକ ସମାଜ ପ୍ରତିଷ୍ଠା କରିବାକୁ ସେ ଏକପ୍ରକାର ଧର୍ମଯୁଦ୍ଧ ଆରମ୍ଭ କରିଥିଲେ । ଏହି ଲକ୍ଷ୍ୟ ସିଦ୍ଧିପାଇଁ ସେ ଅକ୍ଳାନ୍ତ ପରିଶ୍ରମ କରିଥିଲେ । ଅସ୍ପୃଶ୍ୟମାନଙ୍କର ଅପମାନ ଓ ଯନ୍ତ୍ରଣା ତାଙ୍କୁ ଗଭୀର ଆଘାତ ଦେଇଥିଲା । ସେମାନଙ୍କୁ ଦାସତ୍ୱର ବନ୍ଧନରୁ ମୁକ୍ତ କରିବାକୁ ସେ ଏକ ଗଣଆନ୍ଦୋଳନର ନେତୃତ୍ୱ ନେଇଥିଲେ ।

ତାଙ୍କର ପ୍ରଚଣ୍ଡ ମନୋବଳ ଥିଲା । ସାମାଜିକ ସାମ୍ରାଜ୍ୟବାଦ ବିରୋଧରେ ସେ ଚଳାଇଥିବା ଆନ୍ଦୋଳନକୁ ଯେଉଁମାନେ ବିରୋଧ କରିଥିଲେ, ଯେତେ ପ୍ରତାପଶାଳୀ ହେଲେ ବି ସେମାନଙ୍କୁ ମୁକାବିଲା କରିବାକୁ ସେ ଡରି ନ ଥିଲେ । ଗାନ୍ଧିଜୀ ଜନପ୍ରିୟତାର ଶୀର୍ଷରେ ପହଞ୍ଚିଥିବାବେଳେ ଦ୍ୱିତୀୟ ଗୋଲ୍ ଟେବୁଲ୍ ବୈଠକରେ ଆମ୍ବେଦକର ତାଙ୍କୁ ମୁକାବିଲା କରିଥିଲେ । ସେ କେବଳ ଜାତିପ୍ରଥାକୁ ଆକ୍ରମଣ କରି ନ ଥିଲେ । ହିନ୍ଦୁଧର୍ମର ସମର୍ଥନ ପାଇ ସବର୍ଣ୍ଣ ହିନ୍ଦୁମାନେ ଅସ୍ପୃଶ୍ୟମାନଙ୍କ ଉପରେ ଅତ୍ୟାଚାର କରୁଥିବାରୁ ସେ ହିନ୍ଦୁଧର୍ମର ଆଦର୍ଶବାଦକୁ ଆଘାତ କରିଥିଲେ ।

ଉଚ୍ଚ ଜାତିରେ ଜନ୍ମ ହୋଇଥିବା କେତେକ ସମାଲୋଚକ ଆମ୍ବେଦକରଙ୍କୁ ଜାତିବାଦୀ ରୂପେ ଚିତ୍ରଣ କରିଛନ୍ତି, କିନ୍ତୁ ଏ ସମାଲୋଚନା ଠିକ୍ ନ ଥିଲା । ଏହା ସତ୍ୟ ଯେ, ସେ ଅସ୍ପୃଶ୍ୟମାନଙ୍କ ଦୁର୍ଦ୍ଦଶା ଓ ଯନ୍ତ୍ରଣାଦ୍ୱାରା ବ୍ୟଥିତ ହୋଇଥିଲେ । ଭାରତୀୟ ସମ୍ବିଧାନ ଅସ୍ପୃଶ୍ୟତାଙ୍କୁ ଉଚ୍ଛେଦ କରିବାରେ ସହାୟକ, କିନ୍ତୁ ଆଜି ମଧ୍ୟ ଦଳିତମାନେ, ବିଶେଷତଃ ଉତ୍ତର ଭାରତର ଦଳିତମାନେ ବହୁ ପରିମାଣରେ ଅସ୍ପୃଶ୍ୟ ଭାବେ ପରିଚିତ ହେଉଛନ୍ତି ।

ଅସ୍ପୃଶ୍ୟମାନେ ଆମ୍ବେଦକରଙ୍କ ଆନ୍ଦୋଳନର କେନ୍ଦ୍ର ଥିଲେ । କିନ୍ତୁ ସେ ସମସ୍ତ ଗରିବ ଓ ଦୁର୍ବଳ ମଣିଷମାନଙ୍କର ବନ୍ଧୁ ଥିଲେ । ସେ ଶ୍ରମିକମାନଙ୍କ ସପକ୍ଷରେ ଲଢ଼ାଇ କରିଥିଲେ । ଆଧୁନିକ ଭାରତରେ ମହିଳାମାନଙ୍କ ମୁକ୍ତିପାଇଁ ଯେଉଁ କେତେ ଜଣ ନାରୀବାଦୀ ପ୍ରଥମେ ସ୍ୱର ଉତ୍ତୋଳନ କରିଥିଲେ, ଆମ୍ବେଦକର ସେମାନଙ୍କ ମଧ୍ୟରୁ ଅନ୍ୟତମ । ସେ ଥିଲେ ଜଣେ ଦାର୍ଶନିକ, ଧର୍ମଯୋଦ୍ଧା ଓ ସର୍ବୋପରି ମାନବବାଦୀ । ସାମାଜିକ ବିରୋଧାଭାସର ଦୂରୀକରଣପାଇଁ ସେ ଆନ୍ଦୋଳନ କରିଥିଲେ । ଏହି ବିରୋଧାଭାସ ବର୍ତ୍ତମାନ ବି ରହିଛି । ୧୯୪୯ ମସିହା ନଭେମ୍ବର ୨୫ ତାରିଖରେ ସେ କହିଥିଲେ, "୧୯୫୦ ମସିହା ଜାନୁୟାରୀ ୨୬ ତାରିଖରେ ଆମେ ଏକ ବିରୋଧାଭାସର ଜୀବନ ପଥରେ ପ୍ରବେଶ କରିବାକୁ ଯାଉଛେ । ରାଜନୈତିକ ଜୀବନରେ ଆମେ ସମତା ଲାଭ କରିବା, କିନ୍ତୁ ସାମାଜିକ ଓ ଅର୍ଥନୈତିକ ଜୀବନରେ ବୈଷମ୍ୟ ଲାଗି ରହିବ ।"

ଆମ୍ବେଦକର ଭାରତର "ସାଧାରଣ ଜନତା" ର ଜଣେ ବନ୍ଧୁ ତଥା ନେତା ଥିଲେ । "ଭଦ୍ର ଲୋକମାନଙ୍କର" ଭାରତ ବର୍ତ୍ତମାନ ବି ତାଙ୍କୁ ଗ୍ରହଣ କରିବାକୁ କୁଣ୍ଠିତ । ଭାରତରେ ଲାଗି ରହିଥିବା ଗଭୀର ବିରୋଧାଭାସର ଏହା ହେଉଛି ବାସ୍ତବ ପ୍ରତିଫଳନ ।

ସୌଜନ୍ୟ : ଡକ୍ଟର ଜୟକୃଷ୍ଣ ବରାଳ, *ଭାରତୀୟ ରାଜନୈତିକ ପରମ୍ପରା,* ୨୦୧୨, ନୂଆଦିଲ୍ଲୀ: ମ୍ୟାକ୍ ମିଲାନ୍ ।

# ବାବାସାହେବ ଆମ୍ବେଦକରଙ୍କ ଦୃଷ୍ଟିରେ ସମତା ଓ ସାମାଜିକ ନ୍ୟାୟ

ସୂର୍ଯ୍ୟନାରାୟଣ ମିଶ୍ର

ପୃଥିବୀ ଏପରି ଏକ ଗ୍ରହ ଯେଉଁଠାରେ ମାନବ ସମାଜ ଓ ଅନ୍ୟାନ୍ୟ ଜୀବଜଗତ ବିଦ୍ୟମାନ । ଏହି ପୃଥିବୀରେ ବହୁ ପ୍ରାଚୀନ ସଭ୍ୟତା ବସତି ସ୍ଥାପନ କରିଥିଲା । ତନ୍ମଧ୍ୟରୁ ଭାରତ ଏକ ପ୍ରାଚୀନ ସଭ୍ୟତା ହିସାବରେ ଅଦ୍ୟାବଧି ବିରାଜମାନ କରୁଅଛି । ଅନ୍ୟାନ୍ୟ ସଭ୍ୟତାଗୁଡ଼ିକ କାଳର କରାଳ ଗ୍ରାସରେ ବିଲୀନ ହୋଇ ଯାଇଛନ୍ତି । କୁହାଯାଏ, ସଭ୍ୟତାର ଅଗ୍ରଦୂତ ହିସାବରେ ମହାପୁରୁଷମାନେ ଜନ୍ମ ନେଇଥାନ୍ତି । ସେମାନଙ୍କର ସୁକୃତ ଫଳରେ ସଭ୍ୟତା ଆଗେଇ ଚାଲେ । ସେହି ଦୃଷ୍ଟିରୁ ଭାରତବର୍ଷରେ ବିଭିନ୍ନ ସମୟରେ ମହାପୁରୁଷମାନେ ଜନ୍ମଗ୍ରହଣ କରିଛନ୍ତି ଓ ସେମାନେ ଭାରତବର୍ଷକୁ ଏହି ପ୍ରାଚୀନ ସଭ୍ୟତାର ଗଣ୍ଡି ମଧ୍ୟରୁ ଆଧୁନିକ ସଭ୍ୟତାକୁ ନେଇ ଆସିଛନ୍ତି ।

ଭାରତର ଅଢ଼େଇ ହଜାର ବର୍ଷର ଲିଖିତ ଇତିହାସ ଅଛି । ବିଶେଷକରି ପ୍ରାକ୍ ବୈଦିକ କାଳରୁ ଆଜି ପର୍ଯ୍ୟନ୍ତ ବହୁ ଗ୍ରନ୍ଥ, କାବ୍ୟ, କବିତା ଓ ଲେଖନୀର ଚର୍ଚ୍ଚା ହୋଇ ଆସୁଅଛି । ରାଜନୀତି, ଅର୍ଥନୀତି, ଚିକିତ୍ସାଶାସ୍ତ୍ର ଓ ଗଣିତଶାସ୍ତ୍ରରେ ପାରଦର୍ଶିତା ଲାଭ କରିଥିବା ବିଶ୍ୱ ବନ୍ଦିତ ମହାପୁରୁଷମାନଙ୍କ ମଧ୍ୟରେ ଭାରତୀୟମାନେ ଆଗଧାଡ଼ିରେ ଥିଲେ । କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରଠାରୁ ଆରମ୍ଭ କରି ସାଂପ୍ରତିକ ବହୁ ରଚନାବଳୀ ଉପରେ ଗବେଷଣା ଆଜି ମଧ୍ୟ ଚାଲିଛି । ଆଧୁନିକ ଭାରତ ବର୍ଷରେ ମହାତ୍ମାଗାନ୍ଧୀ, ଅରବିନ୍ଦ ଘୋଷ, ଜବାହରଲାଲ ନେହେରୁ ଓ ବାବାସାହେବ ଭୀମରାଓ ଅମ୍ବେଦକର ସେମାନଙ୍କର କଥନ ଓ ଲେଖନ ମାଧ୍ୟମରେ ଆଧୁନିକ ମହାପୁରୁଷଙ୍କ ସ୍ଥାନ ଗ୍ରହଣ କରିଛନ୍ତି ।

ବୈଦିକ ସଭ୍ୟତାର ପରିବର୍ତ୍ତୀ କାଳରେ 'ଜାତି' ହିନ୍ଦୁ ସମାଜର ଏକ ପ୍ରମୁଖ ଉପାଦାନ ହୋଇଥିଲା । ଏହା ଫଳରେ ସାମାଜିକ ଅସମାନତା, କଠିନ ସାମାଜିକ ନିୟମାବଳୀ ଓ ସାମାଜିକ ବିଭାଜନ ବିଶ୍ୱପ୍ରସିଦ୍ଧ ଭାରତୀୟ ସଭ୍ୟତାକୁ ନିମ୍ନଗାମୀ କରିଥିଲା । ଉଚ୍ଚ ଜାତିର ଲୋକମାନେ ବହୁବିଧ ସୁବିଧାର ଅଧିକାରୀ ହୋଇ ଅନ୍ୟାନ୍ୟ ବର୍ଗ ବିଶେଷ କରି ଶୁଦ୍ରମାନେ ପ୍ରତ୍ୟେକ ଧରଣର ସୁବିଧା ଓ ସୁଯୋଗରୁ ବଞ୍ଚିତ ହେଉଥିଲେ । ବ୍ରିଟିଶମାନଙ୍କ ଆଗମନ ପର୍ଯ୍ୟନ୍ତ ଏ ଧରଣର ଅପ୍ରାକୃତିକ ସାମାଜିକ ଚଳଣୀ ଭାରତରେ ଚାଲିଥିଲା । ବ୍ରିଟିଶ ଶାସନ ସମୟରେ ଏ ଧରଣର ଜାତିପ୍ରଥା ଓ ତାହାର ଅନୈତିକ ଉପଯୋଗ ବହୁଳ ଭାବରେ

ଆଲୋଚନା ଓ ଆହ୍ୱାନର ସମ୍ମୁଖୀନ ହେଲା । ଅଭ୍ୟୁଦୟ ଯୁଗ ଏହି ଚିନ୍ତାଧାରାକୁ ଆହୁରି ଶକ୍ତ ଓ ଶାଣିତ କରିଥିଲା । ଫଳରେ ଗୁଡ଼ିଏ ସମାଜ ସଂସ୍କାର ଆନ୍ଦୋଳନ ମୁଣ୍ଡ ଟେକିଲା । ଏହି ଆନ୍ଦୋଳନରେ 'ଜାତି ଓ ଜାତିବାଦ'ର ପ୍ରାସଙ୍ଗିକତାକୁ ବହୁଳଭାବରେ ବିରୋଧ କରାଗଲା । ବିଶେଷକରି ରାମମୋହନଙ୍କ 'ବ୍ରାହ୍ମସମାଜ', ଦୟାନନ୍ଦଙ୍କ 'ଆର୍ଯ୍ୟସମାଜ', ବିବେକାନନ୍ଦଙ୍କ 'ରାମକୃଷ୍ଣ ମିଶନ' ଓ ରାଣାଡ଼େଙ୍କ 'ପ୍ରାର୍ଥନାସମାଜ' ଏବଂ ଜ୍ୟୋତିବା ଫୁଲେଙ୍କ 'ସତ୍ୟସୋଧକ ସମାଜ' ଏ ଧରଣର ଆଲୋଚନା ଓ ବିରୋଧକୁ ଅଗ୍ରଭାଗକୁ ନେଇ ଆସିଥିଲା । ଫୁଲେଙ୍କ ଆନ୍ଦୋଳନ ତତ୍କାଳୀନ ମହାରାଷ୍ଟ୍ରରେ ଜାତିପ୍ରଥା ଓ ଅସ୍ପୃଶ୍ୟତା ବିରୋଧରେ ପ୍ରବଳ ଜନ ସମର୍ଥନ ଲାଭ କରିଥିଲା । ଏହି ଭଳି ସମୟରେ ପୂର୍ବରୁ କୁହାଯାଇଥିବା ମହାପୁରୁଷମାନେ ଆଗ ପଛ ହୋଇ ଜନ୍ମ ହୋଇଥିଲେ । ସେମାନଙ୍କ ମଧ୍ୟରେ ବାବାସାହେବ ଭୀମରାଓ ଅମ୍ବେଦକର ଅନ୍ୟତମ । ସେ ଜାତିପ୍ରଥା ଓ ଅସ୍ପୃଶ୍ୟତାର ଶୀକାର ହୋଇଥିଲେ । ତେଣୁ ବାଲ୍ୟ କାଳରୁ ତାଙ୍କର ଅନୁଭୂତି ତାଙ୍କ ଚିନ୍ତାଧାରାକୁ ବିଦ୍ରୋହୀ ସଂସ୍କାରକ ଦିଗକୁ ନେଇ ଯାଇଥିଲା ।

ମହାରାଷ୍ଟ୍ରର ରତ୍ନଗିରି ଜିଲ୍ଲାର ଅମ୍ବାଭାଡେ ଗାଁରେ ଗୋଟିଏ ସକ୍‌ପାଲ ମାହାର ସଂପ୍ରଦାୟରେ ବାବାସାହେବ ଜଣେ ସାମରିକ କର୍ମଚାରୀଙ୍କ ସନ୍ତାନ ହିସାବରେ ଜନ୍ମ ଗ୍ରହଣ କରି ମାତ୍ର ଛଅ ବର୍ଷ ବୟସରେ ମାତା ଭୀମା ବାଇଙ୍କୁ ହରାଇଥିଲେ । ପିତା କବୀର ପନ୍ଥୀ ଓ ଭକ୍ତି ତତ୍ତ୍ୱର ପ୍ରଚାରକ ମଧ୍ୟ ଥିଲେ । ବାଲ୍ୟକାଳରେ ଅମ୍ବେଦକର ବହୁ ନିର୍ଯ୍ୟାତନାର ଶିକାର ହୋଇ ମାନସିକ ସ୍ତରରେ ଜାତିପ୍ରଥା ପ୍ରତି ଘୃଣାଭାବ ଆଣିଥିଲା । ବିଦ୍ୟାଳୟଠାରୁ ଆରମ୍ଭ କରି, ଗାଁ ପୋଖରୀ ଓ ଶଗଡ଼ିଆର ଆଚରଣ ଆଦି ତାଙ୍କୁ ବାଲ୍ୟାବସ୍ଥା ଓ କିଶୋର ଅବସ୍ଥାରେ ମ୍ରିୟମାଣ କରି ପକାଇ ଥିଲା । ସତାରାର ସରକାରୀ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ପଢୁଥିବା ସମୟରେ ସେ ଜଣେ ସଂସ୍କାର ଧର୍ମୀ ଶିକ୍ଷକଙ୍କଦ୍ୱାରା ବହୁ ଭାବରେ ଉତ୍ସାହିତ ଓ ପ୍ରଭାବିତ ହୋଇଥିଲେ । ମାହାର ପରିବାରରୁ ହାଇସ୍କୁଲ ପରୀକ୍ଷାରେ ଉନ୍ନୀତ ହେବା ତାଙ୍କ ଗ୍ରାମ ପ୍ରତି ଏକ ଗୌରବର କଥା ହୋଇଥିଲା । ସେ ସମୟରେ ବାଲ୍ୟ ବିବାହ ପ୍ରଥା ପ୍ରଚଳିତ ଥିବା ହେତୁ ସେ ନ ବର୍ଷିୟା ରମାବାଈଙ୍କୁ ବିବାହ କରିଥିଲେ ।

ବରୋଦା ମହାରାଜାଙ୍କ ଦୟାଳୁ ମନୋବୃତ୍ତି ଓ ଅମ୍ବେଦକରଙ୍କ ଶିକ୍ଷା ପ୍ରତି ଆଗ୍ରହ ତାଙ୍କୁ ଉଚ୍ଚଶିକ୍ଷା ଲାଭ ଆଡ଼କୁ ଟାଣିଲା । ସେ ଏଲଫିନ୍‌ଷ୍ଟୋନ୍ ମହାବିଦ୍ୟାଳୟରେ ପ୍ରବେଶ କଲେ । ତାଙ୍କୁ ଛାତ୍ର ବୃତ୍ତି ମିଳିଥିଲା । ମହାବିଦ୍ୟାଳୟର ପ୍ରାଧ୍ୟାପକ ମ୍ୟୁଲର ତାଙ୍କୁ ବହି ଓ ପୋଷାକ ପ୍ରଦାନ କରିଥିଲେ । ମାତ୍ର ତାଙ୍କ ଜାତି ତାଙ୍କୁ ହୀନ ମନ୍ୟତାର ଶିକାର ସଦା ସର୍ବଦା କରାଉଥିଲା । ସେଥିପ୍ରତି ସେ ଧ୍ୟାନ ନଦେଇ ପାଠପଢ଼ାରେ ସମୟ ବିତାଉ ଥିଲେ ।

୧୯୧୨ ମସିହାରେ ସେ ସ୍ନାତକ ଉପାଧି ହାସଲ କଲେ । ସେହି ସମୟରେ ତାଙ୍କ ପିତାଙ୍କ ଦେହାନ୍ତ ହୋଇଥିଲା ।

ପୁନର୍ବାର ବରୋଦା ମହାରାଜାଙ୍କ ସାହାଯ୍ୟ ପାଇ ସେ ଉଚ୍ଚଶିକ୍ଷାପାଇଁ ଆମେରିକାର କଲମ୍ବିଆ ବିଶ୍ୱବିଦ୍ୟାଳୟରେ ପ୍ରବେଶ କଲେ । ୧୯୧୫ ମସିହାରେ ସ୍ନାତକୋତ୍ତର ଉପାଧି ଓ ପରେ ପି.ଏଚ୍.ଡ଼ି. ଲାଭ କରିଥିଲେ । ତାଙ୍କ ସଂଦର୍ଭ ଥିଲା - National Dividend for India - A Historic and Analytical Study । ସେହି ସମୟରେ Prof. Goldenweierଙ୍କ ନୃତତ୍ତ୍ୱ ପାଠଚକ୍ରରେ "The Caste in India: their Mechanism, Genesis and Development" ସଂକ୍ରାନ୍ତରେ ଗୋଟିଏ ନିବନ୍ଧ ପାଠକରି ବହୁ ଉଚ୍ଚ ପ୍ରଶଂସିତ ହୋଇଥିଲେ । ତାଙ୍କର ପି.ଏଚ୍.ଡ଼ି. ସନ୍ଦର୍ଭଟି "The Evolution of Provincial Finance in British India" ଆକାରରେ ପ୍ରକାଶିତ ହୋଇଥିଲା ।

ଉଚ୍ଚତର ଗବେଷଣା ସାରି ସେ ବରୋଦା ରାଜ୍ୟରେ ଗୋଟିଏ ଉଚ୍ଚ ପଦବୀରେ ଯୋଗଦାନ କଲେ । ସେହି ସମୟରେ ଅସ୍ପୃଶ୍ୟତା ତାଙ୍କୁ ବିଭିନ୍ନ ଧରଣର ହଇରାଣ ହରକତ କରି ପକାଇଲା । ବାଧହୋଇ ସେ ବରୋଦାର ଉଚ୍ଚ ପଦବୀ ତ୍ୟାଗ କରି ବମ୍ବେର ସିଡ୍ରେନହାମ୍ ମହାବିଦ୍ୟାଳୟରେ ଅଧ୍ୟାପକ ଚାକିରିରେ ଯୋଗଦେଲେ । ସେଠାରେ ମଧ୍ୟ ତାଙ୍କୁ ସାମାଜିକ ବାସନ୍ଦର ସମ୍ମୁଖୀନ ହେବାକୁ ପଡ଼ିଲା । ବାଧ ହୋଇ ସେ ଲଣ୍ଡନରେ ଆଇନ ଶିକ୍ଷା ଲାଭ କରିବାକୁ ଚାଲିଗଲେ । ସେ ଏହି ପାଠପଢ଼ାପାଇଁ ତାଙ୍କ ସ୍ତ୍ରୀଙ୍କ ଗହଣା ବିକ୍ରୀ ଟଙ୍କାରେ ବିଦେଶ ଗଲେ ମାତ୍ର କାହାର ସାହାଯ୍ୟ ନେବାକୁ ଚାହିଁଲେ ନାହିଁ । ୧୯୨୧ ମସିହାରେ ଆଇନ ଉପାଧିପାଇଁ ପଞ୍ଜିକୃତ ହୋଇଥିବା ସମୟରେ ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ଅର୍ଥନୀତିରେ ଉପାଧ୍ୟୁତର ଡିଗ୍ରୀ ହାସଲ କଲେ । ତାଙ୍କର ନିବନ୍ଧ ଥିଲା - "Provincial Decentralisation of Imperial Finance in British India". ଆଇନ ଶିକ୍ଷା ଶେଷ କରି ସେ ୧୯୨୩ ମସିହାରେ ଭାରତ ଫେରି ଆସିଲେ । ତାଙ୍କର ଭାରତ ପ୍ରତ୍ୟାବର୍ତ୍ତନ ଓ ଅତୀତର ଲୋମହର୍ଷଣକାରୀ ଅନୁଭୂତି ତାଙ୍କୁ ଏକ ସାମାଜିକ ବିପ୍ଳବୀ କରିବାରେ ସାହାଯ୍ୟ କଲା । ଏତେ ଉଚ୍ଚଶିକ୍ଷା ଲାଭ କରି ଓ ବିଦେଶ ଭୂମିରେ ଯେଉଁଠି ସମାନତା ସ୍ପଷ୍ଟ ଭାବରେ ପ୍ରଚଳିତ ସେ ସୁଖଦ ଅନୁଭୂତି ତାଙ୍କୁ ସମାଜ ସଂସ୍କାର କରିବାରେ ବ୍ରତୀ କରାଇଲା । ସେ ପ୍ରବଚନ ମାଧ୍ୟମରେ ଏହା କରିବାକୁ ଆଗ୍ରହ ପ୍ରକାଶ କରି ନ ଥିଲେ । ବରଂ ସମାନତା ପ୍ରତି ଜନ ସଚେତନତା ସୃଷ୍ଟି କରିବାପାଇଁ ସେ ବଦ୍ଧ ପରିକର ଥିଲେ । ଏଥି ନିମନ୍ତେ ଆନ୍ଦୋଳନାତ୍ମକ ଦିଗଟିକୁ ସେ ଆବୋରି ନେଇଥିଲେ । ତାଙ୍କର ଶିକ୍ଷା ଓ ପରିବେଶ ତାଙ୍କୁ ଆନ୍ଦୋଳିତ କରିବାକୁ ବାଧ କଲା । ତାଙ୍କର ଶିକ୍ଷାଗତ ଅନୁଭୂତିରୁ ବାସ୍ତବତା, ସମାନତା, ଶିକ୍ଷାର ଗୁରୁତ୍ୱ ଓ ନମନୀୟ

ସଂସଦୀୟ ଗଣତାନ୍ତ୍ରିକ ବ୍ୟବସ୍ଥାପ୍ରତି ତାଙ୍କୁ ବିଶେଷ ଭାବରେ ଅନୁପ୍ରାଣୀତ କରାଇଥିଲା । ଫଳରେ ଏହାକୁ ଉଭୟ ଆଚରଣ ଓ ଉଚ୍ଚାରଣରେ ସେ ବ୍ୟବହାର କରିଥିଲେ । ସେ ସମାଜବାଦ ଚିନ୍ତାଧାରା ପ୍ରତି ଆକୃଷ୍ଟ ହୋଇ ନ ଥିଲେ । ତାଙ୍କ ଜୀବନାଦର୍ଶପାଇଁ ସେ ବୁଦ୍ଧ, କବୀର ଓ ମହାତ୍ମା ଜ୍ୟୋତିବା ଫୁଲେଙ୍କଦ୍ୱାରା ବିଶେଷ ପ୍ରଭାବିତ ହୋଇଥିଲେ । ବୁଦ୍ଧ ଓ କବୀର ତାଙ୍କର ମାନବୀୟ ସମାନତା ପ୍ରତି ପ୍ରତିବଦ୍ଧତା ଓ ତାତ୍ତ୍ୱିକ ବିଚାର ସୃଷ୍ଟିରେ ସାହାଯ୍ୟ କରିଥିଲେ । ଉଚ୍ଚଜାତିର ତାଡ଼ନା ବିରୁଦ୍ଧରେ ଆନ୍ଦୋଳନାତ୍ମକ ପଦକ୍ଷେପପାଇଁ ଜ୍ୟୋତିବା ଫୁଲେ ତାଙ୍କର ଆଦର୍ଶ ହୋଇଥିଲେ ।

ଫଳରେ ଏକ ସ୍ୱାଧୀନ, ସମାନତା ପର୍ଯ୍ୟବସିତ ଭ୍ରାତୃଭାବ ଥିବା ସମାଜ ସ୍ଥାପନା କରିବାକୁ ସେ ତାଙ୍କର ଜୀବନ ପଥକୁ ଶାଣିତ କରିବା ସହ ଶପଥ ନେଇଥିଲେ । ଜାତିପ୍ରଥା ବିରୋଧରେ ସଂଗ୍ରାମ କରିବାକୁ ସେ ସିଦ୍ଧାନ୍ତ ଗ୍ରହଣ କରିଥିଲେ । ସେଥିପାଇଁ ରାଜନୈତିକ ସ୍ୱାଧୀନତା ଅପେକ୍ଷା ସାମାଜିକ ପରିବର୍ତ୍ତନ ଉପରେ ସେ ବିଶେଷ ପ୍ରାଧାନ୍ୟ ଦେଇଥିଲେ । ସେ ଉଚ୍ଚ-ନୀଚ ଭେଦଭାବ ଥିବା ଜାତିପ୍ରଥା ଓ ଅସ୍ପୃଶ୍ୟ ଚିନ୍ତାଧାରା ରଖୁଥିବା ସମାଜଠାରୁ ରାଜନୈତିକ ଅଧିକାର ହାସଲ କରିବାକୁ ବଦ୍ଧ ପରିକର ହୋଇଥିଲେ । ସେଥିପାଇଁ ଉଭୟ ସମାଜ ଓ ରାଜନୀତି ତାଙ୍କର କର୍ମଭୂମି ହୋଇଗଲା ।

ସେହି ସମୟଠାରୁ ଏକ ନୂତନ ସାମାଜିକ ବ୍ୟବସ୍ଥା ସ୍ଥାପନା ନିମନ୍ତେ ସେ ଅହରହ ଉଦ୍ୟମ କରିଥିଲେ । ତାଙ୍କ ସାମାଜିକ-ରାଜନୈତିକ ଚିନ୍ତାଧାରାରେ ଜାତିପ୍ରଥା, ଅସ୍ପୃଶ୍ୟତା ଓ ମହିଳା ସମାଜ ପ୍ରମୁଖ ଭୂମିକା ନେଇଥିଲେ । ଗଭୀର ଅନୁଭୂତି ଓ ଉଚ୍ଚତର ଗବେଷଣା ପ୍ରସୂତ ଜ୍ଞାନ ଏଥିପାଇଁ ତାଙ୍କୁ ସହାୟତା ପ୍ରଦାନ କଲା । ତାଙ୍କର ବାସ୍ତବିକତା ଓ ଆଦର୍ଶବାଦ ଏଥିପାଇଁ ତାଙ୍କୁ ବିଶେଷ ଖୋରାକ ପ୍ରଦାନ କରିଥିଲା । ତେଣୁ ଭାରତରେ ଏଭଳି ଏକ ଗଣତନ୍ତ୍ର ସ୍ଥାପନାପାଇଁ ସେ ସଂଗ୍ରାମ କଲେ ଯେଉଁଠାରେ ସମାନତା ଓ ସାମାଜିକ ନ୍ୟାୟର ପ୍ରାବଲ୍ୟ ଥିବ । ସ୍ୱାଧୀନତା, ସମାନତା ଓ ଭ୍ରାତୃଭାବ ତାଙ୍କ ନୂତନ ସାମାଜିକ ପରିକଳ୍ପନାପାଇଁ ଆତ୍ମବିଶ୍ୱାସ ଜନ୍ମାଇଲା ଓ ଏହା ଭାରତୀୟ ସମ୍ବିଧାନର ମୂଳମନ୍ତ୍ର ହୋଇଗଲା ।

ଆମ୍ବେଦକରଙ୍କ ମତରେ ଗଣତନ୍ତ୍ର କେବଳ ଗୋଟିଏ ବ୍ୟବସ୍ଥାପକ ଚିନ୍ତାଧାରା ନୁହେଁ ଏହା ସମାଜରେ ଏକାଠି ରହିବା ଓ ପରସ୍ପର ପ୍ରତି ଶ୍ରଦ୍ଧା ତଥା ସମ୍ମାନ ପ୍ରକଟପାଇଁ ଏକ ବ୍ରତ ମଧ୍ୟ । ସେ କହିଥିଲେ - Democracy is not merely a form of government, it is primarily a mode of associated living of conjoint communicated experience. It is essentially an attitude of respect of reverence for fellowmen. In democracy there is free-

dom to choose one's profession. To talk of democracy and not to allow this freedom is to perpetuate slavery. Though equality in absolute sense is not possible but equal treatment of men is possible. Since Caste and Untouchability negate such idea, he demanded that the caste and untouchability in any form should be abolished.

ବାବାସାହେବ ଅମ୍ବେଦକର ସ୍ୱାଧୀନ ଭାରତରେ ଏକ ସୁସ୍ଥ ସମାଜ ଗଠନ କରିବାପାଇଁ ସମାନତା ଓ ସାମାଜିକ ନ୍ୟାୟ ପ୍ରତି ଗୁରୁତ୍ୱ ଦେଇ ଯେଉଁ ସମ୍ବିଧାନିକ ବ୍ୟବସ୍ଥା ପ୍ରଦାନରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ତାହା ଫଳରେ ଆମେ ବିଳମ୍ବରେ ହେଲେ ମଧ୍ୟ ତାଙ୍କର ଅଖଣ୍ଡ ଭାରତ ପ୍ରତି ପ୍ରତିବଦ୍ଧତାର ସ୍ୱର ଆଜି ଦେଖୁଛେ ।

# ଡକ୍ଟର ଆମ୍ବେଦକରଙ୍କ ରଚ଼ନାର ଦିଶା ଓ ସନ୍ଦେଶ

ରାଧାକାନ୍ତ ନାୟକ

ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଭାରତର ସାମାଜିକ ଅବସ୍ଥା ଥିଲା ଶୋଚନୀୟ । ସଭ୍ୟତା ନାମରେ କୁସଂସ୍କାର ଓ ଅନ୍ଧବିଶ୍ୱାସ ସମାଜରେ ଭରି ରହିଥିଲା । ଜାତିପ୍ରଥାର ପ୍ରଭାବରେ ଅଗଣିତ ଦଳିତ, ନିଷ୍ପେସିତ, ଅସ୍ପୃଶ୍ୟ ଜନତା ଅସନ୍ତୋଷର ଯନ୍ତ୍ରଣାରେ ଜର୍ଜରିତ ହେଉଥିଲେ । ସେମାନଙ୍କର ନୈତିକ ମେରୁଦଣ୍ଡ ଭାଙ୍ଗିବାକୁ ବସିଥିଲା । ହତାଶାର ଭାର ବହନ କରି ନପାରି କେତେକ ଅସ୍ପୃଶ୍ୟ ଧର୍ମାନ୍ତରିତ ହେବାକୁ ଆଗେଇ ଯାଇଥିଲେ । ମନୁଙ୍କଦ୍ୱାରା ସୃଷ୍ଟ ଜାତିପ୍ରଥା ଏକ ଅଭିଶାପରେ ପରିଣତ ହୋଇ ସାରିଥିଲା । ଏଭଳି ସ୍ଥିତିରେ ଭାରତରେ ଖ୍ରୀଷ୍ଟଧର୍ମ ପ୍ରଚାର କରୁଥିବା ଧର୍ମପ୍ରଚାରକଗଣ ଶିକ୍ଷା ଓ ଚିକିତ୍ସାଗତ ସେବା ଯୋଗାଇ ଦେଇ ଭାରତୀୟ ଅସ୍ପୃଶ୍ୟ ଓ ଦଳିତ ଜନତାପାଇଁ ଏକ ମହନୀୟକାର୍ଯ୍ୟ ସଂପାଦନ କରିଥିଲେ ।

ସାମାଜିକ, ରାଜନୈତିକ ଓ ଧର୍ମନୈତିକ ଦୃଷ୍ଟିରୁ ତତ୍‌କାଳୀନ ଭାରତୀୟ ସମାଜର ନିଛକ ଚିତ୍ର ଡକ୍ଟର ବାବାସାହେବ ଆମ୍ବେଦକର ତାଙ୍କ ପୁସ୍ତକଗୁଡ଼ିକରେ ଅଙ୍କନ କରିବାକୁ ଉଦ୍ୟମ କରିଛନ୍ତି ।

ଜନ୍ମକୁ ଆଧାର କରି ସୃଷ୍ଟି ହୋଇଥିବା ଜାତିପ୍ରଥା ଓ ତଦ୍‌ଜନିତ ବୈଷମ୍ୟଗୁଡ଼ିକର ଅପ୍ରାସଙ୍ଗିକତା ଉପରେ ଡଃ ଆମ୍ବେଦକରଙ୍କ ରଚ଼ନାରେ ବିଶଦ ଆଲୋଚନା କରାଯାଇଛି । ଭାରତୀୟ ସମ୍ବିଧାନ ନାଗରିକମାନଙ୍କୁ ମୌଳିକ ଅଧିକାର ପ୍ରଦାନ କରି ତାର କାର୍ଯ୍ୟକାରୀତାପାଇଁ ସାଧନ ସମୂହର ବ୍ୟବସ୍ଥା କରିଛନ୍ତି । ବ୍ୟକ୍ତିର ମର୍ଯ୍ୟଦାକୁ ସୁରକ୍ଷା ଦେବା ସାମାଜିକ ଓ ଅର୍ଥନୈତିକ ପ୍ରଗତିର ପ୍ରାଥମିକତା ବୋଲି କୁହାଯାଉଛି । ଭାରତର ସମ୍ବିଧାନ ସୃଷ୍ଟି କରିଥିବା ନୂତନ ସାମାଜିକ ଧାରା ଦୃଷ୍ଟିରୁ ଡକ୍ଟର ଆମ୍ବେଦକରଙ୍କ ରଚନାରେ ସମସାମୟିକ ସାମାଜିକ ସ୍ଥିତିର ଚିତ୍ର ଭରି ରହିଛି । ସାମାଜିକ ନ୍ୟାୟ ପ୍ରଦାନ ସଂପ୍ରତି ରାଷ୍ଟ୍ରର ଆଭିମୁଖ୍ୟ ହୋଇଛି । ଯଦିଓ ତାହା କେତେଦୂର କାର୍ଯ୍ୟକାରୀ ହେବ ବର୍ତ୍ତମାନ କହିହେଉ ନାହିଁ ।

ଭାରତୀୟ ଧର୍ମନୈତିକ ତଥା ସାମାଜିକ ଜୀବନ ଧାରା ସହସ୍ରସହସ୍ର ବର୍ଷ ଯାବତ୍ ଜନଜୀବନକୁ ପ୍ରଭାବିତ କରି ସଭ୍ୟତା ଓ ସଂସ୍କୃତିର ଯେଉଁ ନିର୍ଦ୍ଦିଷ୍ଟ ରୂପରେଖ ଗଠନ କରିଛି, ତାହାର ମୂଳ-ଉତ୍ସର ସନ୍ଧାନ କରାଯାଇଛି ବେଦ-ଉପନିଷଦ-ପୁରାଣ

ସାହିତ୍ୟରେ । ଉଇଲ୍‌ସନ୍, ମ୍ୟାକ୍ସମୁଲର ଆଦ ଉଉରୋପୀୟ ପଣ୍ଡିତଗଣ ପ୍ରାଚ୍ୟବିଦ୍ୟାର ଭୂୟସୀ ଅଧ୍ୟୟନ ମାଧ୍ୟମରେ ପ୍ରାଚୀନ ଭାରତୀୟ ଜୀବନ ଦର୍ଶନ ଓ ରୀତି ପଦ୍ଧତିର ଯେଭଳି ଅନୁସନ୍ଧାନ ଓ ଗବେଷଣା ପ୍ରସୂତ ମୂଲ୍ୟାୟନ କରିଛନ୍ତି, ଡଃ ଆମ୍ବେଦକର ସେହି ପନ୍ଥାକୁ ଆଶ୍ରୟ କରିଥିଲେ ହେଁ ଏ ସଂପର୍କରେ ତାଙ୍କର ନିଜସ୍ୱ ମନ୍ତବ୍ୟ ପ୍ରଦାନ ପୂର୍ବକ ସମଗ୍ର ବିଷୟଟିକୁ ସ୍ପଷ୍ଟତର କରିବା ସଙ୍ଗେସଙ୍ଗେ ଏଭଳି କେତେକ ପ୍ରଶ୍ନ ଉତ୍‌ଥାପନ କରିଛନ୍ତି ଯାହା ଯଥାର୍ଥ ଉତ୍ତରର ଅପେକ୍ଷା ରଖେ । ଧର୍ମ-ଜାତି-ବର୍ଣ୍ଣରେ ବିଭାଜିତ ମାନବ ଗୋଷ୍ଠୀ ପ୍ରତି ଡକ୍ଟର ଆମ୍ବେଦକରଙ୍କର ଏ ଆହ୍ୱାନ ସର୍ବକାଳୀନ । ପ୍ରାଚୀନ ଭାରତୀୟ ସାହିତ୍ୟ ସ୍ରଷ୍ଟା, ଦାର୍ଶନିକ ତଥା ଭାଗ୍ୟକାରଗଣ କାଳକ୍ରମେ ଯେଉଁ ମତ ଓ ମତାନ୍ତର ମାଧ୍ୟମରେ ସମାଜ ଜୀବନ ଓ ଜନଚେତନାକୁ ଆନ୍ଦୋଳିତ କରି ଆସିଛନ୍ତି ସେମାନଙ୍କର ଦୃଷ୍ଟିକୋଣକୁ ସମୀକ୍ଷା କରିବାରେ ଡଃ ଆମ୍ବେଦକର ପ୍ରଭୂତ ଶ୍ରମ ଓ ସାମର୍ଥ୍ୟର ପ୍ରତିପାଦନ କରିଛନ୍ତି । ବେଦ, ଉପନିଷଦ ଓ ପୁରାଣମାନଙ୍କରୁ ଆହରଣ କରିଥିବା ତଥ୍ୟ ଓ ସେଥିରୁ ଉଦ୍‌ଗତ ସତ୍ୟକୁ ଆଶ୍ରୟ କରି ସେ ପ୍ରଶ୍ନପରେ ପ୍ରଶ୍ନ ଉତ୍‌ଥାପନ କରିଛନ୍ତି । ତାହାକୁ ସେ ପ୍ରହେଳିକା ନାମରେ ଚିହ୍ନିତ କରନ୍ତି ।

ଆଶ୍ୱାସନାର ବିଷୟ - ଏବେ ସହରାଞ୍ଚଳରେ ଜାତିପ୍ରଥାର ପ୍ରଭାବ କ୍ରମଶଃ ହ୍ରାସ ପାଉଛି । କିନ୍ତୁ ଗ୍ରାମାଞ୍ଚଳରେ ତାହାର କୁପ୍ରଭାବ ଏବେ ବି ରହିଛି । ଏହି କୁସଂସ୍କାର ବିରୁଦ୍ଧରେ ସଂଗ୍ରାମ କରିବାପାଇଁ ଡକ୍ଟର ଆମ୍ବେଦକରଙ୍କ ନିବନ୍ଧଗୁଡ଼ିକ ନିଶ୍ଚୟ ଆମକୁ ଅନୁପ୍ରାଣିତ କରିବ ।

# ଜାଗିରି ପ୍ରଥାର ବିଲୋପ

ସର୍ବେଶ୍ୱର ଦାଶ

୧୮୭୪ ମସିହାରେ ବଂଶନୁଗତ ପଦ ଅଧିନିୟମ ଅନୁଯାୟୀ ମାହାରମାନଙ୍କୁ ବଂଶାନୁଗତ ଭାବରେ ସରକାରଙ୍କ ଅଧୀନରେ କେତେକ ତୁଚ୍ଛ କାର୍ଯ୍ୟ କରିବାକୁ ପଡୁଥିଲା । କୌଣସି କାରଣରୁ ଜଣେ ମାହାର କାର୍ଯ୍ୟରେ ଅନୁପସ୍ଥିତ ରହିଲେ, ତାହାର କୁଟୁମ୍ବର ଅନ୍ୟ ଜଣେ ବ୍ୟକ୍ତିକୁ ସେହି କାମ କରିବାକୁ ପଡୁଥିଲା । ଏହି କାମପାଇଁ ଜାଗିରି ସ୍ୱରୂପ ତାକୁ ଖଣ୍ଡିଏ ଜମି ମିଳୁଥିଲା । ଗ୍ରାମବାସୀମାନେ ତାଙ୍କୁ କିଛି ଶସ୍ୟ ଦେଉଥିଲେ ଏବଂ ସାମାନ୍ୟ କିଛି ଦରମା ମିଳୁଥିଲା । ଏହି ପ୍ରଥା ମାହାରମାନଙ୍କପାଇଁ ସଂପୂର୍ଣ୍ଣ ମର୍ଯ୍ୟାଦାହାନିକର ଥିଲା । ଆମ୍ବେଦକର ଏହି ପ୍ରଥାର ମୂଳୋତ୍ପାଟନ ଚାହିଁଥିଲେ । ସେ ନିଜର ଜାତିଭାଇମାନଙ୍କୁ ଜାଗିରି ଜମିର ଲୋଭ ତ୍ୟାଗ କରିବାକୁ ଏବଂ ସରକାରୀ ଚାକିରି ଛାଡ଼ିଦେବାକୁ ପ୍ରବର୍ତ୍ତାଇଲେ । ୧୯୨୮ ମସିହାରେ ଆମ୍ବେଦକର ବମ୍ବେ ବିଧାନସଭାରେ ୧୮୭୪ ମସିହାର ବଂଶାନୁଗତ ପଦ ଅଧିନିୟମର ସଂଶୋଧନପାଇଁ ଏକ ବିଧେୟକ ପେଶ୍ କଲେ । ଜାଗିରିଭୋଗୀ ମାହାରମାନଙ୍କୁ ଜାଗିରି ଜମିର ମାଲିକାନା ପୂରାପୂରି ଦେଇଦେବା ଏବଂ ସେମାନଙ୍କୁ ଚାକିରିରୁ ସମ୍ପୂର୍ଣ୍ଣ ମୁକ୍ତି ପ୍ରଦାନ କରିବା ଏହି ବିଧେୟକର ଉଦ୍ଦେଶ୍ୟ ଥିଲା । ଆମ୍ବେଦକରଙ୍କଦ୍ୱାରା ଆଗତ ଏହି ବିଧେୟକକୁ ପରୀକ୍ଷା କରି ରିପୋର୍ଟ ଦେବାପାଇଁ ଏକ ଯାଞ୍ଚ କମିଟି ହାତକୁ ଦିଆଗଲା । କିନ୍ତୁ ଉକ୍ତ କମିଟି ଏଥିରେ ଏତେ ପରିବର୍ତ୍ତନ କଲେ ଯେ, ତାହାର ମୂଳ ଉଦ୍ଦେଶ୍ୟ ସଂପୂର୍ଣ୍ଣ ବ୍ୟାହତ ହୋଇଗଲା । ତେଣୁ ଆମ୍ବେଦକର ଏହି ବିଧେୟକକୁ ପ୍ରତ୍ୟାହାର କରିନେଲେ ।

୧୯୩୭ ମସିହା ସେପ୍ଟେମ୍ବର ମାସରେ ଆମ୍ବେଦକର ବମ୍ବେ ବିଧାନସଭାର ପୁନା ଅଧିବେଶନରେ ମାହାରମାନଙ୍କ ଜାଗିରି ପ୍ରଥାର ମୂଳୋତ୍ପାଟନପାଇଁ ପୁଣି ଏକ ବିଧେୟକ ଆଗତ କଲେ । ସାମ୍ବିଧାନିକ ଓ ଆଇନ ଭିତ୍ତିରେ ମାହାରମାନଙ୍କ ଜାଗିରି ପ୍ରଥାର ସମାପ୍ତି ଘଟାଇବା ଏହି ବିଧେୟକର ଉଦ୍ଦେଶ୍ୟ ଥିଲା । କିନ୍ତୁ ସରକାରଙ୍କ ତରଫରୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଏଥିପାଇଁ ସଂଘର୍ଷ କରିବା ଅବାଞ୍ଛନୀୟ ହେବ ବୋଲି କୁହାଗଲା ।

୧୯୪୨ ମସିହାରେ ଆମ୍ବେଦକର ବଡ଼ଲାଟ୍‌ଙ୍କୁ କାର୍ଯ୍ୟକାରୀ ପରଷଦର ସଦସ୍ୟ ରୂପେ ନିଯୁକ୍ତି ପାଇଲେ । ସେତେବେଳେ ସେ ବିଚାରିଲେ ଯେ, ସଂଘର୍ଷ ପରିବର୍ତ୍ତେ ବଡ଼ଲାଟ୍‌ଙ୍କ କାର୍ଯ୍ୟକାରୀ ପରିଷଦର ସଭ୍ୟ ରହିବାଦ୍ୱାରା ସେ ନିଜ ସଂପ୍ରଦାୟର ଅଧିକ ଉପକାର

କରିପାରିବେ; ତେଣୁ ସେ ଆନ୍ଦୋଳନାତ୍ମକ ପନ୍ଥା ପରିହାର କଲେ । ସମୟକ୍ରମେ ଏହି ଉଦ୍ଦେଶ୍ୟ ସାଧନପାଇଁ ଆମ୍ବେଦକର ବହୁ ଉଦ୍ୟମ କରିଚାଲିଥିଲେ । ଶେଷରେ ୧୯୫୯ ମସିହାରେ ମାହାରମାନଙ୍କ ଜାଗିରି ପ୍ରଥାର ସମାପ୍ତି ଘଟିଲା । ଆମ୍ବେଦକର ଆରମ୍ଭ କରିଥିବା ଆନ୍ଦୋଳନ ସଫଳ ହେଲା; କିନ୍ତୁ ଏହା ଦେଖିବାପାଇଁ ଆମ୍ବେଦକର ସେତେବେଳକୁ ଆଉ ଇହଧାମରେ ନଥିଲେ ।

ସୌଜନ୍ୟ : ସର୍ବେଶ୍ୱର ଦାଶ, *ବାବାସାହେବ ଆମ୍ବେଦକର*, ୨୦୧୨, କଟକ: କିଶୋର ସାହିତ୍ୟ ମନ୍ଦିର ।

# ଆଧୁନିକ ଭାରତ ନିର୍ମାଣରେ ବାବାସାହେବ ଆମ୍ବେଦକର

ବସନ୍ତକୁମାର ମଲିକ

ପ୍ରାଗ୍ ସ୍ୱାଧୀନତା ଓ ସ୍ୱାଧୀନୋତ୍ତର କାଳରେ ଯେଉଁ କେତେ ଜଣ ବରପୁତ୍ର ଭାରତବର୍ଷଙ୍କୁ ଏକ ରାଷ୍ଟ୍ର ରୂପ ଗଠନ ଓ ଏହାର ଆଧୁନିକୀକରଣରେ ନିଜକୁ ଉତ୍ସର୍ଗ କରିଥିଲେ, ସେମାନଙ୍କ ମଧ୍ୟରେ ଡକ୍ଟର ବାବାସାହେବ ଭୀମରାଓ ରାମ୍‌ଜୀ ଆମ୍ବେଦ୍‌କର ଅନ୍ୟତମ । କୁସଂସ୍କାର ଓ ବୈଷମ୍ୟମୂଳକ ସମାଜକୁ ପରିବର୍ତ୍ତନ କରି ନ୍ୟାୟ, ମୁକ୍ତି, ସାମ୍ୟ ଓ ମୈତ୍ରୀର ମହାନ ଆଦର୍ଶରେ ଏକ ଆଧୁନିକ ଭାରତ ଗଠନ ଦିଗରେ ତାଙ୍କ ଭୂମିକା ଅତୁଳନୀୟ । ଏହି ମହାମାନବ ଖ୍ରୀ.ଅ. ୧୮୯୧ ଏପ୍ରିଲ ୧୪ ତାରିଖ ଦିନ ମହାରାଷ୍ଟ୍ରର ରତ୍ନଗିରି ଜିଲ୍ଲାସ୍ଥ ମହୋ ନାମକ ସ୍ଥାନରେ (ବର୍ତ୍ତମାନ ମଧ୍ୟପ୍ରଦେଶରେ) ଏକ ଦରିଦ୍ର ମହର ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ଜାତିପ୍ରଥା, ଅସ୍ପୃଶ୍ୟତା ଓ ଉଚ୍ଚନୀଚ ଭେଦଭାବରେ ନିର୍ଯ୍ୟାତିତ ହୋଇ ସୁଦ୍ଧା ଡକ୍ଟର ଆମ୍ବେଦ୍‌କର ବଡ଼ୋଦା ମହାରାଜା ଶୟାଜୀରାଓ ଗାଏକୱାଡ୍‌ଙ୍କ ସାହାଯ୍ୟରେ ଆମେରିକାର କଲୋମ୍ବିଆ ବିଶ୍ୱବିଦ୍ୟାଳୟରୁ ଅର୍ଥନୀତି ଶାସ୍ତ୍ରରେ ଏମ୍.ଏ., ପିଏଚ୍‌ଡି ଓ ପରେପରେ ଲଣ୍ଡନ ସ୍କୁଲ ଅଫ୍ ଇକୋନମିକ୍‌ସରୁ ଏମ୍.ଏସ୍.ସି., ଡି.ଏସ୍.ସି. ଏବଂ ଗ୍ରେସ୍ ଇନ୍‌ରୁ ବାରିଷ୍ଟର ଉପାଧି କୃତିତ୍ୱର ସହିତ ହାସଲ କରିଥିଲେ । ଉଚ୍ଚଶିକ୍ଷା ଲାଭକରି ଅବହେଳିତ, ଲାଞ୍ଛିତ ଓ ଶୋଷିତ ଲୋକମାନଙ୍କୁ 'ସାମାଜିକ ନ୍ୟାୟ' ଦେବା ଏବଂ ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କୁ ରାଜନୈତିକ ଅଧିକାର ଦେବାପାଇଁ ସେ ଆରମ୍ଭ କଲେ ଏକ ବୈପ୍ଳବିକ ଆନ୍ଦୋଳନ ।

ପ୍ରକାଶ ଥାଉକି, ପ୍ରାଚୀନ ଓ ମଧ୍ୟ କାଳୀନ ଭାରତରେ ସାମାଜିକ ସମତା ବା ନ୍ୟାୟ ନଥିଲା କିମ୍ବା ସମସ୍ତଙ୍କର ରାଜନୈତିକ ଅଧିକାର ମଧ୍ୟ ନଥିଲା । ଭାରତୀୟ ଅଧିବାସୀମାନେ ବଂଶାନୁକ୍ରମିକ ରାଜତନ୍ତ୍ରରେ ଅତିଷ୍ଠ ହୋଇ ପଡ଼ିଥିଲେ । ନିମ୍ନ ଶ୍ରେଣୀର ଦୁଃଖ କହିଲେ ନ ସରେ । ଡକ୍ଟର ଆମ୍ବେଦ୍‌କର ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ରାଜନୈତିକ ବ୍ୟବସ୍ଥାରେ ଏକ ବୈପ୍ଳବିକ ପରିବର୍ତ୍ତନ ଆଣି 'ରାଜତନ୍ତ୍ର' ପରିବର୍ତ୍ତେ 'ଗଣତନ୍ତ୍ର' ପ୍ରତିଷ୍ଠା କରିବାପାଇଁ ଉଦ୍ୟମ କରି ସଫଳ ହୋଇଥିଲେ ।

ପ୍ରାଗ୍-ସ୍ୱାଧୀନତା ସମୟରେ ଭାରତ ବର୍ଷରେ ଯେତେଗୁଡ଼ିଏ ଶାସନ ସଂସ୍କାର ଆଇନ୍ ପ୍ରଣୀତ ହୋଇଥିଲା, ଏପରିକି ମଣ୍ଟେଗୁ-ଚେମ୍‌ସଫୋର୍ଡ଼ ଶାସନ ସଂସ୍କାର

(୧୯୧୯)ଠାରୁ କ୍ୟାବିନେଟ୍ ମଶନ (୧୯୪୬) ପର୍ଯ୍ୟନ୍ତ ସବୁଥିରେ ଡକ୍ଟର ଆମ୍ବେଦ୍କର ସକ୍ରିୟ ଅଂଶ ଗ୍ରହଣ କରି ଦେଶ ଗଠନ ଓ ପରିଚାଳନା ସମ୍ବନ୍ଧରେ ଆଲୋକପାତ କରିଥିଲେ । ଗୋଲ୍‌ଟେବୁଲ୍ ବୈଠକ (୧୯୩୦-୩୨)ରେ ଡକ୍ଟର ଆମ୍ବେଦ୍କରଙ୍କର ଦେଶାତ୍ମବୋଧକ ବକ୍ତୃତା ଓ ସମ୍ବିଧାନ ପ୍ରଣୟନ ସଭାରେ ତାଙ୍କର ବିଚକ୍ଷଣ ସାମ୍ବିଧାନିକ ଆଲୋଚନା ଓ ଅଭୂତପୂର୍ବ ବାଗ୍ମିତା ତାଙ୍କୁ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଜଣେ ଅଦ୍ୱିତୀୟ ଦେଶପ୍ରେମୀ ଓ ମହାନ୍ ରାଷ୍ଟ୍ର ନାୟକ ଭାବେ ଅବତୀର୍ଣ୍ଣ କଲା । ସ୍ୱାଧୀନ ଭାରତର ପ୍ରଥମ ଆଇନ୍ ମନ୍ତ୍ରୀ ଭାବେ ଶପଥ ଗ୍ରହଣ କରିବା ସହିତ ଡକ୍ଟର ଆମ୍ବେଦ୍କର ସମ୍ବିଧାନ ସଭାରେ 'ଡ୍ରାଫ୍‌ଟିଙ୍ଗ୍ କମିଟି'ର ଚେୟାରମେନ୍ ଭାବେ ମଧ୍ୟ ନିର୍ବାଚିତ ହେଲେ । ଏହିପରି ଭାବେ ସମ୍ବିଧାନ ପ୍ରସ୍ତୁତ କରିବାର ଗୁରୁ ଦାୟିତ୍ୱ ବହନ କରି ଦୀର୍ଘ ୨ ବର୍ଷ ୧୧ ମାସ ୧୭ ଦିନ କଠିନ ପରିଶ୍ରମ କରି ସେ ୧୯୪୯ ମସିହା ନଭେମ୍ବର ୨୬ ତାରିଖ ଦିନ ସମ୍ବିଧାନ ପ୍ରଣୟନ ସଭାରେ ଲିଖିତ ସମ୍ବିଧାନଟିକୁ ଗୃହୀତ କରାଇଥିଲେ । ଆଧୁନିକ ଭାରତ ନିର୍ମାଣ ନିମନ୍ତେ ତାଙ୍କର ମହନୀୟ ଅବଦାନ ସମ୍ବନ୍ଧରେ ଉକ୍ତ ପ୍ରବନ୍ଧର ସମ୍ୟକ୍ ଅବତାରଣା ମାତ୍ର ।

## ମଣ୍ଟେଗୁ-ଚେମସଫୋର୍ଡ଼ ଶାସନ ସଂସ୍କାର

ବିଂଶ ଶତାବ୍ଦୀର ଦୁଇ ଦଶନ୍ଧି ମଧ୍ୟରେ ଯେତେବେଳେ ସ୍ୱାଧୀନତା ଆନ୍ଦୋଳନ ତୀବ୍ରତର ହୋଇ ସାରିଥାଏ ଏବଂ ବ୍ରିଟିଶ୍ ସରକାର କ୍ରମଶଃ ଭାରତୀୟମାନଙ୍କୁ ରାଜନୀତି ଓ ଶାସନରେ ଅଂଶ ଗ୍ରହଣ କରିବାକୁ ସୁଯୋଗ ଦେଉଥାନ୍ତି, ସେହି ସମୟରେ ଡକ୍ଟର ଆମ୍ବେଦ୍କର ସ୍ୱାଧୀନତା ଓ ରାଜନୈତିକ ଅଧିକାରର ମୂଲ୍ୟ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସାଧାରଣ ଲୋକମାନଙ୍କ ନିକଟରେ ପହଞ୍ଚେଇବା ପାଇଁ ତାଙ୍କର ସଂଗ୍ରାମ ଅବ୍ୟାହତ ରଖିଥିଲେ । ମଣ୍ଟେଗୁ-ଚେମ୍‌ସଫୋର୍ଡ଼ ଶାସନ ସଂସ୍କାର କାର୍ଯ୍ୟକ୍ରମରେ ଗଠିତ South Borough Franchise Committe (୧୯୧୯) ସମ୍ମୁଖରେ ତଥ୍ୟ ପ୍ରଦାନ କରି ଡକ୍ଟର ଆମ୍ବେଦକର କହିଥିଲେ ଯେ 'ଲୋକମାନଙ୍କଦ୍ୱାରା' ସରକାର 'ଲୋକମାନଙ୍କପାଇଁ' ସରକାରଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ । ଲୋକମାନେ ନିଜେନିଜକୁ ଶାସନ କରିବାପାଇଁ ସୁଯୋଗ ପାଇବା ଦରକାର । 'ନିଜେନିଜକୁ ଶାସନ କରିବା ଜଣେ ବ୍ରାହ୍ମଣର ଯେପରି ଜନ୍ମଗତ ଅଧିକାର, ଜଣେ ଅସ୍ପୃଶ୍ୟର ମଧ୍ୟ ସେହିପରି ଜନ୍ମଗତ ଅଧିକାର' ବୋଲି ସେ ମତବ୍ୟକ୍ତ କରିଥିଲେ । ବ୍ରିଟିଶ୍ ସରକାରଙ୍କଦ୍ୱାରା ବିଧାୟକ ମନୋନୟନ ବ୍ୟବସ୍ଥାକୁ ନାପସନ୍ଦ କରି ସେମାନେ ଲୋକମାନଙ୍କଦ୍ୱାରା ନିର୍ବାଚିତ ହେବା ଉଚିତ୍ ବୋଲି ସେ ପ୍ରକାଶ କରିଥିଲେ । ୧୯୧୯ ମସିହାଠାରୁ ଭାରତର ଗଣତନ୍ତ୍ର ପ୍ରତିଷ୍ଠା କରିବା ଦିଗରେ ଡକ୍ଟର ଆମ୍ବେଦ୍କରଙ୍କ ଏହା ଥିଲା

ଏକ ଅବିସ୍ମରଣୀୟ ଉଦ୍ୟମ ।

**ସାଇମନ୍ କମିଶନ୍**

ସାମ୍ବିଧାନିକ ବ୍ୟବସ୍ଥା ଅନୁଧାନ କରିବାପାଇଁ ନିଯୁକ୍ତ ସାଇମନ୍ କମିଶନ୍ (୧୯୨୭)କୁ ତତ୍କାଳୀନ ଜାତୀୟ କଂଗ୍ରେସ ବାସନ୍ଦ କରିଥିଲା । କିନ୍ତୁ ଡକ୍ଟର ଆମ୍ବେଦ୍କର ଜଣେ ସମ୍ବିଧାନବିତ୍ ଭାବେ ତାହା କରିବାକୁ ଚାହିଁ ନଥିଲେ । ସେ କମିଶନ୍ ସମ୍ମୁଖରେ କେନ୍ଦ୍ର ସରକାର ଓ ରାଜ୍ୟ ସରକାରମାନଙ୍କ ଗଠନ, ପ୍ରଦେଶଗୁଡ଼ିକୁ ସ୍ୱୟଂ ଶାସନ କ୍ଷମତା ପ୍ରଦାନ ଇତ୍ୟାଦି ବିଭିନ୍ନ ସମସ୍ୟା ସମ୍ବନ୍ଧରେ ଆଲୋଚନା କରି ଭାରତୀୟ ବେସାମରିକ ସେବା (I.C.S)କୁ ଭାରତୀୟକରଣ, ରାଜ୍ୟମାନଙ୍କରେ ଲୋକସେବା ଆୟୋଗ ଗଠନ ଏବଂ ଅନଗ୍ରସର ଶ୍ରେଣୀଙ୍କୁ ସ୍ୱତନ୍ତ୍ର ସୁବିଧାସୁଯୋଗଦ୍ୱାରା ଶାସନ କ୍ଷେତ୍ରରେ ସାମିଲ କରିବା ପାଇଁ ସେ ଦୃଢ଼ ଦାବୀ ଉପସ୍ଥାପିତ କରିଥିଲେ । ଏହାଦ୍ୱାରା ସାଇମନ୍ କମିଶନ୍ ଡକ୍ଟର ଆମ୍ବେଦ୍କରଙ୍କଠାରୁ ଜଣେ ବିଜ୍ଞ ସମ୍ବିଧାନବିତ୍‌ର ପରିଚୟ ପାଇଥିଲେ ।

**ଗୋଲ ଟେବୁଲ ବୈଠକ**

୧୯୩୦ ରୁ ୧୯୩୨ ମସିହା ମଧ୍ୟରେ ଲଣ୍ଡନରେ ଅନୁଷ୍ଠିତ ହୋଇଥିବା ତିନୋଟି ଗୋଲ୍ ଟେବୁଲ୍ ବୈଠକ ଭାରତୀୟ ସ୍ୱାଧୀନତା ସଂଗ୍ରାମର ଇତିହାସ ଓ ସାମ୍ବିଧାନିକ ବ୍ୟବସ୍ଥା ଉନ୍ନତି ସମ୍ବନ୍ଧରେ ଯଥେଷ୍ଟ ପ୍ରଭାବ ପକାଇଥିଲା । ଏହି ବୈଠକର ପ୍ରଥମ ପର୍ଯ୍ୟାୟରେ, ଦଳିତ ଶ୍ରେଣୀର ଉନ୍ନତିପାଇଁ କୌଣସି ପଦକ୍ଷେପ ନେଇ ନଥିବାରୁ ଡକ୍ଟର ଆମ୍ବେଦ୍କର ବ୍ରିଟିଶ୍ ସରକାରଙ୍କୁ ତୀବ୍ର ସମାଲୋଚନା କରିଥିଲେ । ବ୍ରିଟିଶ୍ ସରକାର ଭାରତୀୟ ଜନସାଧାରଣଙ୍କର ସମସ୍ୟା ସମାଧାନ କରି ପାରିବେ ନାହିଁ ବୋଲି ତାଙ୍କର ଦୃଢ଼ ମତ ଥିଲା । ତାଙ୍କ ମତରେ, ଭାରତ ବର୍ଷରେ ଯେ ପର୍ଯ୍ୟନ୍ତ ଅମଲାତାନ୍ତ୍ରିକ ଶାସନ ବଦଳରେ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାର ପ୍ରବର୍ତ୍ତନ ନ ହୋଇଛି, ସେ ପର୍ଯ୍ୟନ୍ତ ଭାରତୀୟମାନଙ୍କର ଉନ୍ନତି ସମ୍ଭବ ନୁହେଁ । ଏହି ମର୍ମରେ ସେ କହିଥିଲେ । -

"We must have a Government in which men in power will give their undivided allegiance to the best interest of the country. We must have a Government in which men in power, knowing where obedience will end and resistance will begin, will not be afraid to amend the social and economic code of life which the dictates of justice and expediency so urgently call for. This role the British Government will never be able to play. It is only a Government which is of the people, by the people

and for the people that will make this possible."

୧୯୩୦ ମସିହାରେ ମହାତ୍ମାଗାନ୍ଧି ଯେତେବେଳେ ବ୍ରିଟିଶ୍ ଆଇନ୍ ଅମାନ୍ୟ କରି 'ଲବଣ ସତ୍ୟାଗ୍ରହ' ଆରମ୍ଭ କରିଥିଲେ, ସେହି ସମୟରେ ଲଣ୍ଡନସ୍ଥ ଗୋଲ୍ ଟେବୁଲ୍ ବୈଠକରେ ଡକ୍ଟର ଆମ୍ବେଦ୍କର ଭାରତବର୍ଷକୁ 'ଏକ ରାଷ୍ଟ୍ର ରୂପେ ଗଠନ କରି ଗଣତନ୍ତ୍ର ପ୍ରତିଷ୍ଠା କରିବାପାଇଁ ଦୃଢ଼ ଦାବୀ ଉପସ୍ଥାପନା କରିଥିଲେ । ଭାରତରେ ଏକ 'ସଙ୍ଘୀୟ ଶାସନ ବ୍ୟବସ୍ଥା (Unitary form of Government) ର ପ୍ରତିଷ୍ଠା, ରାଜ୍ୟମାନଙ୍କର ସ୍ୱୟଂଶାସନ କ୍ଷମତା, ସାଧାରଣ ନାଗରିକତା, ସାବାଳକ ଭୋଟ ପ୍ରଥା, ନାଗରିକ ଅଧିକାରର ମୁକ୍ତ ବ୍ୟବହାର ଏବଂ ବିଧାନ ଗୃହ ଓ ସରକାରୀ ଚାକିରିରେ ସବୁ ଶ୍ରେଣୀର ପ୍ରତିନିଧିତ୍ୱ ଇତ୍ୟାଦି ସମ୍ବିଧାନ ଅନ୍ତର୍ଭୁକ୍ତ କରିବାକୁ ସେ ଚାହିଁଥିଲେ । ବିଭିନ୍ନ ସାମ୍ବିଧାନିକ ବିଷୟ ବସ୍ତୁର ପୁଙ୍ଖାନୁପୁଙ୍ଖ ଆଲୋଚନାପାଇଁ ଗୋଲ୍ ଟେବୁଲ୍ ବୈଠକରେ ନଅଟି ସବ୍-କମିଟି ଗଢ଼ାଯାଇ ଥିଲା ଏବଂ ଡକ୍ଟର ଆମ୍ବେଦକର Federal Structure Committee; Minority Committee. Provincial Constitution Sub-Committee; Service Sub-Committee; Franchise Sub-Committee Gaõ Minority Sub-Committee ରେ ଭାରତ ଓ ଇଂଲଣ୍ଡର ମହାନ୍ ରାଜନୀତିଜ୍ଞ ଓ ଆଇନଜ୍ଞମାନଙ୍କ ମଧ୍ୟରେ କୃତିତ୍ୱର ସହ କାର୍ଯ୍ୟ କରି ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ଭାରତୀୟମାନଙ୍କର ଶାସନପାଇଁ ମନମୁଖୀ ଆଇନ୍ ତିଆରି ନ କରି ଭାରତୀୟ ଲୋକମାନଙ୍କର ମତାମତ ଗ୍ରହଣ କରିବାକୁ ଡକ୍ଟର ଆମ୍ବେଦ୍କର ବ୍ରିଟିଶ୍ ସରକାରଙ୍କୁ ପରାମର୍ଶ ଦେଇଥିଲେ । ଲୋକମାନଙ୍କର ବିନା ମତାମତରେ ସମ୍ବିଧାନ ଗଢ଼ିଲେ ତାହା ଭାରତବର୍ଷରେ କାର୍ଯ୍ୟକାରୀ ହୋଇ ପାରିବ ନାହିଁ ବୋଲି ସେ ବ୍ରିଟିଶ୍ ସରକାରଙ୍କୁ ସତର୍କ କରାଇ ଦେଇଥିଲେ । ତାଙ୍କ ମତରେ ବ୍ରିଟିଶ୍ ଯଥାଶିଘ୍ର ଭାରତ ଛାଡ଼ି ଚାଲିଗଲେ ସ୍ୱାଧୀନ ଭାରତରେ ଏକ 'ସ୍ୱରାଜ ସମ୍ବିଧାନ' ପ୍ରସ୍ତୁତ ହେବା ସମ୍ଭବ ହେବ । ଡକ୍ଟର ଆମ୍ବେଦ୍କରଙ୍କର ଏପରି ଦେଶାତ୍ମବୋଧକ ବକ୍ତୃତା ତାଙ୍କୁ ପରବର୍ତ୍ତୀ କାଳରେ ଜଣେ ମହାନ୍ ରାଷ୍ଟ୍ରନାୟକ ରୂପେ ଅବତୀର୍ଣ୍ଣ କଲା ।

**ଚାଷୀ, ମୂଲିଆ, ଶ୍ରମିକ ନେତା**

ଗୋଲ ଟେବୁଲ୍ ବୈଠକର ବିବରଣୀ ଅନୁଯାୟୀ ପ୍ରଣୀତ ହୋଇଥିବା ଭାରତୀୟ ଶାସନ ଆଇନ୍ (୧୯୩୫)ରେ ଡକ୍ଟର ଆମ୍ବେଦ୍କରଙ୍କର ଅଧିକାଂଶ ଚିନ୍ତାଧାରା ପ୍ରତିଫଳିତ ହେଲା । ଏହି ଆଇନ୍ ଅନୁଯାୟୀ ଭାରତ ବର୍ଷର ପ୍ରତ୍ୟେକ ରାଜ୍ୟରେ ୧୯୩୭ ମସିହାରେ ନିର୍ବାଚନ କରାଯାଇ ଲୋକପ୍ରିୟ ବିଧାନ ସଭାମାନ ଗଠିତ ହେଲା । ଏହି ସମୟରେ ଡକ୍ଟର ଆମ୍ବେଦ୍କର ଶ୍ରମିକ ଆନ୍ଦୋଳନର ନେତୃତ୍ୱ ନେଇ ଗୋଟିଏ Independent Labour

Party of India (୧୯୩୬-୩୭) ଗଢ଼ିଲେ ଏବଂ ଏହା ମାଧ୍ୟମରେ କୃଷକ, କୃଷି ଶ୍ରମିକ ଓ ଶିଳ୍ପ ଶ୍ରମିକମାନଙ୍କର ବିଭିନ୍ନ ସମସ୍ୟା ସମାଧାନ କରିଥିଲେ । ୧୯୩୭ ମସିହାରେ ସେ ମଧ୍ୟ ବମ୍ବେ ବିଧାନସଭାକୁ ନିର୍ବାଚିତ ହୋଇ ଭୂମିହୀନ ଶ୍ରମିକ ସମସ୍ୟା, କ୍ଷୁଦ୍ର ପରିସର ଜମି ସମସ୍ୟା, ଖୋଟି ଓ ମହର ବତନର ଉଚ୍ଛେଦ, ରାଜସ୍ୱ, ମିଳିତ କୋଠାଋଷ, ମୁଦ୍ରା ସମସ୍ୟା, ଶିକ୍ଷାକୁ ସାର୍ବଜନୀନ କରିବା ଓ ଜମିଦାରୀ ଉଚ୍ଛେଦ ସମ୍ବନ୍ଧରେ ସାରଗର୍ଭକ ଆଲୋଚନା କରି ବିଭିନ୍ନ ସମସ୍ୟାର ସମାଧାନ କରି ପାରିଥିଲେ । ଭାରତବର୍ଷର ଲୋକପ୍ରିୟ ବିଧାନସଭାରେ 'କୃଷି ଶ୍ରମିକମାନଙ୍କର ବତନ ଉଚ୍ଛେଦ ବିଲ୍' ଆଗତ କରିବା ପାଇଁ ସେ ଥିଲେ ପ୍ରଥମ ବିଧାୟକ । ଏହି ସମୟରେ ଡକ୍ଟର ଆମ୍ବେଦ୍କର ଜଣେ ବୁଦ୍ଧିମାନ ଓ ବଳିଷ୍ଠ ଶ୍ରମିକ ନେତା ଭାବେ ଭାରତରେ ଓ ଭାରତ ବାହାରେ ମଧ୍ୟ ବିବେଚିତ ହେଲେ ।

## ଶ୍ରମ ସଦସ୍ୟ

ଡକ୍ଟର ଆମ୍ବେଦ୍କରଙ୍କ ଶ୍ରମିକ ସମସ୍ୟା ସମ୍ବନ୍ଧରେ ଜ୍ଞାନ ଓ ଏହାକୁ ସମାଧାନ କରିବାକୁ ତାଙ୍କର ବିଚକ୍ଷଣ କୌଶଳ ତାଙ୍କୁ ଉଚ୍ଚ ଆସନରେ ଅଧିଷ୍ଠିତ କଲା । ସେ ୧୯୪୨ ମସିହା ଜୁଲାଇ ୨୦ ତାରିଖ ଦିନ ଭାଇସ୍‌ରାୟଙ୍କ କାର୍ଯ୍ୟକାରିଣୀ ପରିଷଦରେ 'ଶ୍ରମ ସଦସ୍ୟ' ଭାବେ ଯୋଗ ଦେଇ ୧୯୪୬ ମସିହା ପର୍ଯ୍ୟନ୍ତ ଏହି ପଦବୀରେ କାର୍ଯ୍ୟ କରିଥିଲେ । ୧୯୪୫ ମସିହା ସେପ୍ଟେମ୍ବର ୨ ତାରିଖ ଦିନ ତାଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିବା 'Labour Charter' ଏବେ ସୁଦ୍ଧା ଭାରତୀୟ ଶ୍ରମିକ ମଙ୍ଗଳ କାର୍ଯ୍ୟକ୍ରମଗୁଡ଼ିକର ପଥ ପ୍ରଦର୍ଶକ ହୋଇ ରହିଛି । ତାଙ୍କ ସମୟରେ ଶ୍ରମିକମାନଙ୍କୁ ଛୁଟି ସହ ବେତନ ଦେବାପାଇଁ ଆଇନ୍ ଭାରତୀୟ ଖଣି ଆଇନ୍, ମହିଳା ଶ୍ରମିକମାନଙ୍କୁ ପ୍ରସୂତି କାଳୀନ ସୁବିଧା ଓ ଛୁଟି ଏବଂ ୧୪ ବର୍ଷରୁ କମ୍ ବୟସର ବାଳକବାଳିକାମାନଙ୍କୁ କାରଖାନାରେ କାର୍ଯ୍ୟ କରିବାକୁ ନିଷେଧାଦେଶ ଇତ୍ୟାଦି ଆଇନ୍‌ଗୁଡ଼ିକ ପ୍ରଣୟନ ହୋଇଥିଲା । ତାଙ୍କ ମତରେ, 'ଶ୍ରମ ଖାଦ୍ୟ, ବସ୍ତ୍ର, ଆଶ୍ରୟ, ଶିକ୍ଷା, ସ୍ୱାସ୍ଥ୍ୟ, ସମ୍ବଳ ଓ ସାଂସ୍କୃତିକ ବ୍ୟବସ୍ଥା ଇତ୍ୟାଦି ଦୃଢ଼ତାର ସହ ଦାବୀ କରେ ।' ଏତଦ୍ ବ୍ୟତୀତ ଶ୍ରମିକମାନଙ୍କର 'ସାମାଜିକ ନିରାପତ୍ତା'ପାଇଁ ପ୍ରଣୀତ ଆଇନ୍ ଯୋଗୁଁ ଡକ୍ଟର ଆମ୍ବେଦ୍କର ଅମର ହୋଇ ରହିଥିବେ ।

## ହୀରାକୁଦ ଡ୍ୟାମ୍ ଯୋଜନା

ଓଡ଼ିଶାପାଇଁ ଡକ୍ଟର ଆମ୍ବେଦ୍କରଙ୍କର ଦାନ ଚିର ସ୍ମରଣୀୟ । ସେ କେନ୍ଦ୍ରରେ ଶ୍ରମ ସଦସ୍ୟ ଥିବା ସମୟରେ ବିଦ୍ୟୁତ୍ ଓ ଜଳସେଚନ ବିଭାଗର ଅତିରିକ୍ତ ଦାୟିତ୍ୱରେ ମଧ୍ୟ ଥିଲେ । ୧୯୪୫ ମସିହା ନଭେମ୍ବର ୮ ତାରିଖ ଦିନ କଟକଠାରେ 'ମହାନଦୀ ବହୁମୁଖୀ

ଯୋଜନା ସମ୍ମିଳନୀ'ରେ ସଭାପତିତ୍ୱ କରି ସେ ଓଡ଼ିଶାର ବିଭିନ୍ନ ସମସ୍ୟା ସମ୍ବନ୍ଧରେ ଉପଲବ୍ଧି କରିଥିଲେ । ନଦୀ ବହୁଳ ଅଞ୍ଚଳ ଓଡ଼ିଶାରେ ଗୋଟିଏ 'ନଦୀ ବହୁମୁଖୀ ଯୋଜନା' କରାଯାଇ ପାରିଲେ ଓଡ଼ିଶାବାସୀଙ୍କର ଦୁଃଖ ବହୁ ପରିମାଣରେ ଦୂର ହୋଇ ପାରିବ ବୋଲି ସେ ଭଲ ଭାବେ ଚିନ୍ତା କଲେ । ସମୟକ୍ରମେ ତାଙ୍କଦ୍ୱାରା ଗଢ଼ି ଉଠିଲା 'ହୀରାକୁଦ ଡ୍ୟାମ୍ ଯୋଜନା' । ଏଥିପାଇଁ ତତ୍କାଳୀନ କେନ୍ଦ୍ରୀୟ ଜଳପଥ, ଜଳ ସେଚନ ଓ ନୌଯାତାୟତ କମିଶନର ଚେୟାରମ୍ୟାନ୍ ଡକ୍ଟର ଏ.ଏନ୍. ଖୋସଲାଙ୍କ ଅବଦାନ ମଧ୍ୟ ସ୍ମରଣ ଯୋଗ୍ୟ । ଡକ୍ଟର ଖୋସଲା ଡ୍ୟାମ୍ ପାଇଁ ସମ୍ବଲପୁରକୁ ସ୍ଥାନ ନିରୂପଣ କଲେ ଏବଂ ଡକ୍ଟର ଆମ୍ବେଦ୍କର ମଧ୍ୟପ୍ରଦେଶ ଓ ଓଡ଼ିଶା ସରକାରଙ୍କ ସହ ଆଲୋଚନା କରି ସମ୍ବଲପୁରଠାରେ 'ହୀରାକୁଦ ଡ୍ୟାମ୍' ନିର୍ମାଣପାଇଁ ୧୯୪୬ ମସିହାରେ ଚୂଡ଼ାନ୍ତ ନିଷ୍ପତ୍ତି ଗ୍ରହଣ କଲେ । ତାଙ୍କ ସମୟରେ ଡ୍ୟାମ୍‌ର ଯୋଜନା, ଅଟକଳ ଓ ରୂପରେଖ ଇତ୍ୟାଦି ପ୍ରସ୍ତୁତ ହୋଇଥିଲା; କିନ୍ତୁ ୧୯୪୭ ମସିହାରେ ଭାରତ ସ୍ୱାଧୀନତା ଲାଭ କରିବାରୁ ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇ ପାରି ନଥିଲା । ଏହା ୧୯୪୮ ମସିହାରେ ଆରମ୍ଭ ହୋଇ ୧୯୫୬ ମସିହାରେ ଶେଷ ହୋଇଥିଲା । ହୀରାକୁଦ ଡ୍ୟାମ୍ ଆଧୁନିକ ଭାରତ ନିର୍ମାଣପାଇଁ ଡକ୍ଟର ଆମ୍ବେଦ୍କରଙ୍କର ସ୍ୱପ୍ନର ଏକ ଅଂଶ ମାତ୍ର ।

**ସମ୍ବିଧାନ ପ୍ରଣୟନ**

ଭାରତ ମାତାଙ୍କୁ ଡକ୍ଟର ଆମ୍ବେଦ୍କରଙ୍କର ସର୍ବଶ୍ରେଷ୍ଠ ଅବଦାନ ହେଉଛି ସମ୍ବିଧାନ । ୧୯୪୬ ମସିହାରେ ସେ ପଶ୍ଚିମବଙ୍ଗରୁ ସମ୍ବିଧାନ ପ୍ରଣୟନ ସଭାକୁ ନିର୍ବାଚିତ ହେଲେ । ସେହି ସମୟରେ କ୍ୟାବିନେଟ୍ ମିଶନ (୧୯୪୬) ସହିତ କ୍ଷମତା ହସ୍ତାନ୍ତରିକରଣ ଓ ରାଜ୍ୟ ପୁନର୍ଗଠନ ଇତ୍ୟାଦି ବିଷୟରେ ଗଭୀର ଆଲୋଚନା କରି ରାଷ୍ଟ୍ର ଗଠନର ଏକ ଅନବଦ୍ୟ ଭୂମିକା ଗ୍ରହଣ କରିଥିଲେ । ଭାରତ ବିଭାଜନ ହୋଇଯିବା ପରେ ବଙ୍ଗ ଓ ପଞ୍ଜାବର ହିନ୍ଦୀ ଭାଷାଭାଷୀ ଅଞ୍ଚଳକୁ ଭାରତ ସହ ମିଶାଇ ଦେବାକୁ ଦୃଢ଼ ଦାବୀ ତାଙ୍କର ଅପୂର୍ବ ଦେଶପ୍ରୀତିର ପରିଚୟ ଦିଏ ।

୧୯୫୦ ମସିହା ଜାନୁୟାରୀ ୨୬ ତାରିଖ ଦିନ ତାଙ୍କଦ୍ୱାରା ପ୍ରଣୀତ ସମ୍ବିଧାନ କାର୍ଯ୍ୟକାରୀ ହେଲା ଏବଂ ଭାରତ ବର୍ଷ ଏକ ସାର୍ବଭୌମ, ଗଣତାନ୍ତ୍ରିକ ରାଷ୍ଟ୍ରରୂପେ ପୃଥିବୀରେ ଅବତୀର୍ଣ୍ଣ ହେଲା । ସମ୍ବିଧାନରେ ଲୋକମାନଙ୍କର ସର୍ବାଧିକ କ୍ଷମତା, ଆଇନ୍ ଆଗରେ ସମସ୍ତେ ସମାନ ଏବଂ ନ୍ୟାୟ, ସାମ୍ୟ, ମୁକ୍ତି ଓ ମୈତ୍ରୀର ମହାନ୍ ଦର୍ଶନକୁ ଭିତ୍ତିଭୂମି କରି ସମ୍ବିଧାନର ବିଭିନ୍ନ ଧାରା ଓ ଉପଧାରାଗୁଡ଼ିକ ସେ ଅତି ଚମତ୍କାର ଭାବେ ବର୍ଣ୍ଣନା କରିଛନ୍ତି । ବିଭିନ୍ନ ଭାଷା, ବିଭିନ୍ନ ଅଞ୍ଚଳ ଓ ବିଭିନ୍ନ ସଂସ୍କୃତିକୁ ନେଇ ଗଠିତ ଭାରତ ବର୍ଷର ଜାତୀୟ ସଂହତିକୁ ଚିରସ୍ଥାୟୀ କରିବାପାଇଁ ଡକ୍ଟର ଆମ୍ବେଦ୍କର ବିଭିନ୍ନ

ସାମ୍ବିଧାନିକ ବ୍ୟବସ୍ଥା କରି ଯାଇଛନ୍ତି । ରାଜ୍ୟଗୁଡ଼ିକ ସ୍ୱୟଂଶାସିତ ହେଲେ ମଧ୍ୟ କେନ୍ଦ୍ରକୁ ଶକ୍ତିଶାଳୀ ଓ କ୍ଷମତା ପୂର୍ଣ୍ଣ କରିବା, ହିନ୍ଦୀକୁ ରାଷ୍ଟ୍ରଭାଷା ଓ ସିଂହ ଚିହ୍ନିତ ଅଶୋକ ଚକ୍ରକୁ ଜାତୀୟ ସଙ୍କେତ ଭାବେ ଗ୍ରହଣ କରିବା ତନ୍ମଧ୍ୟରୁ କେତୋଟି । ତାଙ୍କର ସମ୍ବିଧାନ ପ୍ରଣୟନପାଇଁ ଆମେରିକାର କଲମ୍ବିଆ ବିଶ୍ୱବିଦ୍ୟାଳୟ (ଯେଉଁଠାରେ ସେ ଦିନେ ଛାତ୍ର ଥିଲେ) ତାଙ୍କୁ ଏଲ୍.ଏଲ୍.ଡି. (ଡକ୍‌ଟର ଅଫ୍‌ଲ) ଓ ଉସମାନିଆ ବିଶ୍ୱବିଦ୍ୟାଳୟ ଡି.ଲିଟ୍. ଉପାଧିରେ ସମ୍ମାନିତ କରିଥିଲେ ।

**ସମାଜିକ ଓ ଅର୍ଥନୈତିକ ଗଣତନ୍ତ୍ର**

ସମ୍ବିଧାନରେ ଯେଉଁପରି ରାଜନୈତିକ ବ୍ୟବସ୍ଥା ପ୍ରତିଫଳିତ ହେଲା, ସେଥିରେ ଡକ୍ଟର ଆମ୍ବେଦ୍‌କର ବିଶେଷ ସନ୍ତୋଷ ପ୍ରକାଶ କରି ନାହାନ୍ତି । ସମ୍ବିଧାନଦ୍ୱାରା ଭାରତୀୟମାନେ କେବଳ 'ରାଜନୈତିକ ଗଣତନ୍ତ୍ର' ପାଇଛନ୍ତି ବୋଲି ସେ ସମ୍ବିଧାନ ପ୍ରଣୟନ ସଭାରେ ପ୍ରକାଶ କରିଥିଲେ । ତାଙ୍କ ମତରେ 'ସାମାଜିକ ଓ ଅର୍ଥନୈତିକ ଗଣତନ୍ତ୍ର' ବିନା 'ରାଜନୈତିକ ଗଣତନ୍ତ୍ର'ର କୌଣସି ସାର୍ଥକତା ନାହିଁ । ଭାରତୀୟ ସମାଜରେ ପୂର୍ବଭଳି ସାମାଜିକ ଓ ଅର୍ଥନୈତିକ ବୈଷମ୍ୟ ରହିଥିବା ବେଳେ ସମସ୍ତେ 'ରାଜନୈତିକ ଗଣତନ୍ତ୍ର' ଉପଭୋଗ କରି ପାରିବେ ନାହିଁ । ଏହି ମର୍ମରେ ସେ ସମ୍ବିଧାନ ପ୍ରଣୟନ ସଭାରେ ସତର୍କ କରାଇ ଦେଇଥିଲେ; ତାଙ୍କ ଭାଷାରେ:

"On 26th January 1950, we are going to enter into a life of contradictions. In politics we will have equality and in social and economic life we will have inequality. In politics, we will be recognising the principle of 'one man - one vote' and 'one vote-one value'. In our social and economic life, we shall by reason of our social and economic structure, continue to deny the principle of 'one man - one value'.

How long shall we continue to live this life of contradictions ? How long shall we continue to deny equality in our social and economic life ?

If we continue to deny it for long, we will do so only by putting our political democracy in peril. We must remove this contradiction at the earliest possible moment or else those who suffer from inequality will blow up this structure of political de-

mocracy which this Assembly has so labouriously built up.'

ଏହା ଥିଲା ଡକ୍ଟର ଆମ୍ବେଦ୍‌କରଙ୍କ ଓଜସ୍ୱିନୀ ବାଣୀ । ୧୯୪୯ ମସିହା ନଭେମ୍ବର ୨୫ ତାରିଖ ଦିନ ତାଙ୍କଦ୍ୱାରା 'ଚିଠା ସମ୍ବିଧାନ' ଉପସ୍ଥାପିତ କରିବା ସମୟରେ ସେ ଏହା ପ୍ରକାଶ କରିଥିଲେ । ସେ ଚାହିଁଥିଲେ ଏକ ଜାତିହୀନ ଓ ଶ୍ରେଣୀହୀନ ସମାଜ ଗଠନ । କିନ୍ତୁ ତାହା ଏପର୍ଯ୍ୟନ୍ତ ସଫଳ ହୋଇପାରି ନାହିଁ । ଦଳିତ-ଆଦିବାସୀମାନଙ୍କପାଇଁ ତାଙ୍କର ସ୍ୱପ୍ନ ଅଧୁରା ରହିଛି ।

## ନାରୀ ସ୍ୱାଧୀନତା

ଡକ୍ଟର ଆମ୍ବେଦ୍‌କର କେବଳ ଯେ ପୁରୁଷ ଓ ପୁରୁଷମାନଙ୍କ ମଧ୍ୟରେ ସମତାପାଇଁ ଦାବୀ କରି ଆସୁଥିଲେ ତାହା ନୁହେଁ, ସେ ମଧ୍ୟ ଚାହୁଁଥିଲେ ପୁରୁଷ ଓ ସ୍ତ୍ରୀମାନଙ୍କ ମଧ୍ୟରେ ସମତା, ସମାନ ଅଧିକାର ଓ ସମାନ ସୁଯୋଗ । ଭାରତୀୟ ନାରୀ ଜାତିଙ୍କୁ କୁସଂସ୍କାରମୂଳକ ଅତ୍ୟାଚାରରୁ ରକ୍ଷା କରିବା ଓ ସେମାନଙ୍କୁ ପୁରୁଷମାନଙ୍କ ସହିତ ସମକକ୍ଷ କରିବା ପାଇଁ ଡକ୍ଟର ଆମ୍ବେଦ୍‌କରଙ୍କ ପ୍ରଚେଷ୍ଟା ତାଙ୍କର ଆଧୁନିକ ସମାଜ ଗଠନର ପରିଚୟ ଦିଏ । ତାଙ୍କଦ୍ୱାରା ଦେବଦାସୀ ପ୍ରଥା ବିରୁଦ୍ଧରେ ଆନ୍ଦୋଳନ ଓ ବିଧବା ବିବାହ ଆଇନ୍ (୧୯୫୨) ପ୍ରଣୟନ ସମଗ୍ର ନାରୀ ଜାତି ପ୍ରଗତିର ପ୍ରତିକ । 'ହିନ୍ଦୁ କୋଡ୍ ବିଲ୍‌ରେ ନାରୀମାନଙ୍କୁ ଶିକ୍ଷା, ସମ୍ପତ୍ତି ଓ ଛାଡ଼ପତ୍ର ଦେବାର ଅଧିକାର ପ୍ରଦାନ କରି ସେ ସମଗ୍ର ନାରୀ ସମାଜର ଚିର ସ୍ମରଣୀୟ ହୋଇଛନ୍ତି । କିନ୍ତୁ ଦୁର୍ଭାଗ୍ୟବଶତଃ ରକ୍ଷଣଶୀଳ ଗୋଷ୍ଠୀଙ୍କଦ୍ୱାରା ଏହା ପାର୍ଲାମେଣ୍ଟରେ ପାଶ୍ ନ ହୋଇ ପାରିବାରୁ ସେ ନେହେରୁଙ୍କ କ୍ୟାବିନେଟ୍‌ରୁ ନୈତିକ ଦୃଷ୍ଟିକୋଣରୁ ଇସ୍ତଫା ଦେଇଥିଲେ । କିନ୍ତୁ ପରବର୍ତ୍ତୀ କାଳରେ ନାରୀ ପ୍ରଗତୀ ଆଇନ୍‌ଗୁଡ଼ିକ ପାଇଁ ତାଙ୍କଦ୍ୱାରା ପ୍ରଣୀତ 'ହିନ୍ଦୁକୋଡ୍ ବିଲ୍' ପଥପ୍ରଦର୍ଶକ ଭାବେ ସାହାଯ୍ୟ କରିଛି ।

## ବୌଦ୍ଧଧର୍ମର ପୁନରୁଦ୍ଧାର

ଡକ୍ଟର ଆମ୍ବେଦ୍‌କରଙ୍କ ସାମାଜିକ ଦର୍ଶନର ଭିତ୍ତିଭୂମି ଥିଲା ପ୍ରାଚୀନ ରକ୍ଷଣଶୀଳ ପରମ୍ପରାକୁ ଉଚ୍ଛେଦ କରି ନୂତନ ପ୍ରଗତିଶୀଳ ଦର୍ଶନରେ ସମାଜକୁ ଉଦ୍‌ବୁଦ୍ଧ କରିବା । ଏହି ଦୃଷ୍ଟଭଙ୍ଗୀରେ ଭାରତ ମାଟିରେ ଜନ୍ମ ନେଇ ବିଶ୍ୱ ପ୍ରସିଦ୍ଧି ଲାଭ ପରେ ଧୀରେ ଧୀରେ ବିଲୟ ହୋଇ ଯାଉଥିବା ବୌଦ୍ଧ ଧର୍ମକୁ ପୁନରୁଦ୍ଧାର କରିବାପାଇଁ ସେ ୧୯୫୬ ମସିହା ଅକ୍ଟୋବର ୧୪ ତାରିଖ ଦିନ ପ୍ରାୟ ତିନି ଲକ୍ଷ ଅନୁଗାମୀଙ୍କ ସହ ବୌଦ୍ଧ ଧର୍ମ ଗ୍ରହଣ କଲେ । ଧର୍ମାନ୍ତର ପରେ ପରେ ଡକ୍ଟର ଆମ୍ବେଦ୍‌କର ବ୍ରିଟିଶ୍ ବ୍ରୋଡ୍‌କାଷ୍ଟିଙ୍ଗ୍ କର୍ପୋରେଶନରୁ ବିଶ୍ୱବାସୀଙ୍କୁ କହିଥିଲେ, ବୌଦ୍ଧ ଧର୍ମରେ ତିନୋଟି ସାରମର୍ମ ପାଇଁ ବୌଦ୍ଧ ଧର୍ମ ଗ୍ରହଣ କରିଛନ୍ତି । ତାହା ହେଲା 'ପ୍ରଜ୍ଞା', 'କରୁଣା' ଓ 'ସମତା' । ଗୌତମ ବୁଦ୍ଧଙ୍କର ମହାନ୍ ଦର୍ଶନରେ ଉଦ୍‌ବୁଦ୍ଧ ହେବାପାଇଁ ସେ ବିଶ୍ୱବାସୀଙ୍କୁ ଆହ୍ୱାନ ଦେଇଥିଲେ । ଆଧୁନିକ

ସମାଜ ଗଠନ ଓ ଆଧୁନିକ ଜୀବନ ଯାପନପାଇଁ ବୌଦ୍ଧ ଦର୍ଶନରେ ଯଥେଷ୍ଟ ପ୍ରଗତିମୂଳକ ଉପାଦାନ ରହିଛି ବୋଲି ସେ ଦର୍ଶାଇଥିଲେ । ମୁକ୍ତି, ସାମ୍ୟ ଓ ମୈତ୍ରୀ ଫରାସୀ ବିପ୍ଳବ (୧୭୮୯)ର ଦାର୍ଶନିକ ତଥ୍ୟ ନୁହେଁ, ବୌଦ୍ଧ ଧର୍ମର ମୌଳିକ ତତ୍ତ୍ୱ ବୋଲି ସେ କହିଥିଲେ । ଭାରତୀୟ ସଂସ୍କୃତିର ପୁନରୁଦ୍ଧାର ଓ ଆଧୁନିକ ଜୀବନ ଯାପନର ଏକ ଦାର୍ଶନିକ ଦିଗ୍‌ଦର୍ଶନ ତାଙ୍କ ବୌଦ୍ଧ ଧର୍ମ ଗ୍ରହଣର ଅନ୍ୟ ଏକ ଲକ୍ଷ୍ୟ ଥିଲା । ଏହା ତାଙ୍କ ଦେଶଭକ୍ତିର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ । ଶ୍ରଦ୍ଧାରେ ଲୋକମାନେ ଡକ୍ଟର ଆମ୍ବେଦକରଙ୍କୁ 'ବାବାସାହେବ' ବୋଲି ଡାକିଲେ । ଧର୍ମ ପରିବର୍ତ୍ତନ ପରେ ବାବାସାହେବ ନେପାଳ, କାଠମାଣ୍ଡୁ, ସିଂହଳ, ଥାଇଲାଣ୍ଡ ଇତ୍ୟାଦି ଦେଶରେ ବୌଦ୍ଧ ସମ୍ମିଳନୀ ମାନଙ୍କରେ ଯୋଗ ଦେଇ ନିଜର ବୌଦ୍ଧ ଦର୍ଶନର ନବ-ଉତ୍ତରଣ ପ୍ରସାରିତ କରିଥିଲେ । ବାସ୍ତବିକ ସେ ଥିଲେ ମୁକୁଟ ବିହୀନ ବୌଦ୍ଧ ସମ୍ରାଟ ଦ୍ୱିତୀୟ ଅଶୋକ । ମୁମ୍ବାଇର ଦାଦର ଠାରେ ନିଜର ଉତ୍ତୁଙ୍ଗ ବାସଗୃହର ନାମ ଦେଇଥିଲେ 'ରାଜଗୃହ', ଯାହା ଏକଦା ଥିଲା ମୌର୍ଯ୍ୟବଂଶର ଶେଷ ବୌଦ୍ଧ ସମ୍ରାଟ ବୃହଦ୍ରଥଙ୍କ ରାଜପ୍ରାସାଦର ନାମ । ବିଜ୍ଞମାନେ ତାଙ୍କୁ ମୋଜେସ୍ ଓ ଆବ୍ରାହାମ ଲିଙ୍କନଙ୍କ ସହିତ ମଧ୍ୟ ତୁଳନା କରିଥାନ୍ତି । ଏହି ମହାନ୍ ଚିନ୍ତାନାୟକ ତଥା ଭାରତୀୟ ସମ୍ବିଧାନର ଜନକଙ୍କର ପରିନିର୍ବାଣ ଘଟିଲା ୧୯୫୬ ମସିହା ଡିସେମ୍ବର ୬ ତାରିଖ ଦିନ ରାତ୍ରୀରେ । ତାଙ୍କର ଶେଷ ପୁସ୍ତକ 'Buddha and His Dhamma' ର ମୁଖବନ୍ଧ ଲେଖି ସାରି ସେଦିନ ରାତିରେ ସେ ଶୋଇ ପଡ଼ିଲେ ନିଦ୍ରାରେ ଚିର ଦିନପାଇଁ ।

**ଭାରତରତ୍ନ**

ନ୍ୟାୟ, ସାମ୍ୟ, ମୁକ୍ତି ଓ ମାନବିକ ଅଧିକାରର ମହାନାୟକ ଡକ୍ଟର ବାବାସାହେବ ଆମ୍ବେଦ୍‌କରଙ୍କର ଜନ୍ମ ଶତବାର୍ଷିକୀ (୧୯୯୦-୯୧) ପାଳନ ଅବସରରେ ରାଷ୍ଟ୍ରର ସର୍ବୋଚ୍ଚ ସମ୍ମାନ 'ଭାରତ ରତ୍ନ'ଦ୍ୱାରା ତାଙ୍କୁ ସମ୍ମାନିତ କରାଯାଇଛି । ଏହି ବର୍ଷକୁ 'ସାମାଜିକ ନ୍ୟାୟ' ବର୍ଷ ରୂପେ ମଧ୍ୟ ପାଳନ କରାଯାଇଛି । ଦେଶ ବିଦେଶରେ ଡକ୍ଟର ଆମ୍ବେଦ୍‌କରଙ୍କର ରାଜନୈତିକ ଓ ସାମ୍ବିଧାନିକ ଦର୍ଶନ ଦ୍ରୁତ ଗତିରେ ଲୋକପ୍ରିୟତା ହାସଲ କରିବା ଅତ୍ୟନ୍ତ ଗୌରବର କଥା । ଡକ୍ଟର ନେଲସନ୍ ମଣ୍ଡେଲା ଭାରତ ଗସ୍ତରେ ଆସି ଏଠାରେ କହିଛନ୍ତି ଯେ ଦକ୍ଷିଣ ଆଫ୍ରିକାର ସମ୍ବିଧାନ ପ୍ରଣୟନରେ ଡକ୍ଟର ଆମ୍ବେଦ୍‌କରଙ୍କ ଦର୍ଶନ ଅନୁକରଣ କରାଯିବ । ସେହିପରି ପାଲେଷ୍ଟାଇନ୍‌ର ମୁକ୍ତି ସଂଗ୍ରାମୀ ନେତା ୟାସେର୍ ଆରାଫତ୍ ମଧ୍ୟ ଡକ୍ଟର ଆମ୍ବେଦକରଙ୍କର ରାଜନୈତିକ ଦର୍ଶନ ତାଙ୍କ ଦେଶର ସମ୍ବିଧାନରେ ସନ୍ନିବେଶିତ ହେବ ବୋଲି ପ୍ରକାଶ କରିବା ଅତ୍ୟନ୍ତ ଗୌରବର ବିଷୟ । ଡକ୍ଟର ଆମ୍ବେଦ୍‌କର ଏକା ଧାରରେ ଥିଲେ ଜଣେ ବିଶ୍ୱ ବିଖ୍ୟାତ ସାମାଜିକ କ୍ରାନ୍ତିକାରୀ, ବିଶିଷ୍ଟ ଶିକ୍ଷାବିତ୍, ଅର୍ଥନୀତିଜ୍ଞ, ସମ୍ବିଧାନର ଜନକ ଓ ଆଧୁନିକ ଭାରତର ନିର୍ମାତା । ବିଂଶ ଶତାବ୍ଦୀର ବିଶ୍ୱ ଇତିହାସରେ ସେ ଏକ ଉଜ୍ଜ୍ୱଳ ନକ୍ଷତ୍ର ।

# ଇତିହାସର ମୋଡ଼ ବଦଳାଇଥିବା ଏକ ଘଟଣା

ଧନେଶ୍ୱର ସାହୁ

ଗୋଟିଏ ଗୋଟିଏ ଘଟଣା ଏକ୍ସକ ରାଷ୍ଟ୍ରର ଇତିହାସରେ ନିର୍ଣ୍ଣାୟକ ମନେ ହୋଇଥାଏ । ନିର୍ଣ୍ଣାୟକ ଏଥିପାଇଁ ଯେ ସେହି ଘଟଣା ବହୁ ଭାବରେ ଭବିଷ୍ୟତରେ ଘଟଣା ପ୍ରବାହକୁ ଗଭୀର ଭାବେ ପ୍ରଭାବିତ କରିଥାଏ । ଫରାସୀ ବିପ୍ଳବ ଫ୍ରାନ୍ସର ଜାତୀୟ ଜୀବନକୁ ଗଭୀର ଭାବରେ ପ୍ରଭାବିତ କରିଥିବା ବା ଚାଇନାରେ କମ୍ୟୁନିଷ୍ଟ ବିପ୍ଳବ ଚୀନ୍‌ର ଭବିଷ୍ୟତ ନିର୍ମାଣ ଦିଗରେ ଉଲ୍ଲେଖନୀୟ ଭୂମିକା ନେଇଥିବା ଇତିହାସରେ ସୁବିଦିତ । ଏହି ପୃଷ୍ଠଭୂମିରେ ଆମ ଦେଶର ଜାତୀୟ ଦୃଶ୍ୟପଟରେ ଦୁଇଟି ଘଟଣାର ପ୍ରଭାବକୁ ବିଚାର କରିବା ଏଠାରେ ଆମର ଲକ୍ଷ୍ୟ ।

୧୯୨୭ ମସିହାର ମାର୍ଚ୍ଚ ୧୯ ଓ ୨୦ ଦିନ ହୋଇଥିବା ମହାରାଷ୍ଟ୍ରର ମହାଡ଼ଠାରେ ଦଳିତ ସମ୍ମିଳନୀ ଭାରତ ଇତିହାସରେ ଏକ ଅବିସ୍ମରଣୀୟ ଘଟଣା । କୋଲାବ ଜିଲ୍ଲାର ମହାଡ଼ଠାରେ 'ଡିପ୍ରେସ୍‌ଡ କ୍ଲାସ୍'ର କର୍ମକର୍ତ୍ତାମାନେ ଆମ୍ବେଦକରଙ୍କ ନେତୃତ୍ୱରେ ଦଳିତ ଲୋକଙ୍କର ନାଗରିକ ଅଧିକାରପାଇଁ ଏକ ସମ୍ମିଳନୀର ଆୟୋଜନ କଲେ । ମହାରାଷ୍ଟ୍ରରେ ପ୍ରାୟ ସବୁ ଜିଲ୍ଲାରୁ ଦଶ ହଜାର ଦଳିତ ଲୋକ ସେହି ସମ୍ମିଳନୀରେ ଯୋଗ ଦେଇଥିଲେ । ସେହି ସମ୍ମିଳନୀକୁ ସଫଳ କରିବାପାଇଁ ଦଳିତ ନେତାମାନେ ଦୁଇ ମାସ ଧରି ପ୍ରୟାସ କରିଥିଲେ । ଏତେ ଲୋକଙ୍କର ରହିବା ଓ ପାଣି ପିଇବାପାଇଁ ମଧ୍ୟ ବ୍ୟବସ୍ଥା କରିଥିଲେ, କାରଣ ସେତେବେଳେ ଦଳିତମାନେ ସବର୍ଣ୍ଣ ବା ଉଚ୍ଚଜାତିର ଲୋକଙ୍କ ଘରେ ପାଣି ବି ପିଇ ପାରୁ ନଥିଲେ । ଅସହାୟ, ମୂକ, ଭୋକିଲା ଓ ନିରୀହ ଲୋକମାନଙ୍କୁ ଆମ୍ବେଦକର ଭାଷଣ ଦେଇ ସେମାନଙ୍କୁ କିପରି ଅସ୍ପୃଶ୍ୟ କହି ନାନା ନିର୍ଯ୍ୟାତନା ଦିଆଯାଉଛି ଓ ସର୍ବନିମ୍ନ ମାନବିକ ଅଧିକାରରୁ ବଞ୍ଚିତ କରାଯାଇଛି ତାହା ଅତି ଭାବଗର୍ଭକ ଭାବେ ବର୍ଣ୍ଣନା କଲେ । ସେମାନଙ୍କୁ ତଥାକଥିତ ଉଚ୍ଚ-ଜାତିର ଲୋକମାନେ କିପରି ଚାପି କରି ରଖିଛନ୍ତି, ତାହା ବୁଝାଇବା ସହିତ ଶିକ୍ଷା, ସ୍ୱାବଲମ୍ବନଶୀଳତା ଓ ସ୍ୱାଭିମାନ ଉପରେ ଗୁରୁତ୍ୱ ଦେଇଥିଲେ । ସରକାର ବି କିପରି ସେମାନଙ୍କୁ ଦୁର୍ଦ୍ଦଶା ପ୍ରତି ଉଦାସିନ, ତାହା ମଧ୍ୟ ବୁଝାଇଲେ । ଏହି ବର୍ଗର ପିଲାମାନେ ଯେପରି ପାଠ ପଢ଼ିବେ ଓ ଆତ୍ମ ମର୍ଯ୍ୟାଦା ନେଇ ଜୀବନ ବଞ୍ଚିବେ ଏବଂ ତଥାକଥିତ ଅସ୍ପୃଶ୍ୟମାନେ ଯେପରି ସେମାନଙ୍କର ନାଗରିକ ଅଧିକାର ପାଇବେ, ସେଥିପାଇଁ ସଂଗ୍ରାମପାଇଁ ସେ ଆହ୍ୱାନ ଦେଇଥିଲେ । ସେହି ସମ୍ମିଳନୀ ପୂର୍ବରୁ ମହାଡ ମ୍ୟୁନିସିପାଲିଟି ସରକାରୀ

ପରିଚାଳିତ ସ୍କୁଲ ଓ ଡାକ୍ତରଖାନା ତଥା ସର୍ବସାଧାରଣ ଜଳାଶୟରୁ ଜଳ ବ୍ୟବହାର କରିବାପାଇଁ ଦଳିତ ମାନଙ୍କର ଅଧିକାର ଅଛି ବୋଲି ଏକ ନିୟମ କରିଥିଲେ । ତେବେ ଉଚ୍ଚଜାତିର ଲୋକଙ୍କ ବିରୋଧ ଯୋଗୁଁ ତାହା କାର୍ଯ୍ୟକାରୀ କରାଯାଉ ନଥିଲା । ସେଦିନ ସଭାରେ ନିଷ୍ପତ୍ତି ହେଲା ଯେ, ଚୌଦ୍ୱାର ସର୍ବସାଧାରଣ ପୁଷ୍କରିଣୀରୁ ସେମାନେ ଜଳ ପିଇବେ । ନିଷ୍ପତ୍ତି ଅନୁଯାୟୀ ତା ପର ଦିନ ହଜାରହଜାର ଦଳିତ ଲୋକ ଆମ୍ବେଦକରଙ୍କ ନେତୃତ୍ୱରେ ଯାଇ ଜଳାଶୟରୁ ଆଞ୍ଜୁଳାରେ ପାଣି ପିଇ ହିନ୍ଦୁ ଜାତି ବ୍ୟବସ୍ଥାକୁ ପ୍ରତ୍ୟାଖ୍ୟାନ କରିଥିଲେ । ସେମାନେ ସେଠାରୁ ଫେରି ସମ୍ମିଳନୀର ଶେଷ ଘୋଷଣା କଲେ । ଏହାପରେ ଅନେକ ପ୍ରତିନିଧି ସ୍ଥାନ ଛାଡ଼ି ନିଜନିଜ ଅଞ୍ଚଳକୁ ବାହାରିଗଲେ ଓ କେତେକ ଖାଦ୍ୟ ଖାଇ ସ୍ଥାନ ଛାଡ଼ିବାକୁ ପ୍ରସ୍ତୁତ ହେଉଥିଲେ । ଏହି ସମୟରେ ସହରରେ ପ୍ରଚାରିତ ହୋଇଗଲା ଯେ, ଦଳିତ ଅସ୍ପୃଶ୍ୟମାନେ ପୋଖରୀରୁ ପାଣି ପିଇ ସ୍ଥାନୀୟ ମନ୍ଦିର ଭିତରେ ପ୍ରବେଶ କରିବେ । ଶହଶହ ଲୋକ ଠେଙ୍ଗା ଓ ମାରଣାସ୍ତ୍ର ଧରି ସମ୍ମିଳନୀ ସ୍ଥାନକୁ ଆସି ସେଠାରେ ଥିବା ଲୋକମାନଙ୍କୁ ପିଟିଲେ, ସେମାନଙ୍କର ଖାଦ୍ୟ, ପଦାର୍ଥ ନଷ୍ଟ କଲେ ଓ ସମ୍ମିଳନୀ ସ୍ଥାନଟିକୁ ଭାଙ୍ଗିରୁଜି ପକାଇଲେ । ଲୋକମାନେ କ'ଣ ହେଉଛି ବୁଝିବା ପୂର୍ବରୁ ସେମାନଙ୍କ ଉପରେ ମରଣାନ୍ତକ ଆକ୍ରମଣ ହେଲା । ତାହା ଏକ ଖଣ୍ଡ ଯୁଦ୍ଧର ପରିଣତ ହୋଇଥାନ୍ତା, କିନ୍ତୁ ଆମ୍ବେଦକର ଶାନ୍ତ ଓ ଅହିଂସା ରହିବାକୁ ନିଜର ଲୋକମାନଙ୍କୁ ବାରମ୍ବାର ନିବେଦନ କଲେ, ଏହାପରେ ପୁଲିସ୍ ଘଟଣା ସ୍ଥଳରେ ପହଞ୍ଚିଲେ । ତେବେ ଘଟଣାଟି ଏହିଠାରେ ସରିଲା ନାହିଁ । କିଛି ଦିନ ଭିତରେ ରକ୍ଷଣଶୀଳ ଉଚ୍ଚ ଜାତିର ଲୋକମାନଙ୍କର ବୈଠକ ହେଲା ଓ ସେଠାରେ ଅପବିତ୍ର ପୁଷ୍କରିଣୀକୁ ପବିତ୍ର କରାଯିବାର ପ୍ରସ୍ତାବ ନିଆଗଲା । ଏକ ଶହ ଆଠଟି କଳସୀରେ ଗୋବର, ଗୋମୂତ୍ର, କ୍ଷୀର ନିଆଯାଇ ପୁଷ୍କରିଣୀରେ ଢଳାଗଲା ଓ ବ୍ରାହ୍ମଣମାନେ ମନ୍ତ୍ରପାଠ କରି ଜଳାଶୟକୁ ଶୋଧନ କଲେ । ଏହା ପରେ ଗାଁଗାଁକୁ ସମ୍ବାଦ ପଠାଗଲା ଓ ବିଭିନ୍ନ ଗ୍ରାମମାନଙ୍କରେ ଦଳିତମାନଙ୍କୁ ଏଭଳି ଧର୍ମବିରୋଧି କାର୍ଯ୍ୟ ନ କରିବାକୁ ଧମକ ଦିଆଗଲା । ଯେଉଁଠି କିଛି ପ୍ରତିବାଦ ହେଲା, ସେହି ଲୋକମାନଙ୍କୁ ଆର୍ଥିକ ବାସନ୍ଦ କରାଗଲା ଓ ଦଳିତମାନଙ୍କ ପ୍ରତି ସତର୍କ ରହିବାକୁ ସବର୍ଣ୍ଣ ଲୋକମାନେ ସଂଗଠିତ ହେବାକୁ ଲାଗିଲେ । କୌତୂହଳର ବିଷୟ ଯେଉଁ ପୁଷ୍କରିଣୀରୁ ମୁସଲମାନ, ଖ୍ରୀଷ୍ଟିୟାନ ଇତ୍ୟାଦି ଅନ୍ୟ ଧର୍ମର ଲୋକମାନେ ଅବାଧରେ ଜଳ ନେଇ ପାରୁଥିଲେ, ସେଇଠାରୁ ନିଜ ଧର୍ମର ଦଳିତମାନଙ୍କୁ ବାରଣ କରାଯାଉଥିଲା । ଏହା ଆମ୍ବେଦକରଙ୍କ ପରି ସଚେତନ, ଶିକ୍ଷିତ ଓ ସ୍ୱାଭିମାନୀ ମଣିଷକୁ ବହୁ ଆଘାତ ଦେଇଥିଲା ।

ଆମ୍ବେଦକର ସେ ଯେତେବେଳେ ଯୁଗଯୁଗର ସାମାଜିକ ଦାସତ୍ୱ, ଅତ୍ୟାଚାର ଓ ବର୍ବରତା ବିରୋଧରେ ସ୍ୱର ଉଠାଇଥିଲେ ତାଙ୍କୁ ନାନା ବିରୋଧରେ ପରିପ୍ରେକ୍ଷୀରେ

ଦେଖିଲେ, ଭାରତବର୍ଷରେ ଅନେକ ସମାଜ ସଂସ୍କାରକ ଭାରତୀୟ ସମାଜର ଅନ୍ୟାୟ, ବୈଷମ୍ୟକୁ ଅନୁଭବ କରିଛନ୍ତି ସତ, ତେବେ ସେମାନେ ସଂସ୍କାରର ବାର୍ତ୍ତାକୁ ଏକ ନିର୍ଦ୍ଦିଷ୍ଟ ପରିସର ଭିତରେ ସୀମିତ ରଖିଛନ୍ତି । କିନ୍ତୁ ଫୁଲେ, ପେରିୟାର, ଆମ୍ବେଦକର ସାମାଜିକ ବିପ୍ଳବର ଯେଉଁ ପରିକଳ୍ପନା କରିଥିଲେ ତାହା ଏପର୍ଯ୍ୟନ୍ତ ଏ ଦେଶରେ ଗଣତନ୍ତ୍ରରେ ସମ୍ଭବ ହୋଇନାହିଁ । ରାଜନୈତିକ ଗଣତନ୍ତ୍ର ସାମାଜିକ ଗଣତନ୍ତ୍ରରେ ଏପର୍ଯ୍ୟନ୍ତ ବି ସମ୍ପୂର୍ଣ୍ଣ ରୂପାୟିତ ହୋଇନାହିଁ । ସଭ୍ୟ ଜୀବନରେ ସ୍ତରକୁ ଆସିବାପାଇଁ ଆହୁରି ଅନେକ ବାଟ ଯିବାକୁ ବାକି ଅଛି । ଏହି ଆମ୍ବେଦକରଙ୍କୁ ସ୍ମରଣ କରିବା ଓ ତାଙ୍କଦ୍ୱାରା ଅନୁପ୍ରାଣିତ ହେବା ପ୍ରତ୍ୟେକ ନାଗରିକଙ୍କର ସାମାଜିକ କର୍ତ୍ତବ୍ୟ ବୋଲି ହୃଦ୍‌ବୋଧ ହୁଏ ।

# ସମ୍ବିଧାନ ପ୍ରଣେତା ଡକ୍ଟର ଆମ୍ବେଦକର

ସୌରୀବନ୍ଧୁ କର

୧୫ ଅଗଷ୍ଟ ୧୯୪୭ ମସିହାରେ ଭାରତ ସ୍ୱାଧୀନତା ଲାଭ କଲା । ପଣ୍ଡିତ ନେହେରୁ ଯେଉଁ ମନ୍ତ୍ରୀମଣ୍ଡଳ ଗଠନ କଲେ ସେଥିରେ ଡକ୍ଟର ଆମ୍ବେଦକର ଆଇନମନ୍ତ୍ରୀ ଭାବରେ ଯୋଗଦେଲେ । ସମ୍ବିଧାନ ସଭା ସମ୍ବିଧାନ ନିର୍ମାଣପାଇଁ ଯେଉଁ ଡ୍ରାଫ୍ଟିଙ୍ଗ୍ କମିଟି କଲେ, ତା'ର ହେଲେ ସେ ଅଧ୍ୟକ୍ଷ ।

ଡ୍ରାଫ୍ଟିଙ୍ଗ୍ କମିଟି ୧୪୧ ଦିନ ଏହି କାର୍ଯ୍ୟରେ ମନୋନିବେଶ କରିଥିଲେ । ୧୯୪୮ ଫେବ୍ରୁୟାରୀ ୨୧ ତାରିଖ ଦିନ ଚିଠା ସମ୍ବିଧାନକୁ ଅଧ୍ୟକ୍ଷ ଡକ୍ଟର ଆମ୍ବେଦକର ସମ୍ବିଧାନ ସଭାର ସଭାପତି ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କ ହାତରେ ଅର୍ପଣ କଲେ । ଏହି ଚିଠା ସମ୍ବିଧାନ ସମସ୍ତ ପ୍ରାଦେଶିକ ଆସେମ୍ବ୍ଲିକୁ ସେମାନଙ୍କର ମତାମତପାଇଁ ପଠାଗଲା । ୧୯୪୮ ନଭେମ୍ବର ୪ ତାରିଖରେ ସମ୍ବିଧାନ ସଭାରେ ଏହି ଚିଠା ସମ୍ବିଧାନକୁ ଡକ୍ଟର ଆମ୍ବେଦକର ଆଗତ କରି ସମ୍ବିଧାନର ରୂପରେଖ ସମ୍ପର୍କରେ ସୂଚନା ଦେଇ ସମ୍ବିଧାନ ସଭା ମାଧ୍ୟମରେ ଭାରତର ଲୋକମାନେ ଏହାକୁ ଅନୁମୋଦନ କରିବାକୁ ସେ ଉପସ୍ଥାପିତ କରି କହିଲେ, "ଦେଶକୁ ପ୍ରାରମ୍ଭିକ ଭାବରେ ଚଳାଇବାକୁ ଏହା ଏକ ଉତ୍ତମ ପ୍ରଚେଷ୍ଟା ।"

"ସଭାପତି ମହାଶୟ; ମୁଁ ଡ୍ରାଫ୍ଟିଙ୍ଗ୍ କମିଟିଦ୍ୱାରା ନିର୍ଦ୍ଧାରିତ ହୋଇଥିବା ଚିଠା ସମ୍ବିଧାନ ବିଚାରପାଇଁ ଉପସ୍ଥାପିତ କରୁଛି ।"

ଏହି ଚିଠା ସମ୍ବିଧାନ ଯାହାକୁ ଡ୍ରାଫ୍ଟିଂ କମିଟି ପ୍ରସ୍ତୁତ କରିଛି ବଡ଼ ଦୁର୍ଜ୍ଜୟ ଦସ୍ତାବିଜ । ଏଥିରେ ୩୧୫ ଅନୁଚ୍ଛେଦ (Article) ଓ ୮ ଅନୁସୂଚୀ (Schedule) ରହିଛି । ଏହା ସ୍ୱୀକାର୍ଯ୍ୟ ଯେ କୌଣସି ଦେଶର ସମ୍ବିଧାନ ଭାରତର ଏହି ଚିଠା ସମ୍ବିଧାନ ପରି ବୃହତ କଳେବର ନୁହେ । ଯେଉଁମାନେ ଏହାକୁ ଭଲଭାବରେ ଅନୁଧାନ କରିନାହାନ୍ତି, ସେମାନେ ଏହି ସମ୍ବିଧାନର ପ୍ରମୁଖ ଓ ବିଶେଷ ବୈଶିଷ୍ଟ୍ୟ ହୃଦୟଙ୍ଗମ କରିପାରିବେ ନାହିଁ ।

ଏହି ଚିଠା ସମ୍ବିଧାନ ସର୍ବସାଧାରଙ୍କ ଗୋଚରାର୍ଥେ ଦୀର୍ଘ ୮ ମାସ ଧରି ରଖା ଯାଇଛି । ଏହି ଦୀର୍ଘ ସମୟ ମଧ୍ୟରେ ବନ୍ଧୁ, ସମାଲୋଚକ, ବିରୋଧୀମାନେ ବହୁ ସମୟ ଦେଇ ସେମାନଙ୍କ ପ୍ରତିକ୍ରିୟା ଏଥିରେ ଥିବା ବ୍ୟବସ୍ଥା ସମ୍ପର୍କରେ ପ୍ରକାଶ କରିଛନ୍ତି । ମୁଁ ଦୃଢ଼ ଭାବରେ କହିପାରେ ଯେ ସେଥିରୁ କେତେକ ଭୂଲ ବୁଝାମଣାରୁ ସୃଷ୍ଟି ଏବଂ ଅନ୍ୟ କେତେକ

ଅନୁଚ୍ଛେଦ ସମ୍ପର୍କିତ ଆବଶ୍ୟକୀୟ ବୁଝାମଣାର ଅଭାବ । କିନ୍ତୁ ସେମାନଙ୍କର ସେହି ସମାଲୋଚନା ରହିଛି ଏବଂ ସେମାନଙ୍କୁ ଉତ୍ତର ଦେବାକୁ ହେବ ।

ଏହି ଉଭୟ କାରଣରୁ ଏହା ଆବଶ୍ୟକ ଯେ ପ୍ରସ୍ତାବ ବିଚାରପାଇଁ ଯିବାବେଳେ, ମୁଁ ଏହାର ବୈଶିଷ୍ଟ୍ୟ ପ୍ରତି ଆପଣଙ୍କର ଦୃଷ୍ଟି ଆକର୍ଷଣ କରୁଛି ଏବଂ ଯେଉଁ ସମାଲୋଚନା ଏହା ଉପରେ ଲଦାଯାଇଛି, ତାର ମୁକାବିଲା କରାଯାଇଛି ।

ସମ୍ବିଧାନ ଆଇନର ଛାତ୍ର ହାତରେ ଯଦି ଏହି ସମ୍ବିଧାନର ଏକ କିତା ନକଲ ଦିଆଯାଏ, ତେବେ ସେ ନିଶ୍ଚୟ ଦୁଇଟି ପ୍ରଶ୍ନ ପଚାରିବେ । ପ୍ରଥମତଃ ଏହି ସମ୍ବିଧାନରେ କି ପ୍ରକାର ସରକାର ସଂଘୀୟ ସଂପର୍କରେ ମନନ କରାଯାଇଛି ଏବଂ ଦ୍ୱିତୀୟରେ ସମ୍ବିଧାନରେ ରୂପରେଖ କ'ଣ ? କାରଣ ଏହି ଦୁଇଟି ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ଯାହାକୁ ପ୍ରତ୍ୟେକ ସମ୍ବିଧାନ ବିଚାରକ ପଚାରିବେ । ମୁଁ ଏହି ଦୁଇଟି ପ୍ରଶ୍ନରୁ ହିଁ ଆରମ୍ଭ କରିବି ।

ଚିଠା ସମ୍ବିଧାନରେ, ଭାରତୀୟ ସଂଘର ମୁଖ୍ୟ ପୁରୋଧାଙ୍କୁ ଭାରତୀୟ ସଂଘର ରାଷ୍ଟ୍ରପତି ଭାବରେ ଆମେରିକାର ରାଷ୍ଟ୍ରପତିଙ୍କ ପରି କୁହାଯାଇଛି । କେବଳ ନାମଟି ପରସ୍ପର ସହିତ ସମାନ ହେଲେ ହେଁ, ସେମାନଙ୍କ ମଧ୍ୟରେ ଆମେରିକାର ସରକାରର ରୂପ ବା ଭାରତୀୟ ବା ଭାରତୀୟ ଚିଠା ସମ୍ବିଧାନର ରୂପ ସମ୍ପର୍କରେ ଅନ୍ୟ କୌଣସି ସାମଞ୍ଜସ୍ୟ ନାହିଁ । ଆମେରିକାରେ ଯେଉଁ ସରକାରୀ ରୂପ ରହିଛି, ତାହା ରାଷ୍ଟ୍ରପତି ପ୍ରଧାନ ସରକାର । ଚିଠା ସମ୍ବିଧାନ ଯାହା ପ୍ରସ୍ତାବ ରଖିଛି ତାହା ହେଉଛି ଗଣତାନ୍ତ୍ରିକ ବ୍ୟବସ୍ଥା । ତେଣୁ ଉଭୟ ମୌଳିକଭାବେ ତଫାତ୍ ଅଟନ୍ତି ।

ଆମେରିକାର ରାଷ୍ଟ୍ରପତି ଶାସନ ବ୍ୟବସ୍ଥାରେ ରାଷ୍ଟ୍ରପତି ଶାସନ ମୁଖ୍ୟ । ସମ୍ବିଧାନରେ ସମସ୍ତ ଶାସନଗତ ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ । ବ୍ରିଟିଶ ସମ୍ବିଧାନରେ ରାଣୀଙ୍କର ସ୍ଥିତି ଯାହା, ଚିଠା ସମ୍ବିଧାନରେ ରାଷ୍ଟ୍ରପତି ସେହି ସ୍ଥାନ ମଣ୍ଡନ କରନ୍ତି । ସେ ରାଷ୍ଟ୍ରର ମୁଖ୍ୟ କିନ୍ତୁ ଶାସନର ମୁଖ୍ୟ ନୁହନ୍ତି । ସେ ରାଷ୍ଟ୍ରର ପ୍ରତିନିଧିତ୍ୱ କରନ୍ତି କିନ୍ତୁ ରାଷ୍ଟ୍ରକୁ ଶାସନ କରନ୍ତି ନାହିଁ ।

ଆମ୍ବେଦକର ଆମେରିକାର ରାଷ୍ଟ୍ରପତି ଶାସନ ବ୍ୟବସ୍ଥା ସହିତ ତୁଳନା କରି କହିଲେ ଯେ ଏକ ଗଣତାନ୍ତ୍ରିକ କାର୍ଯ୍ୟନିର୍ବାହୀ (Democratic Executive) ଦୁଇଟି ଅବସ୍ଥାକୁ ପୂରଣ କରୁଥିବା ଆବଶ୍ୟକ ।

୧– ଏହା ଏକ ସ୍ଥାୟୀ କାର୍ଯ୍ୟନିର୍ବାହୀ ହୋଇଥିବ ।

୨– ଏହା ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟନିର୍ବାହୀ ହୋଇଥିବ ।

କିନ୍ତୁ ଦୁର୍ଭାଗ୍ୟ ବଶତଃ ସମାନୁପାତିକ ଭାବେ ଉଭୟ ଅବସ୍ଥାକୁ ପୂରଣ କରୁଥିବା ବ୍ୟବସ୍ଥା ଏ ପର୍ଯ୍ୟନ୍ତ ବାହାରି ପାରି ନଥିବାରୁ ଚିଠା ସମ୍ବିଧାନ ଲୋକ ପ୍ରତିନିଧିମୂଳକ

କାର୍ଯ୍ୟନିର୍ବାହୀ ପ୍ରସ୍ତାବକୁ ଗ୍ରହଣ କରଛି କାରଣ ଏହାର ସ୍ଥାୟିତ୍ୱ କମ୍ ହେଲେ ମଧ୍ୟ ଏହାର ଦାୟିତ୍ୱ ବେଶି ।

ଏହାପରେ ଆମ୍ବେଦକର ଭାରତୀୟ ସଂଘୀୟ ଅବସ୍ଥାର ରୂପ, କେନ୍ଦ୍ର ରାଜ୍ୟ ସମ୍ପର୍କ, ସଂଖ୍ୟାଲଘୁମାନଙ୍କର ସୁରକ୍ଷା ଇତ୍ୟାଦି ସମ୍ପର୍କରେ ବୁଝାଇ ଥିଲେ । ସମ୍ବିଧାନରେ ଥିବା ମୌଳିକ ଅଧିକାର (Fundamental Rights), ରାଷ୍ଟ୍ରରେ ନିର୍ଦ୍ଦେଶନୀତି (Directive Principles of State Policy), ଭାରତୀୟ ସଂଘୀୟ ବ୍ୟବସ୍ଥାର ନାମତାଲିକା (Nomenclature of the Indian Federation) ଏବଂ ସମ୍ବିଧାନର ସଂଶୋଧନ ଇତ୍ୟାଦିର ଉତ୍ତର ଦେଇ ତାଙ୍କର ଐତିହାସିକ ଭାଷଣ ଶେଷ କରିବା ପୂର୍ବରୁ କହିଲେ-

"ମୁଁ ବିଶ୍ୱାସ କରୁଛି ଯେ ଚିଠାସମିତି (Drafting Committee) ଦ୍ୱାରା ନିର୍ଦ୍ଧାରିତ ହୋଇଥିବା ଚିଠା ସମ୍ବିଧାନ ଉପରେ ଯେଉଁ ସବୁ ଆଲୋଚନା ହୋଇଥିଲା, ମୁଁ ତାର ବିଶଦ ଆଲୋଚନା କରିଛି । ମୁଁ ଭାବୁଛି ଯେ ମୁଁ କୌଣସି ଗୁରୁତ୍ୱପୂର୍ଣ୍ଣ ସମାଲୋଚନା ବା ମତକୁ ଛାଡ଼ିନାହିଁ ଯାହା ଦୀର୍ଘ ୮ ମାସ ମଧ୍ୟରେ କରାଯାଇଛି ଯେଉଁ ସମୟରେ ସମ୍ବିଧାନକୁ ସର୍ବସାଧାରଣଙ୍କ ସମ୍ମୁଖରେ ରଖାଯାଇଛି । ବର୍ତ୍ତମାନ ଏହା ସମ୍ବିଧାନ ସଭାର ନିଷ୍ପତ୍ତି ଉପରେ ନିର୍ଭର କରେ । ସେମାନେ ଏହାକୁ ଚିଠାସମିତି (Drafting Committee) ଯାହା ନିର୍ଦ୍ଧାରିତ କରିଛନ୍ତି, ତାକୁ ଗ୍ରହଣ କରିପାରନ୍ତି କିମ୍ବା ଗ୍ରହଣ କରିବା ପୂର୍ବରୁ ଏଥିରେ ଆବଶ୍ୟକୀୟ ସଂଶୋଧନ କରିପାରନ୍ତି ।"

"ମୁଁ ଅନୁଭବ କରୁଛି ଯେ ଏହା କାର୍ଯ୍ୟକ୍ଷମ, ନମନୀୟ ଏବଂ ବଳିଷ୍ଠ ଯାହା ଏ ରାଷ୍ଟ୍ରକୁ ଶାନ୍ତି ଓ ଯୁଦ୍ଧ ସମୟରେ ଧରି ରଖିବାକୁ ସମର୍ଥ ହେବ । ଅପରନ୍ତୁ, ଯଦି ମୁଁ କହେ ଯେ ଯଦି ନୂତନ ସମ୍ବିଧାନରେ କିଛି ଭୁଲଭ୍ରାନ୍ତି ଘଟେ, ତା'ର କାରଣ ଆମ୍ଭେମାନେ ଏକ ମନ୍ଦ ସମ୍ବିଧାନ ଗ୍ରହଣ କରିଛନ୍ତି ବୋଲି ନୁହେଁ ବରଂ ଆମକୁ କହିବାକୁ ହେବ ଯେ ମଣିଷମାନେ ମନ୍ଦ ।"

"ଚାଲନ୍ତୁ ବର୍ତ୍ତମାନ ଦେଖିବା କିପରି ଭାବରେ ସମ୍ବିଧାନର ବିଭିନ୍ନ ଅନୁଚ୍ଛେଦ ସମ୍ବିଧାନ ସଭାଦ୍ୱାରା ପରିଶେଷରେ ନିର୍ମିତ ହୋଇଛି । ଏଠାରେ ଆମେ କେବଳ ଆମର ଦୃଷ୍ଟି କୋଣକୁ ସମ୍ବିଧାନରେ କେତେଗୁଡ଼ିଏ ଗୁରୁତ୍ୱପୂର୍ଣ୍ଣ ବୈଶିଷ୍ଟ୍ୟ ପ୍ରତି ଦୃଷ୍ଟି ଦେବା : ଯଥା - ଉଦ୍ଦେଶିକା (Preamble) ଭାରତ ଏକ ରାଷ୍ଟ୍ର ସଂଘ, ମୌଳିକ ଅଧିକାର ଓ ରାଷ୍ଟ୍ରର ନିର୍ଦ୍ଦେଶକ ନୀତି (Directive Drinciple of State Policy) ।"

ସମ୍ବିଧାନର ଉଦ୍ଦେଶିକାରେ କୁହାଯାଇଥିବା ବାକ୍ୟ, ଆମ୍ଭେ ଭାରତର ଜନଗଣ (We, the people of India) କୁ କେତେକ ବିରୋଧ କରିବାର ଉତ୍ତର ଦେଇ ଡକ୍ଟର ଆମ୍ବେଦକର କହିଲେ, "ବିତର୍କର ବିନ୍ଦୁ ହେଉଛି ଯେ ଏହି ସମ୍ବିଧାନ ଜନସାଧାରଣଙ୍କଠାରେ ନିସୃତ ହୋଇଛି କି ନାହିଁ? ମୁଁ କହୁଛି, ଏହା ହୋଇଛି । ମୁଁ ବ୍ୟକ୍ତିଗତ ଭାବେ ବୁଝିପାରୁନାହିଁ ଯେ ଯଦି ଜଣେ ବ୍ୟକ୍ତି ସମ୍ପୂର୍ଣ୍ଣଭାବେ ବିଦ୍ୟାଭିମାନୀ ନ ହୋଇଥାଏ, ତେବେ ୨୯୨ ସଭ୍ୟ ବିଶିଷ୍ଟ ସଭା, ଯାହା ଏହି ବିଶାଳ ଉପମହାଦେଶକୁ ପ୍ରତିନିଧିତ୍ୱ କରୁଛି, ସେମାନଙ୍କର ପ୍ରତିନିଧିତ୍ୱ କ୍ଷମତା ବଳରେ କହିପାରୁ ନାହାନ୍ତି ଯେ ସେମାନେ ଏହି ରାଷ୍ଟ୍ରର ଜନଗଣଙ୍କ ନାମରେ କାର୍ଯ୍ୟ କରୁଛନ୍ତି ।"

"ମୁଁ କହୁଛି ଯେ ଏହି ଉଦ୍ଦେଶିକା ଏହି ଗୃହର ସମସ୍ତ ସଭ୍ୟର ଇଚ୍ଛାକୁ ରୂପାୟିତ କରୁଛି ଯେ ସମ୍ବିଧାନର ମୂଳ, ପ୍ରାଧିକାର (Authority), ସାର୍ବଭୌମତ୍ୱ ଜନସାଧାରଣଙ୍କଠାରୁ ଆସିଛି । ତେଣୁ, ମୁଁ ଏହାର ସଂଶୋଧନକୁ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହେଁ ।"

ଏହି ଉଦ୍ଦେଶିକା ସମ୍ବିଧାନର ଭାବକୁ ଅତ୍ୟନ୍ତ ବିଚକ୍ଷଣଭାବେ ବ୍ୟକ୍ତ କରିଛି ଏବଂ ଭାରତୀୟ ଜନସାଧାରଣଙ୍କର ରାଷ୍ଟ୍ରର ଏକତାକୁ ରକ୍ଷା କରିବାର ଦୃଢ଼ତାକୁ ସନ୍ନିବିଷ୍ଟ କରିପାରିଛି ।

ଭାରତ-ରାଜ୍ୟମାନଙ୍କର ସଂଘ ଚିଠା ସମ୍ବିଧାନରେ ଉଲ୍ଲେଖ ଥିବାରୁ ତାହାର ସଂଶୋଧନ କରି ଏହାକୁ ମହାସଂଘ (ଫେଡ଼େରେସନ୍) ନାମରେ ନାମିତ କରିବାପାଇଁ କରାଯାଇଥିବା ପ୍ରସ୍ତାବ ସମ୍ପର୍କରେ ଉଲ୍ଲେଖ କରି ସେ କହିଲେ, "ଯଦିଓ ଚିଠା ସମିତି ପରିଷ୍କାର କରି କହେ ଯେ ଭାରତ ଏକ ଫେଡେରେସନ୍ (ମହାସଂଘ) ହେବ କିନ୍ତୁ ଏହି ମହାସଂଘ କୌଣସି ଚୁକ୍ତିନାମାଦ୍ୱାରା ରାଜ୍ୟଗୁଡ଼ିକର ଏହି ମହାସଂଘରେ ଯୋଗଦାନ କରିବାରୁ ହୋଇନାହିଁ ଏବଂ ମହାସଂଘ ଚୁକ୍ତିନାମାର ଫଳ ସ୍ୱରୂପ ନୁହେଁ । କୌଣସି ରାଜ୍ୟ ଏଥିରୁ ପୃଥକ୍ ହୋଇପାରିବ ନାହିଁ । ମହାସଂଘ ହେଉଛି ଗୋଟିଏ ସଂଘ କାରଣ ଏହା ଲୋପ ପାଇବନାହିଁ ।"

ଠିକ୍ ସେହିପରି କେତେକ ସଭ୍ୟଙ୍କର ପ୍ରସ୍ତାବ ଥିଲା ଯେ ଏଥିରେ ଧର୍ମ ନିରପେକ୍ଷ (Secular) ସଂଘ (Federal) ସାମ୍ୟ (Socialist) ଇତ୍ୟାଦିକୁ ରାଜ୍ୟସଂଘ (Union of States) ପୂର୍ବରୁ ଉଲ୍ଲେଖ କରାଯାଉ । ଡକ୍ଟର ଆମ୍ବେଦକର ଏହି ସମ୍ବିଧାନକୁ ବିରୋଧ କରି କହିଲେ ଯେ ଲୋକମାନଙ୍କୁ କି ପ୍ରକାର ସମାଜ ବ୍ୟବସ୍ଥାରେ ରହିବାକୁ ହେବ, ସେଥିରେ ବାନ୍ଧି ଦିଆଯାଇପାରିବ ନାହିଁ । ସେ କହିଲେ, "ଗୋଟିଏ ସମ୍ବିଧାନ ରାଷ୍ଟ୍ରର

ବିଭିନ୍ନ ଅଙ୍ଗଗୁଡ଼ିକୁ କି ପ୍ରକାର ଭାବରେ ନିୟନ୍ତ୍ରଣ କରିବ, ତାହାର ଯନ୍ତ୍ର । ଏହା କାର୍ଯ୍ୟଭାର ଗ୍ରହଣ କରୁଥିବା ବ୍ୟକ୍ତି ବା ଦିନମାନଙ୍କର ଯନ୍ତ୍ର ବିଶେଷ ନୁହେଁ ।"

ଅନ୍ୟ କେତେକଙ୍କର ସଂଶୋଧନ ଥିଲା ଇଣ୍ଡିଆ ନାମକୁ ପରିବର୍ତ୍ତନ କରି ଭାରତ ବା ଭାରତବର୍ଷ ବା ହିନ୍ଦୁସ୍ଥାନ ରଖାଯାଉ । କାରଣ ବହୁ ସଭ୍ୟଙ୍କର ମତ ଥିଲା ନୂତନ ସମ୍ବିଧାନରେ ଇଣ୍ଡିଆ ତାର ପ୍ରାଚୀନ ନାମ ବହନ କରୁ । ୧୯୪୮ ନଭେମ୍ବର ୧୭ ତାରିଖରେ ଆମ୍ବେଦକର ଏକ ସଂଶୋଧନ ପ୍ରସ୍ତାବ ଆଣି କହିଲେ, "India that is Bharat shall be a union of states," ଏହା ସମ୍ବିଧାନ ସଭାଦ୍ୱାରା ଗୃହୀତ ହେଲା ।

ସମ୍ବିଧାନ ସଭା ସମ୍ବିଧାନ ବିଲ୍‌ର ତୃତୀୟ ପାଠ ୧୯୪୯ ନଭେମ୍ବର ୧୭ ତାରିଖରେ ଆରମ୍ଭ କଲେ । ୯ ଦିନ ଧରି ଏ ସମ୍ପର୍କରେ ବିତର୍କ ଚାଲିବାପରେ ଆମ୍ବେଦକର ୨୫ ତାରିଖ ଦିନ ଏହାର ଉତ୍ତର ଦେଲେ । ତାଙ୍କୁ ଦେଶର ସେବା କରିବାପାଇଁ ଏପରି ସୁଯୋଗ ଦିଆଁଯାଇଥିବାରୁ ସଭାକୁ ଧନ୍ୟବାଦ ଦେଇ ସେ କହିଲେ, "ସମ୍ବିଧାନ ସଭାର କାର୍ଯ୍ୟର ପଶ୍ଚାତ୍ ଦୃଷ୍ଟି କଲେ ଦେଖାଯାଏ ଆରମ୍ଭ ହେବା ଦିନଠୁଁ ଏଯାଏଁ ବର୍ତ୍ତମାନ ଏହା ଦୁଇବର୍ଷ, ଏଗାର ମାସ ସତର ଦିନ ହେବ । ଏହି ସମୟ ମଧ୍ୟରେ ସମ୍ବିଧାନ ସଭାର ଏଗାର ଥର ଅଧିବେଶନ ହୋଇଛି । ଏହି ଏଗାର ଗୋଟି ଅଧିବେଶନ ମଧ୍ୟରୁ ପ୍ରଥମ ଛଅଗୋଟି ଅଧିବେଶନରେ ଉଦ୍ଦେଶ୍ୟ ସମ୍ପର୍କିତ ପ୍ରସ୍ତାବ ପାଳିତ କରିବାରେ ଯାଇଛି । ଏଥି ସହିତ ମୌଳିକ ଅଧିକାର, ସଂଘୀୟ ସମ୍ବିଧାନ, ସଂଘୀୟ କ୍ଷମତା, ପ୍ରାଦେଶିକ ସମ୍ବିଧାନ, ସଂଖ୍ୟାଲଘୁ ଏବଂ ଅନୁସୂଚିତ ଅଞ୍ଚଳ, ଅନୁସୂଚିତ ଜନଜାତିର ସମିତି ମାନଙ୍କର ରିପୋର୍ଟ ସମ୍ପର୍କରେ ମଧ୍ୟ ଆଲୋଚନା ହୋଇଛି । ସପ୍ତମ, ଅଷ୍ଟମ, ନବମ, ଦଶମ ଓ ଏକାଦଶ ଅଧିବେଶନ ଚିଠା ସମ୍ବିଧାନ ପ୍ରସ୍ତାବ ବିଚାରରେ ବ୍ୟୟିତ ହୋଇଛି । ସମ୍ବିଧାନ ସଭାର ଏହି ଏଗାର ଗୋଟି ଅଧିବେଶନରେ ସମୁଦାୟ ୧୬୫ ଦିନ ବ୍ୟୟିତ ହୋଇଛି । ଏଥି ମଧ୍ୟରୁ କେବଳ ୧୧୪ ଦିନ ସଭା ଚିଠା ସମ୍ବିଧାନ ଆଲୋଚନା କରିଛି ।

ଡକ୍ଟର ଆମ୍ବେଦକର ଅତି ଆନନ୍ଦର ସହ କହିଥିଲେ : "ମୁଁ ଆନନ୍ଦିତ ଯେ କେବଳ ଜଣେ ମାତ୍ର ସଭ୍ୟଙ୍କୁ ଛାଡ଼ିଦେଲେ, ସମଗ୍ର ସମ୍ବିଧାନ ସଭାର ସଭ୍ୟମାନଙ୍କର ସାଧାରଣ ସହମତି ରହିଛି ଓ ପ୍ରଶଂସିତ ହୋଇଛି । ମୁଁ ନିଶ୍ଚିତ ଯେ ଚିଠା ସମିତି ସେମାନଙ୍କର ପରିଶ୍ରମପାଇଁ ଅଯାଚିତ ଭାବେ ସ୍ୱେଚ୍ଛାକୃତ ସ୍ୱୀକୃତି ଲାଭ କରିଛନ୍ତି । ମୋ ପ୍ରତି ଏହି ସଭାର ସଭ୍ୟମାନେ ଓ ମୋର ସହକର୍ମୀ ଚିଠା ସମିତିର ସଭ୍ୟମାନେ ଯେପରି ପ୍ରଶଂସା କରିଛନ୍ତି, ସେଥିରେ ମୁଁ ଆଭିଭୂତ ହୋଇପଡ଼ିଛି ଏବଂ ସେମାନଙ୍କ ପ୍ରତି କୃତଜ୍ଞତା ଜଣାଇବାକୁ ମୋ

ପାଖରେ ଭାଷା ନାହିଁ । ମୁଁ ସମ୍ବିଧାନ ସଭାକୁ କେବଳ ଅନୁନ୍ନତ ଜାତିମାନଙ୍କର ସ୍ୱାର୍ଥର ସୁରକ୍ଷା କରିବା ବ୍ୟତୀତ ଅନ୍ୟ କୌଣସି ବିଶେଷ ଉଚ୍ଚାକାଂକ୍ଷା ନେଇ ଆସି ନଥିଲି । ମୋର ସାମାନ୍ୟତମ ଧାରଣା ନଥିଲା ଯେ ମୋତେ ଅଧିକ ଦାୟିତ୍ୱ ସମ୍ପନ୍ନ କାର୍ଯ୍ୟ ତୁଲାଇବାକୁ ପଡ଼ିବ । ତେଣୁ ମୋତେ ଯେତେବେଳେ ଏହି ସଭା ଚିଠା ସମ୍ବିଧାନ ସମିତିକୁ ନିର୍ବାଚିତ କଲା, ସେତେବେଳେ ଆଶ୍ଚର୍ଯ୍ୟ ହୋଇଥିଲି । ଏବଂ ତା'ଠାରୁ ଅଧିକ ଆଶ୍ଚର୍ଯ୍ୟ ହେଲି ଯେତେବେଳେ ଚିଠା ସମିତି ମୋତେ ଏହାର ଅଧକ୍ଷ ଭାବେ ନିର୍ବାଚିତ କଲେ । ଏହି ଚିଠା ସମିତିରେ ମୋଠାରୁ ଅଧିକ ଉନ୍ନତ, ବିଶାଳ ଏବଂ ଦକ୍ଷ ବ୍ୟକ୍ତି ଥିଲେ ଯେପରିକି ମୋର ବନ୍ଧୁ ସାର୍ ଆଲାଦି କ୍ରିଷ୍ଣସ୍ୱାମୀ ଆୟାର । ମୁଁ ସମ୍ବିଧାନ ସଭା ଓ ଚିଠା ସମିତି ନିକଟରେ କୃତଜ୍ଞ କାରଣ ସେମାନେ ମୋ ଉପରେ ସେମାନଙ୍କର ଆସ୍ଥା ଓ ବିଶ୍ୱାସକୁ ସ୍ଥାପନ କରି ମୋତେ ସେମାନଙ୍କର ମାଧ୍ୟମ କରିଛନ୍ତି ଏବଂ ମୋ ଦେଶର ସେବା କରିବାକୁ ମୋତେ ସୁଯୋଗ ପ୍ରଦାନ କରିଛନ୍ତି ।"

"ପରିଶେଷରେ, ମୁଁ ସଭାପତି ମହାଶୟ, ଆପଣଙ୍କୁ ଧନ୍ୟବାଦ ଦେବି ଯେପରି ଭାବରେ ଆପଣ ଏହି ସଭାର କାର୍ଯ୍ୟସୂଚୀକୁ ପରିଚାଳନା କଲେ । ଯେଉଁ ସଭ୍ୟମାନେ ଏହି ସଭାର କାର୍ଯ୍ୟସୂଚୀରେ ଅଂଶଗ୍ରହଣ କଲେ, ସେମାନଙ୍କ ପ୍ରତି ଆପଣ ଯେପରି ସଦିଚ୍ଛା ଓ ସହଯୋଗ ପ୍ରଦର୍ଶନ କରିଛନ୍ତି ତାହା ମଧ ଭୂଲି ହେବ ନାହିଁ । ଏପରି ମଧ ପରିସ୍ଥିତି ଉପୁଜିଛି ଯେତେବେଳେ ଚିଠା ସମିତିର ସଂଶୋଧନ ପ୍ରସ୍ତାବକୁ ପ୍ରାୟୋଗିକ ତ୍ରୁଟି କାରଣରୁ ଖାରଜ କରିଦେବାକୁ ଚେଷ୍ଟା ହୋଇଛି ।

ମୋପାଇଁ ଅନେକ ବିଚଳିତ ସମୟ ମଧ ଆସିଛି । ସେଥିପାଇଁ ମୁଁ ବିଶେଷଭାବେ, ଆପଣଙ୍କ ନିକଟରେ କୃତଜ୍ଞ କାରଣ ଆପଣ ଅତ୍ୟଧିକ ଆଇନ୍‌କୁ ପ୍ରଶୟ ଦେଇ ସମ୍ବିଧାନ ପ୍ରଣୟନ କାର୍ଯ୍ୟରେ ବାଧା ସୃଷ୍ଟି କରିବାକୁ ଅନୁମତି ଦେଇନାହାନ୍ତି ।"

"କୌଣସି ସମ୍ବିଧାନର କାର୍ଯ୍ୟକାରିତା ସମ୍ବିଧାନର ସ୍ୱରୂପ ଉପରେ ପୂର୍ଣ୍ଣ ନିର୍ଭର କରେ ନାହିଁ । ସମ୍ବିଧାନ କେବଳ ରାଷ୍ଟ୍ରପାଇଁ ଏକ ମୁଖପତ୍ର । ଯେପରି ବିଧାନମଣ୍ଡଳ, କାର୍ଯ୍ୟ ନିର୍ବାହକ ଓ ନ୍ୟାୟପାଳିକା । ରାଷ୍ଟ୍ରର ଏହି ମୁଖପତ୍ର ଗୁଡ଼ିକର କାର୍ଯ୍ୟକରିତାର ଗୁଣନୀୟକ ଲୋକମାନଙ୍କ ଉପରେ ନିର୍ଭର କରେ ଏବଂ ସେମାନଙ୍କ ଦ୍ୱାରା ସେମାନଙ୍କର ଆଶା ଓ ନୀତିକୁ କାର୍ଯ୍ୟକାରୀ କରିବାର ମାଧ୍ୟମ ହେଉଥିବା ରାଜନୈତିକ ଦଳ ମାନଙ୍କ ଉପରେ ନିର୍ଭର କରେ । କିଏ କହିପାରିବ ଭାରତବର୍ଷର ଲୋକେ ଓ ରାଜନୈତିକ ଦଳମାନେ କିପରି ବ୍ୟବହାର କରିବେ ? ସେମାନେ ସେମାନଙ୍କର ଉଦ୍ଦେଶ୍ୟ ସାଧନପାଇଁ ସାମ୍ବିଧାନିକ ପ୍ରଣାଳୀର ସୁରକ୍ଷା କରିବେ କି ନାହିଁ କିମ୍ବା ସେମାନେ ବିପ୍ଳବାତ୍ମକ ପନ୍ଥାରେ ସେଗୁଡ଼ିକୁ ହାସଲ କରିବାପାଇଁ

ଚେଷ୍ଟା କରିବେ ? ଯଦି ସେମାନେ ବିପ୍ଳବାତ୍ମକ ପନ୍ଥା ଗ୍ରହଣ କରନ୍ତି, ସମ୍ବିଧାନ ଯେତେ ଉପଯୁକ୍ତ ହେଲେ ମଧ୍ୟ, ଏଥିପାଇଁ କେହି ଦିଗ୍‌ଦ୍ରଷ୍ଟାର କହିବାକୁ ଆବଶ୍ୟକ ପଡ଼ିବ ନାହିଁ ଯେ ଏହା ବିଫଳ ହେବ । ତେଣୁ କୁହାଯାଇପାରେ ଯେ, ଭାରତର ଜନସାଧାରଣ ଓ ସେମାନଙ୍କର ରାଜନୈତିକ ଦଳମାନେ କିପରି ଭୂମିକା ନେବେ ତାକୁ ବିଚାରକୁ ନନେଇ ସମ୍ବିଧାନ ସମ୍ପର୍କରେ କୌଣସି ବିଚାର ରଖିବା ନିରର୍ଥକ ।”

ତାଙ୍କର ବକ୍ତବ୍ୟକୁ ଆଗକୁ ବଢ଼ାଇ ଭାରତୀୟ ସମ୍ବିଧାନର ପ୍ରଣେତା ଡକ୍ଟର ଆମ୍ବେଦକର କହିଲେ, “ଏଠାରେ ମୁଁ ଆଉ କିଛି ଯୋଗ କରିପାରେ । କିନ୍ତୁ ମୋର ମନ ଆମ ଦେଶର ଭବିଷ୍ୟତ ଚିନ୍ତାରେ ପୂର୍ଣ୍ଣ । ତେଣୁ ମୁଁ ଅନୁଭବ କରୁଛି ଯେ ମୋର ଭାବନାର ପ୍ରତିଛବିକୁ ମୁଁ ବ୍ୟକ୍ତ କରିବି । ଜାନୁୟାରୀ ୨୬ ତାରିଖ ୧୯୫୦ ମସିହାରେ ଭାରତ ସ୍ୱାଧୀନ ରାଷ୍ଟ୍ର ହେବ । କ'ଣ ଘଟିବ ତା'ର ଏହି ସ୍ୱାଧୀନତାକୁ ? ସେ ତା'ର ଏହି ସ୍ୱାଧୀନତାକୁ ରକ୍ଷା କରି ପାରିବ ନା ହରାଇବ ? ଏହି ଭାବନା ପ୍ରଥମେ ମୋ ମନକୁ ଆସୁଛି । ଏହା ନୁହେଁ ଯେ ଭାରତ କେବେ ସ୍ୱାଧୀନ ରାଷ୍ଟ୍ର ନଥିଲା । ତାହାର ଥିବା ସ୍ୱାଧୀନତାକୁ ସେ ଥରେ ହରାଇଥିଲା । ସେ କ'ଣ ଦ୍ୱିତୀୟ ଥରପାଇଁ ତାକୁ ହରାଇବ ? ଏହି ଭାବନା ମତେ ଭବିଷ୍ୟତପାଇଁ ବ୍ୟସ୍ତ କରି ପକାଉଛି । ମୁଁ ଅତ୍ୟନ୍ତ ବିବ୍ରତ କାରଣ ଅତୀତରେ ଭାରତ ତା'ର କେତେକ ନିଜଲୋକଙ୍କ ବିଶ୍ୱାସଘାତକତା ଓ ଅନ୍ଧବିଶ୍ୱାସ କାରଣରୁ ସ୍ୱାଧୀନତା ହରାଇଛି । ଯେତେବେଳେ ମହମ୍ମଦ ବିନ-କାଶିମ ସିନ୍ଧୁ ଆକ୍ରମଣ କଲେ, ରାଜା ଦାହିରଙ୍କର ସେନାଧକ୍ଷ ମହମ୍ମଦ-ବିନ-କାଶିମଙ୍କର ଏଜେଣ୍ଟଠାରୁ ଲାଞ୍ଚ ନେଇଥିଲେ ଏବଂ ରାଜାଙ୍କ ପକ୍ଷରେ ଯୁଦ୍ଧ କରିବାକୁ ମନା କରିଦେଇଥିଲେ । ପୁନଶ୍ଚ ରାଜା ଜୟଚନ୍ଦ୍ର ଯେକି ମହମ୍ମଦ ଘୋରୀକୁ ଭାରତ ଆକ୍ରମଣ କରିବାକୁ ନିମନ୍ତ୍ରଣ କରିଥିଲେ ଏବଂ ପୃଥ୍ୱୀରାଜଙ୍କ ବିରୁଦ୍ଧରେ ଯୁଦ୍ଧ କରିବାକୁ କହି, ସେ ତାଙ୍କ ନିଜ ପକ୍ଷରୁ ସୋଲାଙ୍କି ରାଜାମାନଙ୍କ ତରଫରୁ ସାହାଯ୍ୟ କରିବାକୁ କହିଥିଲେ । ଯେତେବେଳେ ଶିବାଜୀ ହିନ୍ଦୁମାନଙ୍କର ମୁକ୍ତିପାଇଁ ସଂଗ୍ରାମ କରୁଥିଲେ ସେତେବେଳେ ଅନ୍ୟାନ୍ୟ ମରାଠା ଯୋଦ୍ଧା ଓ ରାଜପୁତ ରାଜାମାନେ ମୋଗଲ ସମ୍ରାଟଙ୍କ ସପକ୍ଷରେ ଯୁଦ୍ଧ କରୁଥିଲେ ।

ଯେତେବେଳେ ବ୍ରିଟିଶମାନେ ଶିଖ୍ ଶାସକମାନଙ୍କୁ ଭାଙ୍ଗିବାପାଇଁ ଚେଷ୍ଟା କରୁଥିଲେ, ସେମାନଙ୍କର ପ୍ରଧାନ ସେନାଧକ୍ଷ ଗୁଲାବ ସିଂ ନୀରବରେ ବସିଥିଲେ ଏବଂ ଶିଖ ରାଜ୍ୟକୁ ରକ୍ଷା କରିବା ପାଇଁ ସାହାଯ୍ୟ କରି ନଥିଲେ । ୧୮୫୭ ମସିହାରେ, ଯେତେବେଳେ ଭାରତର ଏକ ବଡ଼ ଅଂଶ ବ୍ରିଟିଶ ବିରୁଦ୍ଧରେ ସ୍ୱାଧୀନତା ଲାଭପାଇଁ ଯୁଦ୍ଧ ଘୋଷଣା କଲେ, ଶିଖ୍‌ମାନେ ନୀରବ ଦ୍ରଷ୍ଟା ଭାବରେ ଠିଆ ହୋଇ ଚାହିଁ ରହିଲେ ।”

"ଇତିହାସର କ'ଣ ବାରମ୍ବାର ପୁନରାବୃତ୍ତି ହେବ? ଏହି ଚିନ୍ତା ମୋତେ ଉଦ୍‌ବେଳିତ କରୁଛି । ଏହି ଉଦ୍‌ବେଗ ଗଭୀର ହେବାରେ ଲାଗୁଛି । କାରଣ ଆରମ ପୁରାତନ ଶତ୍ରୁ ଜାତି ଓ ଧର୍ମମତ ସହିତ ଆମେ ବହୁ ପରସ୍ପର ବିଭିନ୍ନତା ଓ ବିରୋଧି ଧର୍ମମତର ରାଜନୈତିକ ଦଳମାନଙ୍କୁ ପାଇବାକୁ ଯାଇଥାଉଁ । ଭାରତୀୟ ଲୋକମାନେ କ'ଣ ରାଷ୍ଟ୍ରକୁ ଧର୍ମମତଠାରୁ ଉର୍ଦ୍ଧ୍ୱରେ ରଖିବାକୁ ଚାହୁଁଛନ୍ତି କିମ୍ବା ଧର୍ମମତକୁ ରାଷ୍ଟ୍ରର ଉର୍ଦ୍ଧ୍ୱରେ? ମୁଁ ତାହା ଜାଣେ ନାହିଁ । କିନ୍ତୁ ଏହା ନିଶ୍ଚିତ ଯେ ଯଦି ଦଳମାନେ ଧର୍ମମତକୁ ରାଷ୍ଟ୍ରର ଉର୍ଦ୍ଧ୍ୱରେ ରଖନ୍ତି, ତେବେ ଦ୍ୱିତୀୟ ଥରପାଇଁ ଆମର ସ୍ୱାଧୀନତା ସଙ୍କଟାପନ୍ନ ହେବ ଏବଂ ସମ୍ଭବତଃ ସବୁଦିନ ପାଇଁ ଲିଭିଯାଇପାରେ । ଆମ୍ଭେ ସମସ୍ତେ ପ୍ରତିଜ୍ଞାବଦ୍ଧ ହୋଇ ଏହି ସମ୍ଭାବ୍ୟ ଘଟଣା ବିରୁଦ୍ଧରେ ସତର୍କ ରହିବା ଉଚିତ । ଆମେ ଆମର ଶେଷ ରକ୍ତ ବିନ୍ଦୁ ପର୍ଯ୍ୟନ୍ତ ଦେଇ ଦେଶର ସ୍ୱାଧୀନତାର ସୁରକ୍ଷା କରିବାପାଇଁ ସଙ୍କଳ୍ପବଦ୍ଧ ହେବା ।"

ସେ ପୁନରାୟ କହିଲେ, "ଜାନୁୟାରୀ ୨୬ ତାରିଖ ୧୯୫୦ ମସିହାରେ ଭାରତ ଏକ ଗଣତାନ୍ତ୍ରିକ ରାଷ୍ଟ୍ର ହେବ । ଏହି ଦୃଷ୍ଟିକୋଣରୁ ଯେ ସେହିଦିନ ଲୋକମାନଙ୍କ ଦ୍ୱାରା, ଲୋକମାନଙ୍କପାଇଁ ଓ ଲୋକମାନଙ୍କ ନିମିତ୍ତ ଗୋଟିଏ ସରକାର ପ୍ରତିଷ୍ଠା ହେବ । ସେହି ଚିନ୍ତା ମୋ ମନକୁ ଆସୁଛି । କ'ଣ ହେବ ତା'ର ଗଣତାନ୍ତ୍ରିକ ସମ୍ବିଧାନ ପ୍ରତି? ସେ କ'ଣ ଏହାର ରକ୍ଷଣାବେକ୍ଷଣ କରିପାରିବ କିମ୍ବା ପୁଣିଥରେ ହରାଇବ? ଏହି ଦ୍ୱିତୀୟ ଚିନ୍ତା ମଧ୍ୟ ମୋ ମନକୁ ଆସୁଛି ଏବଂ ମୋତେ ପ୍ରଥମ ଚିନ୍ତା ପରି ଏହା ମଧ୍ୟ ଉଦ୍‌ବିଗ୍ନ କରୁଛି ।"

"ଯଦି ଆମକୁ ଏହି ଗଣତନ୍ତ୍ରକୁ ରକ୍ଷଣାବେକ୍ଷଣ କରିବାକୁ ହେବ, କେବଳ ରୂପରେ ନୁହେଁ ବରଂ ବିଷୟରେ, ତେବେ ଆମେ କ'ଣ କରିବା? ମୋ ବିଚାରରେ ପ୍ରଥମ କଥା, ଆମ୍ଭେ ଆମର ସାମାଜିକ ଓ ଅର୍ଥନୈତିକ ଉଦ୍ଦେଶ୍ୟଗୁଡ଼ିକୁ ସମ୍ବିଧାନ ପ୍ରତିକ୍ରିୟାକୁ ଗୁରୁତ୍ୱ ସହିତ ଧାରଣ କରି ତା' ମାଧ୍ୟମରେ ହାସଲ କରିବା । ଏହାର ଅର୍ଥ ଆମ୍ଭକୁ ଆମର ରକ୍ତପାତ ମାଧ୍ୟମ ବିପ୍ଳବକୁ ପରିତ୍ୟାଗ କରିବାକୁ ହେବ । ଯେତେବେଳେ କୌଣସି ରାସ୍ତା ସାମ୍ବିଧାନିକ ବ୍ୟବସ୍ଥା ମଧ୍ୟରେ ଅର୍ଥନୈତିକ ଓ ସାମାଜିକ ଉଦ୍ଦେଶ୍ୟ ହାସଲ କରିବାକୁ ମିଳିବ ନାହିଁ, ସେତେବେଳେ ସାମ୍ବିଧାନିକ ବ୍ୟବସ୍ଥା ମଧ୍ୟ ଦେଇ ସାମାଜିକ ଓ ଅର୍ଥନୈତିକ ଉଦ୍ଦେଶ୍ୟ ହାସଲର କୌଣସି ଯୁକ୍ତି ଅଛି । କିନ୍ତୁ ଯେଉଁଠାରେ ସାମ୍ବିଧାନିକ ବ୍ୟବସ୍ଥା ଉନ୍ମୁକ୍ତ ରହିଛି, ସେଠାରେ ଏହି ଅସଂବିଧାନିକ ବ୍ୟବସ୍ଥାର କୌଣସି ନ୍ୟାୟସଙ୍ଗତ ଯୁକ୍ତି ନାହିଁ । ଏହି ବ୍ୟବସ୍ଥା କେବଳ ଅରାଜକତା ଛଡା ଅନ୍ୟ କିଛି ନୁହେ ଏବଂ ଏହାକୁ ଯେତେ ଶୀଘ୍ର ପ୍ରତ୍ୟାଖ୍ୟାନ କରାଯିବ, ଆମ୍ଭମାନଙ୍କପାଇଁ ସେତେ ଭଲ ।"

ଦ୍ୱିତୀୟତଃ ସମ୍ବିଧାନର ସୁରକ୍ଷାପାଇଁ ସାବଧାନତା ଲୋଡ଼ା । ମିଲ୍ କହିଛନ୍ତି "ସ୍ୱାଧୀନତାକୁ କୌଣସି ମହାନ୍ ବ୍ୟକ୍ତିର ପାଦତଳେ କେବେହେଲେ ସମର୍ପ ଦେବା ଉଚିତ୍ ନୁହେ କିମ୍ବା ସବୁ ପ୍ରକାର କ୍ଷମତା ଦେଇ ବିଶ୍ୱାସ ସ୍ଥାପନ କଲେ ସେ ଅନୁଷ୍ଠାନଗୁଡ଼ିକୁ ଯଥେଚ୍ଛା କରିଦେବେ ।"

ତାଙ୍କ ପ୍ରତି କୃତଜ୍ଞ ରହିବାରେ ଭୁଲ ନାହିଁ ଯେଉଁ ବ୍ୟକ୍ତି ସମଗ୍ର ଜୀବନ ରାଷ୍ଟ୍ର ସେବାରେ ବ୍ୟୟିତ କରିଛନ୍ତି, ଯେଉଁମାନେ ଗଣତାନ୍ତ୍ରିକ ବ୍ୟବସ୍ଥାର ରକ୍ଷଣା ବେକ୍ଷଣ ସମ୍ପର୍କରେ ଆଗ୍ରହୀ ସେମାନଙ୍କୁ ଜନ୍ ଷ୍ଟୁଆର୍ଟ ମିଲ୍ଙ୍କର କଥାକୁ ମନେ ରଖିବାକୁ ହେବ କିନ୍ତୁ ରାଷ୍ଟ୍ରର ସ୍ୱାଧୀନତା ବିନିମୟରେ ନୁହେ ।

ଏହି ସତର୍କତା ଅନ୍ୟ ରାଷ୍ଟ୍ର ଅପେକ୍ଷା ଭାରତପାଇଁ ଅଧିକ ପ୍ରଯୁଜ୍ୟ । କାରଣ ଭାରତରେ ଭକ୍ତି କିମ୍ବା ଆମ୍ଭେ ଯାହାକୁ କହୁଛୁ ସମର୍ପିତ ମାର୍ଗ ବା ବୀରପୂଜା (Heroworship) ରାଜନୀତିରେ ମଧ୍ୟ ମୁଖ୍ୟ ଭୂମିକା ଗ୍ରହଣ କରୁଛି ଯାହାର ଅସାମାନ୍ୟ ପ୍ରାଧାନ୍ୟ ବିଶ୍ୱର ଅନ୍ୟ କୌଣସି ପ୍ରାନ୍ତରରେ ଦେଖାଯାଏ ନାହିଁ । ଧର୍ମରେ ଭକ୍ତିଭାବ ହୁଏତ ଆତ୍ମାର ମୁକ୍ତି ଆଡ଼କୁ ରାସ୍ତା ଉନ୍ମୁକ୍ତ କରେ । କିନ୍ତୁ ରାଜନୀତିରେ ଭକ୍ତି ବା ବୀରପୂଜା ନିମ୍ନଗାମୀ ହେବାର ମାର୍ଗ ଏବଂ ଶେଷକୁ ସ୍ୱେଚ୍ଛାଚାରୀ ଶାସନ ଆଡ଼କୁ ମୁହାଁଏ ।"

ତୃତୀୟ କଥା ଆମ୍ଭକୁ କରିବାକୁ ହେବ ଯେ ଆମେ କେବଳ ରାଜନୈତିକ ଗଣତନ୍ତ୍ରରେ ସନ୍ତୁଷ୍ଟ ହେବା ନାହିଁ । ଆମ୍ଭକୁ ଆମର ରାଜନୈତିକ ଗଣତନ୍ତ୍ରକୁ ସାମାଜିକ ଗଣତନ୍ତ୍ରରେ ରୂପାନ୍ତରିତ କରିବାକୁ ହେବ । ରାଜନୈତିକ ଗଣତନ୍ତ୍ର ତିଷ୍ଠି ପାରିବ ନାହିଁ ଯଦି ଏହାର ମୂଳରେ ସାମାଜିକ ଗଣତନ୍ତ୍ର ନଥାଏ । ସାମାଜିକ ଗଣତନ୍ତ୍ରର ଅର୍ଥ କଣ ? ଏହାର ଅର୍ଥ ହେଉଛି ବଞ୍ଚିବାର ଗୋଟିଏ ମାର୍ଗ ଯାହା ସମତା, ସ୍ୱତନ୍ତ୍ରତା ଓ ଭ୍ରାତୃତ୍ୱକୁ ଜୀବନର ନିୟମ ଭାବେ ଗ୍ରହଣ କରେ । ଏହି ତିନିଗୋଟିର ଏକତ୍ୱର ଅର୍ଥ ହେଉଛି ଯେ ଯଦି ଗୋଟିଏ ଅନ୍ୟଟିଠାରୁ ପୃଥକ୍ କରି ଦିଆଯାଏ, ତେବେ ଗଣତନ୍ତ୍ରର ଯାହା ଉଦ୍ଦେଶ୍ୟ ତାହା ପରାଭୂତ ହେବ । ସ୍ୱତନ୍ତ୍ରତାକୁ ସମତାଠାରୁ ପୃଥକ୍ କରିହେବ ନାହିଁ, ସମତା ମଧ୍ୟ ସ୍ୱତନ୍ତ୍ରତାଠାରୁ ପୃଥକ୍ ହୋଇପାରିବ ନାହିଁ । ସମତା ବ୍ୟତୀତ ସ୍ୱତନ୍ତ୍ରତା ଅଳ୍ପ କେତେକଙ୍କର ବହୁ ଲୋକଙ୍କ ଉପରେ ପ୍ରଭୁତ୍ୱ ବିସ୍ତାର କରିବ । ସମତା ସ୍ୱତନ୍ତ୍ରତା ବ୍ୟତୀତ ବ୍ୟକ୍ତିଗତ ପ୍ରେରଣାକୁ ହତ୍ୟା କରିବ । ଠିକ୍ ସେହିପରି ଭ୍ରାତୃତ୍ୱ ବିନା ସ୍ୱତନ୍ତ୍ରତା ଓ ସମତା ପ୍ରାକୃତିକ ଅବସ୍ଥା ହୋଇ ପାରିବ ନାହିଁ । ଭ୍ରାତୃତ୍ୱର ଅର୍ଥ କ'ଣ ? ଭ୍ରାତୃତ୍ୱର ଅର୍ଥ ହେଉଛି ସମସ୍ତ ଭାରତୀୟଙ୍କ ମଧ୍ୟରେ ଏକ ସାଧାରଣ ଭାଇଚାରାର ଭାବନା, କାରଣ ସମସ୍ତ ଭାରତୀୟ ଗୋଟିଏ ଲୋକ । ଏହି ନିୟମ ହିଁ ଏକତ୍ୱ ଓ ସଂହତି ସାମାଜିକ ଜୀବନକୁ ପ୍ରଦାନ କରେ । ଏହା କଷ୍ଟସାଧ୍ୟ ହେଲେ ମଧ୍ୟ ହାସଲ କରାଯିବା ଉଚିତ୍ ।

ତାଙ୍କର ଏହି ଐତିହାସିକ ଭାଷଣକୁ ଶେଷ କରିବାକୁ ଯାଇ ସେ କହିଲେ, "ଆମ ଆଗରେ ଯେଉଁ କାର୍ଯ୍ୟ ରହିଛି, ସେ ସମ୍ପର୍କରେ ଏହା ମୋର ପ୍ରତିଫଳନ । ଏହା କେତେକଙ୍କୁ ସୁଖକର ନ ହୋଇପାରେ । କିନ୍ତୁ କହିବାର କୌଣସି ଦ୍ୱିଧା ନାହିଁ ଯେ ଏହି ଦେଶର ରାଜନୈତିକ କ୍ଷମତା ବହୁଦିନ ଧରି କେତେକ ମୁଷ୍ଟିମେୟ ଲୋକଙ୍କର ଏକାଧିପତ୍ୟ ହୋଇଛି ଏବଂ ବହୁଲୋକ ଏହି ବୋଝର ପଶୁ ହୋଇ ନାହାନ୍ତି ବରଂ ପଶୁ ପରି ଶିକାର ହୋଇଛନ୍ତି । ଏହି ଏକାଧିପତ୍ୟ ସେମାନଙ୍କୁ ଉନ୍ନତିରୁ କେବଳ ବଞ୍ଚିତ କରିନାହିଁ, ବରଂ ଜୀବନର ବିଶେଷତ୍ୱ କ'ଣ ତାହା ଜାଣିବା ତାଙ୍କଠାରୁ ଛଡ଼ାଇ ନିଆଯାଇଛି । ଏହି ନିମ୍ନ ଶ୍ରେଣୀର ଲୋକମାନେ ଶାସିତ ହେବାରୁ କ୍ଲାନ୍ତ । ସେମାନେ ନିଜକୁନିଜେ ଶାସନ କରିବାକୁ ଅଧୀର । ନିମ୍ନ ଶ୍ରେଣୀର ଲୋକମାନଙ୍କ ମଧ୍ୟରେ ନିଜକୁ ନିଜ ଶାସିତ ହେବାର ଏହି ଅପରୋକ୍ଷାନୁଭୂତିକୁ  ଶ୍ରେଣୀ ସଂଘର୍ଷ ବା ଶ୍ରେଣୀ ଯୁଦ୍ଧ ହେବାକୁ ପ୍ରଶୟ ଦେବା ଠିକ୍ ହେବ ନାହିଁ । ଏହା ଏହି ଗୃହକୁ ବିଭକ୍ତ କରିବା ଆଡ଼କୁ ଅଗ୍ରସର କରିବ । ତାହା ହେବ ବିନାଶର ଦିନ ।"

"ମୁଁ ଏହି ଗୃହକୁ ଅଧିକ ଭାରାକ୍ରାନ୍ତ କରିବାକୁ ଚାହୁଁ ନାହିଁ । ସ୍ୱାଧୀନତା, ନିଃସନ୍ଦେହ ଭାବରେ ଆନନ୍ଦର ଘଟଣା । କିନ୍ତୁ ଆମେ ଭୁଲିଗଲେ ଚଳିବ ନାହିଁ ଯେ ଏହି ସ୍ୱାଧୀନତା ଆମ ଉପରେ ବହୁ ଗୁରୁଦାୟିତ୍ୱ ନ୍ୟସ୍ତ କରିଛି । ସ୍ୱାଧୀନତା ପାଇବାଦ୍ୱାରା କିଛି ଭୂଲତ୍ରୁଟି ହେଲେ ବ୍ରିଟିଶମାନଙ୍କୁ ଦୋଷ ଦେବାର ଅଧିକାର ଆମେ ହରାଇଥାଇଁ । ଯଦି ଏହାପରେ କିଛି ଭୂଲ ତ୍ରୁଟି ହୁଏ, ତେବେ ଆମ୍ଭେ ଅନ୍ୟ କାହାକୁ ଦୋଷ ନଦେଇ ଆମ୍ଭକୁ ହିଁ ଦୋଷ ଦେବା । ଭୁଲ୍ ହୋଇଯିବାର ବହୁ ବିପଦ ଆଗକୁ ରହିଛି । ସମୟ ଦ୍ରୁତ ଗତିରେ ବଦଳୁଛି । ଲୋକମାନେ ଏପରିକି ଆମ ଲୋକେ ମଧ୍ୟ ନୂତନ ଆଦର୍ଶରେ ପରିଚାଳିତ ହେଉଛନ୍ତି । ସେମାନେ ଲୋକମାନଙ୍କଦ୍ୱାରା ଶାସନରେ ଅତିଷ୍ଠ ହୋଇଗଲେଣି । ସେମାନେ ଲୋକମାନଙ୍କ ପାଇଁ ସରକାର ନିମନ୍ତେ ପ୍ରସ୍ତୁତ ଏବଂ ଲୋକମାନଙ୍କଦ୍ୱାରା ବା ଲୋକମାନଙ୍କର ସରକାର ପ୍ରତି ପରାଙ୍ମୁଖ । ଯଦି ଆମେ ଏହି ସମ୍ବିଧାନକୁ ରକ୍ଷା କରିବାକୁ ଇଚ୍ଛା କରୁଥାଉ, ଯେଉଁଥିରେ ଆମେ ଲୋକମାନଙ୍କପାଇଁ ଲୋକମାନଙ୍କ ନିମିତ୍ତ, ଲୋକମାନଙ୍କଦ୍ୱାରା ସରକାର ଲିପିବଦ୍ଧ କରିଛେ, ଚାଲ ଶପଥ କରିବା ଯେ ଆମେ ରାସ୍ତାରେ ଥିବା କଣ୍ଟକ ପ୍ରତି ଭ୍ରୂକ୍ଷେପ କରିବା ନାହିଁ ଏବଂ ଲୋକମାନଙ୍କୁ ଲୋକମାନଙ୍କପାଇଁ ସରକାର ବୋଲି ପ୍ରବର୍ତ୍ତାଇବା ଯେଉଁ ସରକାର ଲୋକମାନଙ୍କଦ୍ୱାରା ପରିଚାଳିତ ହେବ । ତାହା ହିଁ ହେବ ଏ ଦେଶର ସେବା କରିବାର ଏକମାତ୍ର ମାର୍ଗ । ମୁଁ ଅନ୍ୟକିଛି ଉତ୍କୃଷ୍ଟ ମାର୍ଗ ଜାଣେ ନାହିଁ ।"

୧୯୪୯ ନଭେମ୍ବର ୨୬ ତାରିଖ ଦିନ ଡକ୍ଟର ରାଜେନ୍ଦ୍ର ପ୍ରସାଦ ତାଙ୍କର ସଭାପତିତ୍ୱ ଅଭିଭାଷଣ ଉପସ୍ଥାପିତ କରି ଘୋଷଣା କଲେ ବର୍ତ୍ତମାନ ଏହି ଗୃହ ସମ୍ବିଧାନ ଉପରେ ଭୋଟ ନେବ । ସମ୍ବିଧାନ ହର୍ଷ ଓ କରତାଳି ଧ୍ୱନିରେ ଧ୍ୱନିତ ହେଲା ।

୧୯୫୦ ଜାନୁୟାରୀ ୨୪ ତାରିଖ ଦିନ ପୁନରାୟ ସମ୍ବିଧାନ ସଭାର ବୈଠକ ବସିଲା । ସଭାର ସମସ୍ତ ୩୦୮ ଜଣ ସଭ୍ୟ ସେହି ଐତିହାସିକ ହାତଲେଖା ଦସ୍ତାବିଜରେ ହିନ୍ଦୀ ଓ ଇଂରାଜୀରେ ଦସ୍ତଖତ କଲେ । ଇଂରାଜୀରେ ଛପା ହୋଇଥିବା ଅନ୍ୟ ଏକ କପିରେ ମଧ୍ୟ ଦସ୍ତଖତ କଲେ । ଏହାର ଦୁଇଦିନ ପରେ ଭାରତର ସମ୍ବିଧାନ ରାଷ୍ଟ୍ରର ଆଇନ୍ ହେଲା ଏବଂ ଆଶା, ଶାନ୍ତି ଓ ପ୍ରଗତିର ଆରମ୍ଭ ହେଲା ଏକ ନୂତନ ଅଧ୍ୟାୟ ।

ଡକ୍ଟର ଆମ୍ବେଦକରଙ୍କର ଉତ୍ସାହ ଓ ନିଷ୍ଠାକୁ ପ୍ରଶଂସା କରି ଡକ୍ଟର ରାଜେନ୍ଦ୍ର ପ୍ରସାଦ କହିଥିଲେ, "ଏହି ଆସନରେ ବସି ଓ ପ୍ରତ୍ୟେକଦିନ ଏହି ସଭାର କାର୍ଯ୍ୟ ବିବରଣୀକୁ ଲକ୍ଷ୍ୟ କରି ମୋର ହୃଦ୍‌ବୋଧ ହୋଇଛି ଯେ ଚିଠା ସମିତିର ସଭ୍ୟମାନଙ୍କର ଉତ୍ସାହ ଓ ନିଷ୍ଠା ବ୍ୟତିରେକେ ଅନ୍ୟ କେହି ଏହାକୁ କରିପାରିନଥାନ୍ତେ । ବିଶେଷ କରି ଏହାର ଅଧ୍ୟକ୍ଷ ଡକ୍ଟର ଆମ୍ବେଦକର ତାଙ୍କର ଶାରୀରିକ ଅସୁସ୍ଥତା ସତ୍ତ୍ୱେ ଏହି କାର୍ଯ୍ୟ ସମ୍ପନ୍ନ କରିଛନ୍ତି । ଆମେ ହୁଏତ ଏପରି ଏକ ନିଷ୍ପତ୍ତି କେବେ କରିବା ନାହିଁ କିମ୍ବା ଏହା ଏତେ ଅଭ୍ରାନ୍ତ ହେବ ନାହିଁ ଯେତେବେଳେ ଆମେ ତାଙ୍କୁ ଚିଠା ସମିତିର ସଭ୍ୟଭାବେ ମନୋନୀତ କଲେ ଏବଂ ତାହାର ଅଧ୍ୟକ୍ଷ ମଧ୍ୟ ନିର୍ବାଚିତ କଲେ । ସେ କେବଳ ତାଙ୍କର ମନୋନୟନକୁ ସିଦ୍ଧାନ୍ତ କରିନାହାନ୍ତି ବରଂ ସେ ଯେଉଁ କାର୍ଯ୍ୟ କରିଛନ୍ତି, ସେହି କାର୍ଯ୍ୟର ମହତ୍ତ୍ୱ ବୃଦ୍ଧି କରିଛନ୍ତି ।"

ଆମ୍ବେଦକରଙ୍କୁ ବହୁ ସଭ୍ୟ 'ଆଧୁନିକ ମନୁ' ନାମରେ ବର୍ଣ୍ଣନା କରିଥିଲେ । ଏସ୍.ସହାୟ ମତ ଦେଇ କହିଥିଲେ, "ଭାରତ ସ୍ୱାଧୀନତା ହାସଲ କରିବାର ଗୌରବ ମହାତ୍ମାଜୀଙ୍କୁ ଦିଆଯିବାବେଳେ ଏହାର ବିଧିବଦ୍ଧ'ର ଦାୟିତ୍ୱ ମହାତ୍ମାଜୀଙ୍କର ସବୁଠାରୁ ବଡ଼ ସମାଲୋଚକ ଅର୍ଥାତ୍ ଭାରତୀୟ ସମ୍ବିଧାନର ନିର୍ମାତା ଅଟନ୍ତି ।" ସେ ପୁନରାୟ କହିଲେ, "ସେ କେବଳ ଏହି ସଭାର ନୁହେ ବରଂ ସମଗ୍ର ଦେଶର କୃତଜ୍ଞତା ପାଇବାର ଯୋଗ୍ୟ ।" ତାଙ୍କର ସୁଦକ୍ଷ ପରିଚାଳନାକୁ ବର୍ତ୍ତମାନ ଓ ଆଗାମୀ ଭବିଷ୍ୟତର ବଂଶଧରମାନେ କୃତଜ୍ଞତାର ସହ ମନେ ରଖିବ ।" ଆର.ଭି.ଧୂଳେକର ମତ ଦେଇ କହିଲେ, "ମୁଁ କହିବି ନାହିଁ ଯେ ଏହି କାର୍ଯ୍ୟ ଅତ୍ୟନ୍ତ କଠିନ, କାରଣ ତାହା ଅତ୍ୟନ୍ତ କ୍ଷୁଦ୍ର ଶବ୍ଦ । ସେ ଯେଉଁ କାର୍ଯ୍ୟ ସମ୍ପାଦନ କଲେ, ତାହା ମହାନ୍ ପାଣ୍ଡବ ଭୀମଙ୍କର କୃତିତ୍ୱ ସହ ଯୋଗ୍ୟ । ସେ ତାଙ୍କ ନାମ ଭୀମାରାଓକୁ ଯଥାର୍ଥ ପ୍ରତିପାଦନ କରିଛନ୍ତି ଏବଂ ସେହି

ନିର୍ବାଚିତ ଦାୟିତ୍ୱକୁ ସ୍ୱଚ୍ଛ ଦୂରଦୃଷ୍ଟି, ସ୍ୱଚ୍ଛ ଚିନ୍ତା ଓ ସ୍ୱଚ୍ଛ ଭାଷାଦ୍ୱାରା ସୁଚାରୁଭାବେ ତୁଲାଇଛନ୍ତି ।"

ଆଲାଦି କୃଷ୍ଣସ୍ୱାମୀ ଆୟାର, ଚିଠା ସମିତିର ଅନ୍ୟତମ ସଭ୍ୟ ତାଙ୍କର ଭାଷଣ ଶେଷ କରିବା ପୂର୍ବରୁ କହିଲେ, "ମୁଁ ମୋର ବନ୍ଧୁ, ମହାମାନ୍ୟ ଡକ୍ଟର ଆମ୍ବେଦକର ଯେଉଁ କୁଶଳାତ ଓ ଦକ୍ଷତାର ସହ ସମ୍ବିଧାନକୁ ପରିଚାଳନା କଲେ ଓ ଚିଠା ସମିତିର ଅଧ୍ୟକ୍ଷ ଭାବେ ତାଙ୍କର ଅକ୍ଳାନ୍ତ ପରିଶ୍ରମପାଇଁ ଯଦି ମୁଁ ପ୍ରଶଂସା ନ କରେ, ତେବେ ମୁଁ ମୋ କର୍ତ୍ତବ୍ୟରେ ଅବହେଳା କରିବି ।"

ଗୋବିନ୍ଦ ବଲ୍ଲଭ ପନ୍ଥ ତାଙ୍କୁ 'ପଣ୍ଡିତ' ଆଖ୍ୟା ଦେବାବେଳେ ଡକ୍ଟର ପଟ୍ଟାଭି ସୀତାରାମାୟ କହିଲେ, "ମୁଁ ଆମ୍ବେଦକରଙ୍କୁ କହିବାକୁ ଇଚ୍ଛାକରେ ଯେ ସେ ତାଙ୍କର ବାଷ୍ପୀୟ ଜ୍ଞାନ ସଦୃଶ ବୁଦ୍ଧିମତ୍ତାଦ୍ୱାରା ଏହିପରି ବିପୁଳ ଓ ଚମତ୍କାର ଦାୟିତ୍ୱକୁ ଗ୍ରହଣ କରିପାରିଲେ । ଯାହା ଯେ ହୃଦବୋଧ କଲେ ଠିକ୍ ବୋଲି, ତାର ଫଳାଫଳ କ'ଣ ହେବ ସେଥିପ୍ରତି ଭ୍ରୂକ୍ଷେପ ନ କରି ସେ ଅତ୍ୟନ୍ତ ଦୁର୍ଜୟ, ଦୁର୍ବାର ଓ ଅପରାଜେୟ ଭାବେ ବହୁତ ତାଲ ବୃକ୍ଷଠାରୁ କ୍ଷୁଦ୍ର ଗୁଳ୍ମ ପର୍ଯ୍ୟନ୍ତ ମାଡ଼ି ମକଚି ସମତୁଲ କରି ଦେଲେ ।"

ଯେ କେହି ବ୍ୟକ୍ତି ଏହି ସମ୍ବିଧାନକୁ ପଢ଼ିବ ଏବଂ ଏହାର ପୃଷ୍ଠଭୂମି ସମ୍ପର୍କରେ ଜ୍ଞାତ ହେବ, ସେ ନିଶ୍ଚିତ ଭାବରେ ଆମ୍ବେଦକରଙ୍କୁ ଜଣେ ମହାନ୍ ସମ୍ବିଧାନବିତ୍ ଭାବେ ବିଚାର କରି ପ୍ରଶଂସା କରିବ ବୋଲି ଡକ୍ଟର ପାଲି ମତ ଦେଇଥିଲେ ।

ଆମ୍ବେଦକର ତାଙ୍କର ମହନୀୟ ଯୋଗଦାନଦ୍ୱାରା ଭାରତୀୟ ସମ୍ବିଧାନର ମୁଖ୍ୟ ସ୍ଥପତି ବା ଜନକ ହେବାଦ୍ୱାରା ସେ କେବଳ ଅନୁନ୍ନତ ଶ୍ରେଣୀର ନେତା ନରହି ରାଷ୍ଟ୍ରନାୟକ ପାଲଟି ଗଲେ । ଏହା ଫଳରେ ସେ ତାଙ୍କ ମନରୁ ପୃଥକ୍ ନିର୍ବାଚନ ମଣ୍ଡଳୀ ଭାବନା ତ୍ୟାଗ କରି ଜାତୀୟ ନେତୃମଣ୍ଡଳୀଙ୍କ ସହିତ ହାତ ମିଳାଇଲେ ଏବଂ ଏପରି ଏକ ସମ୍ବିଧାନ ଆଣିଲେ ଯାହା ସଂଖ୍ୟାଲଘୁମାନଙ୍କର ସ୍ୱାର୍ଥକୁ ସୁରକ୍ଷା କରିବା ସହିତ ରାଜନୈତିକ ଓ ଅର୍ଥନୈତିକ ଗଣତନ୍ତ୍ରପାଇଁ ପଥ ପରିଷ୍କାର କରିଦେଲା ।

ଡକ୍ଟର କେ.ଭି.ରାଓ ସମ୍ବିଧାନ ନିର୍ମାଣରେ ଆମ୍ବେଦକରଙ୍କର ଭୂମିକାକୁ ମୂଲ୍ୟାୟନ କରି କହିଥିଲେ, ଆମ୍ବେଦକର ସମ୍ବିଧାନର 'ଜନକ' ନହୋଇ 'ଜନନୀ' ରୂପେ ପରିଚିତ ହେବା ଯଥାର୍ଥ । ସେ ମତବ୍ୟକ୍ତ କରିଥିଲେ, "ଯଦି ପିତାର ଅର୍ଥ ଭବିଷ୍ୟତ ଜୀବନର ସ୍ରଷ୍ଟାକୁ ବୁଝାଏ, ଭାବଗୁଡ଼ିକର ଅଙ୍କୁରିତ କରିବାକୁ କୁହାଯାଏ, ତେବେ ତାଙ୍କର ଭୂମିକା ସମ୍ପର୍କରେ ସାବଧାନତା ସହକାରେ ବିଚାରବିମର୍ଶ ହେବା ଉଚିତ୍ । ଏହା ବ୍ୟତୀତ ନିଷ୍ପତ୍ତି ନେବାରେ ସେ କୌଣସି ଭୂମିକା ପାଳନ କରିନାହାନ୍ତି, ଭାବ ଅଙ୍କୁରୋଦ୍‌ଗମ କରିବା

ଦୂରେ ଥାଉ, ବରଂ ସେ ନିଜ ବିଚାରର ଆପୋଷତା କରିଛନ୍ତି, ନିଜ ଉଦ୍ଦେଶ୍ୟରେ ବିଫଳ ହୋଇଛନ୍ତି ଏବଂ ପରିଶେଷରେ ଅନ୍ୟର ଭାବକୁ ଗ୍ରହଣ କରି, ସେ ସମ୍ପର୍କରେ ଓକିଲାତି କରିଛନ୍ତି । ସେ ଅନୁସୂଚିତ ଜାତିର ସୁରକ୍ଷା କରିବାକୁ ଆସିଥିଲେ ଏବଂ ସେଥିରେ ଅତି ଦୟନୀୟ ଭାବରେ ବିଫଳତା ପାଇଛନ୍ତି । ଏବଂ ଏପରିକି ସେ ପଟେଲଙ୍କଠାରୁ ନିଜ ସମ୍ପ୍ରଦାୟପାଇଁ ଗୋଟିଏ ହେଲେ ଆସନ ସଂରକ୍ଷଣର ରିହାତି ପାଇପାରିନାହାନ୍ତି । ତାଙ୍କର ନିଜର ବିଶ୍ୱାସଠାରୁ ସମସ୍ତ ବ୍ୟବସ୍ଥା ଭିନ୍ନ । ଉଦାହରଣ ସ୍ୱରୂପ, ସେ ତାଙ୍କ ଲେଖାରେ ରାଷ୍ଟ୍ରପତି କାର୍ଯ୍ୟନିର୍ବାହୀ ଭାରତୀୟ ଅବସ୍ଥାକୁ ସୁହାଇବ ବୋଲି ଯୁକ୍ତି କରିବାବେଳେ, ପରବର୍ତ୍ତୀ ସମୟରେ ସମ୍ବିଧାନ ସଭାରେ ତାଙ୍କୁ ଏହାର ବିରୋଧ କରିବାକୁ ହୋଇଛି ।

ସମ୍ବିଧାନ ସଭାରେ ଆମ୍ବେଦକର ଆତ୍ମବିଶ୍ୱାସର ସହ ଚିଠା ସମ୍ବିଧାନକୁ ପରିଚାଳିତ କରିଥିଲେ ମଧ୍ୟ ଏଥିପାଇଁ ସେ କଂଗ୍ରେସ ଦଳର ପ୍ରଶଂସା କରିଥିଲେ । ସେ କହିଥିଲେ ଯେ ଆସେମ୍ବ୍ଲି ମଧ୍ୟରେ କଂଗ୍ରେସ ଦଳ କାର୍ଯ୍ୟସୂଚୀକୁ ଅତ୍ୟନ୍ତ ଶୃଙ୍ଖଳାର ସହିତ ସମ୍ପନ୍ନ କରିବାରେ ସାହାଯ୍ୟ କରିଥିଲେ । ଯେଉଁ କଂଗ୍ରେସର ସେ ବିରୋଧି ଓ ସମାଲୋଚକ ଥିଲେ, ତାହାର ପ୍ରଶଂସା ସେ ବିଚାରଶୀଳ ଭାବରେ କରିଥିଲେ । କାରଣ ଯେତେବେଳେ ନେହେରୁ ସମ୍ବିଧାନର ଉଦ୍ଦେଶ୍ୟ ସମ୍ପର୍କରେ ପ୍ରସ୍ତାବ ରଖିଲେ ଯଦିଓ ସେ ତାହାକୁ ବିରୋଧ କରିଥିଲେ କିନ୍ତୁ ପରବର୍ତ୍ତୀ ସମୟରେ ଦେଶ ବିଭାଜନ ହେବାପାରେ ସେ ହୃଦୟଙ୍ଗମ କଲେ ଯେ ରାଜନୈତିକ ବାସ୍ତବତା ଦୃଷ୍ଟିରୁ ଯେଉଁମାନଙ୍କ ହାତରେ ବାସ୍ତବ ରାଜନୈତିକ କ୍ଷମତା ରହିଛି, ସେମାନଙ୍କ ପ୍ରତି ଏକ ଆପୋଷ ଦୃଷ୍ଟିଭଙ୍ଗୀ ନେବା ଉଚିତ । କଂଗ୍ରେସ ନେତୃତ୍ୱ ମଧ୍ୟ ଆମ୍ବେଦକରଙ୍କର ଏହି ଦୃଷ୍ଟିଭଙ୍ଗୀକୁ ଗ୍ରହଣ କରି ତାଙ୍କୁ ସମ୍ବିଧାନ ଚିଠା ସମିତିର ଅଧ୍ୟକ୍ଷ ପଦରେ ଆସୀନ କରିଥିଲେ ।

୧୯୪୭ ଏପ୍ରିଲ୍ ୨୯ ତାରିଖରେ ସମ୍ବିଧାନ ସଭା ଘୋଷଣା କଲା, "ଯେକୌଣସି ରୂପରେ ଅସ୍ପୃଶ୍ୟତାକୁ ଉଚ୍ଛେଦ କରାଗଲା ଏବଂ ଯଦି ସେ ସମ୍ପର୍କରେ କେହି କୌଣସି ଅକ୍ଷମତା ଲଦି ଦିଏ, ତେବେ ତାହା ଧର୍ତ୍ତବ୍ୟ ଅପରାଧ ହେବ । ସର୍ଦ୍ଦାର ପଟେଲ ଏହି ଖଣ୍ଡ (clause) କୁ ଉପସ୍ଥାପିତ କରିଥିଲେ । ଅସ୍ପୃଶ୍ୟତା ଦୋଷରୁ ମୁକ୍ତ ହେବାପାଇଁ ଏହି ଘୋଷଣା କ୍ଷମତାରୂଢ଼ ହେବାକୁ ଯାଉଥିବା ଶାସକ ଦଳର ଇଚ୍ଛା ଏଥିରେ ପ୍ରକଟିତ ହୋଇଥିଲା ଏବଂ ଭାରତ ଇତିହାସରେ ଏ ଦିନଟି ଥିଲା ଏକ ଗୌରବୋଜ୍ଜ୍ୱଳ ଦିବସ । ବିଶ୍ୱର ସମସ୍ତ ଖବରକାଗଜ ଏହି ଘଟଣାକୁ ଅସ୍ପୃଶ୍ୟମାନଙ୍କର ସ୍ୱାଧୀନତା, ଅସ୍ପୃଶ୍ୟମାନଙ୍କର ମୁକ୍ତି ଓ ମାନବ ମୁକ୍ତିର ବିଜୟ ହେଲା ବୋଲି ଘୋଷଣା କରିଥିଲେ ।

ଭାରତର ଏହି ମହାନ୍ ସଫଳତାପାଇଁ ସେମାନେ ଗାନ୍ଧୀଜୀଙ୍କର ପ୍ରଶଂସାରେ ଶତମୁଖ ହୋଇ ଉଠିଥିଲେ । ବସ୍ତୁତଃ ଏହା ଥିଲା କଂଗ୍ରେସଦଳ ଯେକି ଅସ୍ପୃଶ୍ୟତାର ବିଲୋପ

ଘୋଷଣା କରୁଥିଲା । କୌଣସି ବିଦେଶୀ ପ୍ରେସରେ ଆମ୍ବେଦକରଙ୍କର ନାମ ନଥିଲା ଯଦିଓ ତାଙ୍କର ପ୍ରେରଣାର ଶକ୍ତିଦ୍ୱାରା ହିଁ ଏହି କାର୍ଯ୍ୟ ରାଷ୍ଟ୍ରଦ୍ୱାରା ସମ୍ପନ୍ନ ହୋଇଥିଲା । ସମ୍ବିଧାନ ସଭାଦ୍ୱାରା ଗୃହୀତ ସମ୍ବିଧାନ ସଭ୍ୟମାନଙ୍କର ମିଳିତ ବିଚାରର ପରିପ୍ରକାଶ ହୋଇଥିଲେ ହେଁ ଆମ୍ବେଦକରଙ୍କର ରାଜନୈତିକ ଦର୍ଶନର ଝଲକ ଏବଂ ବ୍ୟକ୍ତିଗତ ବିଚାରର ଦଲିଲ "ରାଷ୍ଟ୍ର ଓ ସଂଖ୍ୟାଲଘୁ" ଶୀର୍ଷକ ଦସ୍ତାବିଜରୁ ଦେଖିବାକୁ ମିଳେ ଯାହା ଅଖିଳ ଭାରତ ଅନୁସୂଚିତ ଜାତି (ଦଳିତ) ସଂଘ ତରଫରୁ ୧୯୪୬ ମସିହାରେ ସମ୍ବିଧାନ ସଭାକୁ ସ୍ମାରକ ପତ୍ର ଆକାରରେ ଉପସ୍ଥାପିତ କରାଯାଇଥିଲା । ଏପରିକି ଭାଷାଭିତ୍ତିକ ରାଜ୍ୟ, ଦେଶ ବିଭାଜନ ଓ ସଂଖ୍ୟା ଲଘୁ ସମ୍ପର୍କରେ ତାଙ୍କର ମତରେ ଭାରତ ଗୋଟିଏ ରାଷ୍ଟ୍ର ସମ୍ପର୍କରେ ତାଙ୍କର ଦୂରଦୃଷ୍ଟିର ପରିଚୟ ମିଳେ ।

ଭାଷା ଭିତ୍ତିକ ରାଜ୍ୟ ସମ୍ପର୍କରେ ମତ ଦେଇ ଭାରତର ଏକତା ଏହାଦ୍ୱାରା ବିପନ୍ନ ହେବ ଏବଂ ଏଥିପାଇଁ କେନ୍ଦ୍ର ଓ ରାଜ୍ୟମାନଙ୍କର ସରକାରୀ ଭାଷା ଏକ ହେବା ଉପରେ ଗୁରୁତ୍ୱ ଆରୋପ କରିଥିଲେ । କାରଣ ତାଙ୍କ ମତରେ ଭାଷାଭିତ୍ତିକ ପ୍ରଦେଶର ଭାଷା ସହିତ କୌଣସି ସମ୍ପର୍କ ନାହିଁ ।

ପଣ୍ଡିତ ନେହେରୁ ୧୯୫୬ ଡିସେମ୍ବର ୬ ତାରିଖ ଦିନ ତାଙ୍କ ମୃତ୍ୟୁରେ ଶୋକ ପ୍ରକାଶ କରି ଲୋକ ସଭାରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବାକୁ ଯାଇ କହିଥିଲେ, "ଭାରତର ସମ୍ବିଧାନର ଗଠନରେ ଡକ୍ଟର ଆମ୍ବେଦକର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିଭାଇଛନ୍ତି । ପ୍ରକୃତ ପକ୍ଷେ କହିଲେ ଡକ୍ଟର ଆମ୍ବେଦକର ସମ୍ବିଧାନ ନିର୍ମାଣରେ ଏକ ସକରାତ୍ମକ ଭୂମିକା ନିଭେଇଛନ୍ତି ଏପରିକି ସେ ଚିଠା ସମିତିର ସଭ୍ୟଭାବେ ନିର୍ବାଚିତ ହେବା ପୂର୍ବରୁ ।" ପୁନରାୟ ନେହେରୁ ମତ ଦେଇ କହିଲେ, "ଡକ୍ଟର ଆମ୍ବେଦକରଙ୍କ ବ୍ୟତୀତ ଅନ୍ୟ କେହି ସମ୍ବିଧାନ ନିର୍ମାଣପାଇଁ ଏତେ କଷ୍ଟ ଓ ଯତ୍ନ ନେଇ ନାହାନ୍ତି ।"

ସୌଜନ୍ୟ : ସୌରୀବନ୍ଧୁ କର, *ମୂକ ଜନତାର ନାୟକ ବାବାସାହେବ ଆମ୍ବେଦକର*, ୨୦୦୩, ଭୁବନେଶ୍ୱର: ମହାବୀର ପ୍ରକାଶନ ।

# ଗାନ୍ଧୀ ଓ ଆମ୍ବେଦକର

ସୁପ୍ରିୟା ମଲ୍ଲିକ

"What I want, what I am living for and what I should delight in dying for, is the eradication of untouchability, root and branch."

M.K. Gandhi

"ମୁଁ ଯାହା ଚାହେଁ, ମୁଁ ଯେଉଁଥିପାଇଁ ବଞ୍ଚୁଛି ଏବଂ ଯେଉଁଥିପାଇଁ ମୃତ୍ୟୁବରଣ କରିବାରେ ଆନନ୍ଦ ପାଇବି, ତାହା ହେଉଛି ଅସ୍ପୃଶ୍ୟତାର ସମୂଳ ନିରାକରଣ ।"

ମହାତ୍ମାଗାନ୍ଧୀ, ୧୯୩୨ ମସିହା ସେପ୍ଟେମ୍ବର ୨୦ ତାରିଖରେ ସମ୍ବାଦପତ୍ରରେ ଏକ ସାକ୍ଷାତ୍କାର ଦେଇ, ଏହା କହିଥିଲେ ଓ ଏହା ସହିତ ଆରମ୍ଭ ହୋଇଥିଲା ଅସ୍ପୃଶ୍ୟତା ନିବାରଣ ଆନ୍ଦୋଳନ । ଜି.ଡି. ବିରଲାଙ୍କ ଅଧ୍ୟକ୍ଷତାରେ ସର୍ବଭାରତୀୟ 'ଅସ୍ପୃଶ୍ୟତା ନିବାରଣ ଲିଗ୍' ଗଠନ କରାଯାଇଥିଲା ଏବଂ ଏ.ଭି. ଠକ୍କର ହେଲେ ଏହାର ସାଧାରଣ ସମ୍ପାଦକ । ସେହିବର୍ଷ ଡିସେମ୍ବର ୯ ତାରିଖରେ ଲିଗ୍‌କୁ "ହରିଜନ ସେବକ ସଂଘ" ନାମରେ ପରିବର୍ତ୍ତନ କରାଗଲା ଓ ସଂଘର ସମ୍ବିଧାନରେ ଦୁଇଟି ମୌଳିକ ଲକ୍ଷ୍ୟ ରହିଲା - ପ୍ରଥମତଃ ସବର୍ଣ୍ଣ ହିନ୍ଦୁମାନଙ୍କ ମଧ୍ୟରେ ସଚେତନତା ସୃଷ୍ଟି କରିବା ଓ ଦ୍ୱିତୀୟତଃ ହରିଜନମାନଙ୍କର ଶିକ୍ଷା, ସାମାଜିକ ଓ ଅର୍ଥନୈତିକ ଉନ୍ନତିପାଇଁ ପଦକ୍ଷେପ ନେବା । ହରିଜନମାନଙ୍କର ମନ୍ଦିର ପ୍ରବେଶ ଆନ୍ଦୋଳନକୁ ଅଧିକ ଗୁରୁତ୍ୱ ଦିଆଗଲା । କାରଣ ଅସ୍ପୃଶ୍ୟତା ନିବାରଣ ଦିଗରେ ଏହା ଅନ୍ୟତମ ଆବଶ୍ୟକତା ବୋଲି ଗାନ୍ଧୀ ବିଚାର କରୁଥିଲେ । ଖୁବ୍ କମ୍ ଦିନ ମଧ୍ୟରେ ରକ୍ଷଣଶୀଳ ହିନ୍ଦୁମାନେ ପ୍ରତିକ୍ରିୟାଶୀଳ ହୋଇ ସଂଘବଦ୍ଧ ଭାବରେ ହରିଜନ ଆନ୍ଦୋଳନକୁ ବିରୋଧ କଲେ । "ଅଖିଳ ଭାରତ ସନାତନ ଧର୍ମ ମହାସଭା", "ବିର୍ଣ୍ଣାଶ୍ରମ ସ୍ୱରାଜ୍ୟ ସଂଘ", "ସନାତନ ବର୍ଣ୍ଣାଶ୍ରମ ଧର୍ମ ସଂରକ୍ଷକ ସଭା" ଆଦି ହିନ୍ଦୁ ସଂଗଠନଗୁଡ଼ିକ ବିଭିନ୍ନ ମନ୍ଦିର୍‌ର କର୍ତ୍ତୃପକ୍ଷ ଓ ଅନେକ ରକ୍ଷଣଶୀଳ ବ୍ୟକ୍ତିମାନଙ୍କର ଦୃଢ଼ ବିରୋଧାତ୍ମକ କାର୍ଯ୍ୟକ୍ରମ, ସରକାରୀ ନିସ୍ପୃହତା ଏବଂ ସର୍ବୋପରି କଂଗ୍ରେସ୍ ନେତାମାନଙ୍କର ପ୍ରତିରୋଧ ଫଳରେ ହରିଜନ ଆନ୍ଦୋଳନ ଦୁର୍ବଳ ହୋଇଆସିଲା । ଆନ୍ଦୋଳନର ପ୍ରାରମ୍ଭରେ ଯେଉଁ ସବୁ ସ୍ଥାନରେ ମନ୍ଦିର, କୂଅ, ଓ ରାସ୍ତାକୁ ହରିଜନମାନଙ୍କପାଇଁ ଖୋଲାଯାଇଥିଲା ସେସବୁ ପୁନର୍ବାର ବନ୍ଦ ହୋଇଗଲା । ଏପରିକି ଯେଉଁ ସ୍ଥାନରେ ଗାନ୍ଧୀ ଅସ୍ପୃଶ୍ୟତା ବିରୋଧୀ ଭାଷଣ

ଦେଲେ, ସେଠାରେ ହଜାରହଜାର ଲୋକ ତାଙ୍କୁ ଦେଖିବାକୁ ଆସିଲେ ସିନା; କିନ୍ତୁ ତାଙ୍କର ବକ୍ତବ୍ୟ ପ୍ରତି ସେମାନେ ନିସ୍ପୃହ ମନୋଭାବ ପୋଷଣ କରୁଥିଲେ ବୋଲି କେତେକ ସରକାରୀ ରିପୋର୍ଟ ଓ ଗୋପନୀୟ ସରକାରୀ ଚିଠିପତ୍ରରୁ ଜଣାଯାଏ ।

୧୯୩୨ ରୁ ୧୯୩୪ ମଧ୍ୟରେ ସାରା ଭାରତରେ ପ୍ରସାରିତ ହୋଇଥିବା ହରିଜନ ଆନ୍ଦୋଳନର ଏକମାତ୍ର ସଫଳତା ହେଲା, ଦଳିତମାନଙ୍କ ମଧ୍ୟରୁ କଂଗ୍ରେସ ବିରୋଧୀ ମନୋଭାବର ହ୍ରାସ । ଦଳିତମାନଙ୍କ ମଧ୍ୟରେ କଂଗ୍ରେସ ବିରୋଧୀ ମନୋଭାବର ପ୍ରସାର ପଛରେ ଅନେକ କାରଣ ଥିଲା । ପ୍ରଥମତଃ କଂଗ୍ରେସ ଥିଲା ସବର୍ଣ୍ଣ ରାଜନୈତିକ ଦଳ । ଦ୍ୱିତୀୟତଃ ଶିକ୍ଷିତ, ସଚେତନ ଓ ଚିନ୍ତାଶୀଳ ଦଳିତ ନେତା ମାନଙ୍କର ଭୟ ଥିଲା, ଯଦି ଅସ୍ପୃଶ୍ୟତାର ନିରାକରଣ ପୂର୍ବରୁ ସ୍ୱରାଜ୍ୟ ବା ସ୍ୱାଧୀନତତା ଆସେ ତେବେ ରକ୍ଷଣଶୀଳ କଂଗ୍ରେସ୍ ନେତାଙ୍କ ହାତକୁ କ୍ଷମତା ଆସିବ ଏବଂ ପରମ୍ପରାନୁଯାୟୀ ଦଳିତ ଗୋଷ୍ଠୀର ଦାସତ୍ୱ ଦୃଢ଼ ହୋଇ ଚାଲିବ । ତୃତୀୟତଃ ଦଳିତ ଗୋଷ୍ଠୀକୁ ଏକ ସ୍ୱତନ୍ତ୍ର ପରିଚୟ ପ୍ରଦାନ କରି ବ୍ରିଟିଶ୍ ସରକାର ଯେତେବେଳେ ସାଂପ୍ରଦାୟିକ ପୁରସ୍କାର ଘୋଷଣା କଲେ, ଏହା ବିରୋଦ୍ଧରେ ଗାନ୍ଧୀ 'ଆମରଣ ଅନଶନ' ଆରମ୍ଭ କଲେ, ଯାହାଦ୍ୱାରା ଗାନ୍ଧୀ ଦଳିତ ସ୍ୱାର୍ଥର ପରିପନ୍ଥୀ ବୋଲି ଅନୁଭୁତ ହେଲା । 'ପୁନାଚୁକ୍ତି' ରେ ଅନଶନର ଅବସାନ କରିବା ପରେ ଗାନ୍ଧୀ ଯେଉଁ ହରିଜନ ଆନ୍ଦୋଳନ ଆରମ୍ଭ କଲେ ସେଥିରେ ବାସ୍ତବରେ ଅସ୍ପୃଶ୍ୟତା ତିଳେ ହେଲେ ଦୋହଲିଲା ନାହିଁ । ଏହା ଗାନ୍ଧୀ ନିଜେ ମଧ୍ୟ ଅନୁଭବ କରିଥିଲେ ଓ କେତେକ କ୍ଷେତ୍ରରେ ବ୍ୟକ୍ତ କରିଥିଲେ । ଗାନ୍ଧୀଙ୍କ ତତ୍ତ୍ୱାବଧାନରେ ଆନ୍ଦୋଳନ ଚାଲିଥିବା ଗୁଜୁରାଟରେ ମଧ୍ୟ କୌଣସି ଗୋଟିଏ ହେଲେ ବିଦ୍ୟାଳୟରେ 'ଧେଡ଼' ଓ 'ଭଙ୍ଗି' ଆଦି ଅସ୍ପୃଶ୍ୟ ଜାତିର ପିଲାମାନଙ୍କୁ ଗ୍ରହଣ କରାଗଲା ନାହିଁ । କାର୍ଯ୍ୟତଃ କୌଣସି ସାମାଜିକ, ପରିବର୍ତ୍ତନ ଘଟିଲା ନାହିଁ; କିନ୍ତୁ ଆଦର୍ଶବାଦ ଉପରେ ଆଧାରିତ ଗାନ୍ଧୀଙ୍କର ଭାଷଣ ଓ ରଚନା ଦଳିତମାନଙ୍କ ମନରେ ଏହି ଭାବର ଉଦ୍ରେକ କରାଇଲା ଯେ, ବାସ୍ତବରେ ଦଳିତ ସମସ୍ୟା ପ୍ରତି ଗାନ୍ଧୀ ଓ କଂଗ୍ରେସ ସମ୍ବେଦନଶୀଳ । ଏହା ହିଁ 'ହରିଜନ' ଆନ୍ଦୋଳନର ଏକମାତ୍ର ସଫଳତା ।

ଯଦିଓ ଗାନ୍ଧୀଙ୍କର କଥା ଓ କର୍ମର ଅପୂର୍ବ ସମନ୍ୱୟ,ସରଳ ଓ ନିରାଡ଼ମ୍ବର ଚଳଣୀ, ଆକର୍ଷଣୀୟ ଆଚରଣ ତଥା ଅନଶନ ଓ ପଦଯାତ୍ରା ଭଳି କେତେକ କାର୍ଯ୍ୟ ଭାରତୀୟ ଜନଗଣଙ୍କ ହୃଦୟରେ ତାଙ୍କୁ ଏକ ସନ୍ଥର ଭାବମୂର୍ତ୍ତି ପ୍ରଦାନ କରିଥିଲା, ତଥାପି କେତେକ କ୍ଷେତ୍ରରେ ସେ କୌଶଳୀ ରାଜନୀତିଜ୍ଞ ଭାବରେ ପ୍ରତିପାଦିତ ହୋଇଥିଲେ । ତନ୍ମଧ୍ୟରୁ "ହରିଜନ ଆନ୍ଦୋଳନ" ଓ 'ପୁନାଚୁକ୍ତି' ଅନ୍ୟତମ କ୍ଷେତ୍ର ।

ତଥାପି ଏହା ଅସ୍ୱୀକାର କରାଯାଇନପାରେ ଯେ, " ସେ ଦଳିତ ଜାତିର ସେବା କରିବାକୁ ଚାହୁଁଥିଲେ ।" ଦକ୍ଷିଣ ଆଫ୍ରିକାରୁ ଫେରିବା ପରେ ୧୯୧୫ରେ ସତ୍ୟାଗ୍ରହ ଆଶ୍ରମ ସ୍ଥାପନ କରି କେତେଜଣ ଅସ୍ପୃଶ୍ୟ ବ୍ୟକ୍ତିଙ୍କୁ ଏହାର ଅନ୍ତେଃବାସୀ ରୂପେ ସ୍ଥାନ ଦେଇ ସେ ସାମାଜିକ ବାଛନ୍ଦକୁ ସାମ୍ନା କରିଥିଲେ । କଂଗ୍ରେସର ଏକ ପ୍ରମୁଖ କାର୍ଯ୍ୟକ୍ରମ ରୂପେ "ଅସ୍ପୃଶ୍ୟତା ନିବାରଣ" ଲକ୍ଷ୍ୟକୁ ଗ୍ରହଣ କରିବାପାଇଁ କଂଗ୍ରେସ ସଂଗଠନକୁ ପ୍ରସ୍ତାବ ଦେଇଥିଲେ । ଗାନ୍ଧୀଙ୍କ ବିଚାରଧାରା ଅନୁଯାୟୀ ଅସ୍ପୃଶ୍ୟତାର ନିରାକରଣପାଇଁ କଂଗ୍ରେସ କର୍ମୀମାନେ ଶପଥ ନେଉଥିଲେ । କିନ୍ତୁ ଏସବୁ କେବଳ ପ୍ରଚାର କ୍ଷେତ୍ରରେ ହିଁ ସୀମିତ ରହୁଥିଲା । କଂଗ୍ରେସର ନେତାମାନେ ଅସ୍ପୃଶ୍ୟତାର ପ୍ରଶ୍ନ ଉପରେ ଜୋର୍ ଦେବାକୁ ପସନ୍ଦ କରୁନଥିଲେ ଓ କର୍ମୀମାନେ କାର୍ଯ୍ୟତଃ ଏ ଦିଗରେ କୌଣସି ପଦକ୍ଷେପ ନେଉନଥିଲେ । ୧୯୨୯ ମସିହା ଡିସେମ୍ବରରେ ଲାହୋରଠାରେ ଅନୁଷ୍ଠିତ କଂଗ୍ରେସ ଅଧିବେଶନରେ ଏକ ସ୍ୱୟଂଶାସିତ କମିଟୀ (Permanent Autonomous Body) ଗଠନ କରି ଅସ୍ପୃଶ୍ୟତା ନିବାରଣ ଦିଗରେ କାମ କରିବାପାଇଁ ଗାନ୍ଧୀ ଯେଉଁ ପ୍ରସ୍ତାବ ଦେଲେ ତାହା ବହୁମତରେ ପ୍ରତ୍ୟାଖ୍ୟାତ ହେଲା । କ୍ରମଶଃ 'ଅସ୍ପୃଶ୍ୟତା'ର ପ୍ରଶ୍ନ ଲୋପ ପାଇଗଲା ଓ କଂଗ୍ରେସର ରାଜନୈତିକ ଆଭିମୁଖ୍ୟ ପ୍ରବଳ ହୋଇଉଠିଲା । ଦାଣ୍ଡିଯାତ୍ରା ସମୟରେ ଗଜେରାଠାରେ ଏକ ସଭାରେ ଗାନ୍ଧୀ ଦେଖିଲେ ଯେ କଂଗ୍ରେସ୍ କର୍ମୀ ଓ ଜନସାଧାରଣଙ୍କଠାରୁ କିଛି ଦୂରରେ ଅସ୍ପୃଶ୍ୟ ଲୋକମାନେ ବସିଛନ୍ତି । ଏଣୁ ଦଳିତ ସମସ୍ୟା ପ୍ରତି କଂଗ୍ରେସର ନିସ୍ପୃହତା, ଦଳିତମାନଙ୍କ ମଧ୍ୟରେ ଗାନ୍ଧୀ ଓ କଂଗ୍ରେସ ବିରୋଧି ମନୋଭାବ ସୃଷ୍ଟି କରିବାଟା ସ୍ୱାଭାବିକ ଥିଲା ।

ଯଦିଓ ଗାନ୍ଧୀ କହିଥିଲେ ଅସ୍ପୃଶ୍ୟତା ନିବାରଣପାଇଁ ମୃତ୍ୟୁ ବରଣ କରିବାରେ ମୁଁ ଆନନ୍ଦ ଲାଭ କରିବି, ତଥାପି ଏହା ତାଙ୍କର ଏକମାତ୍ର ଜରୁରି କାମ ହୋଇନଥିଲା । ତାଙ୍କର ସର୍ବାଧିକ ସମୟ ଓ ଶକ୍ତି ବ୍ରିଟିଶ୍ ସାମ୍ରାଜ୍ୟବାଦ ବିରୁଦ୍ଧରେ ସଂଘର୍ଷ କାର୍ଯ୍ୟରେ ଲାଗିଥିଲା । ବ୍ରିଟିଶ୍ ବିରୁଦ୍ଧରେ ଲଢ଼ିବାପାଇଁ ସମଗ୍ର ଭାରତୀୟ ଜନଗଣଙ୍କର ସମର୍ଥନ ତାଙ୍କପାଇଁ ଆବଶ୍ୟକ ଥିଲା । ଏଣୁ ଦଳିତ ଗୋଷ୍ଠୀର ସମର୍ଥନ ମଧ୍ୟ ତାଙ୍କ ପଛରେ ରହିବା ଆବଶ୍ୟକ ବୋଲି ସେ ଅନୁଭବ କରୁଥିଲେ । ଦ୍ୱିତୀୟ ଗୋଲ୍‌ଟେବୁଲ ବୈଠକରେ ଦଳିତ ନେତା ଡକ୍ଟର ଭୀମରାଓ ଆମ୍ବେଦକର ଯେତେବେଳେ ତାଙ୍କର ନେତୃତ୍ୱ ପ୍ରତି ଏକ ଆହ୍ୱାନ ରୂପେ ଦେଖାଦେଲେ ଏବଂ ଆମ୍ବେଦକରଙ୍କର ଅକାଟ୍ୟଯୁକ୍ତି ସାମ୍ନାରେ ଗାନ୍ଧୀଙ୍କର କୌଣସି ବକ୍ତବ୍ୟ ତିଷ୍ଠି ପାରିଲା ନାହିଁ, ସେତେବେଳେ ଗାନ୍ଧୀ ଅନଶନ ଭଳି ଏକ ଅଯୁକ୍ତିକର ଉପାୟ ଅବଲମ୍ବନ କଲେ । ଗାନ୍ଧୀଙ୍କର ଜୀବନ ରକ୍ଷାପାଇଁ ତଥା ଏକ ଭୟଙ୍କର ଜାତିଗତ ସଂଘର୍ଷକୁ ଏଡ଼ାଇବା ଉଦ୍ଦେଶ୍ୟରେ ବାଧ୍ୟହୋଇ ବାବାସାହେବ ଆମ୍ବେଦକର

ସେପାରେଟ୍ ଇଲେକ୍ଟୋରେଟ୍‌ର (ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ) ଦାବୀକୁ ପ୍ରତ୍ୟାହାର କଲେ ଓ ସଂରକ୍ଷଣ ବ୍ୟବସ୍ଥାପାଇଁ ସମ୍ମତ ହେଲେ । ଏଠାରେ ଉଲ୍ଲେଖଯୋଗ୍ୟ ବିଷୟଟି ହେଉଛି, 'ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ' ପରିବର୍ତ୍ତେ ଅନ୍ୟ କୌଣସି 'ବିକଳ୍ପ ବ୍ୟବସ୍ଥା' ଗାନ୍ଧୀ ଉପସ୍ଥାପିତ କରିବାକୁ ଚାହୁଁନଥିଲେ, ଯେଉଁଥିପାଇଁ ପାଶ୍ଚାତ୍ୟ ସମ୍ବାଦ ସଂସ୍ଥା ଗାନ୍ଧୀଙ୍କୁ ତୀବ୍ର ସମାଲୋଚନା କରିଥିଲେ ।

ଗାନ୍ଧୀ, ଅସ୍ପୃଶ୍ୟତାକୁ ପାପ ବୋଲି ବକ୍ତବ୍ୟ ଦେଉଥିଲେ ସୁଦ୍ଧା ବର୍ଣ୍ଣ ବ୍ୟବସ୍ଥା ଓ ଜାତି ବ୍ୟବସ୍ଥାର ଦୃଢ଼ ସମର୍ଥକ ଥିଲେ । ସେ କହୁଥିଲେ ଜାତିଗତ ବୃତ୍ତିକୁ ଗ୍ରହଣ କରିବାପାଇଁ ବର୍ଣ୍ଣ ବ୍ୟବସ୍ଥା ଆମକୁ ଶିକ୍ଷା ଦିଏ ଏବଂ ଜାତି ବ୍ୟବସ୍ଥା ଆମର କର୍ତ୍ତବ୍ୟ ନିର୍ଦ୍ଧାରଣ କରିଥାଏ । ଚତୁର୍ବର୍ଣ୍ଣ ଓ ଜାତି ବ୍ୟବସ୍ଥା ହିନ୍ଦୁଧର୍ମରେ ମୌଳିକ, ସ୍ୱାଭାବିକ ଓ ଅନିବାର୍ଯ୍ୟ ବୋଲି କହି ସେ ଏହି ଉଭୟ ବ୍ୟବସ୍ଥାକୁ ସମର୍ଥନ କରିଥିଲେ । ନିଜ ବାପ ଅଜାଙ୍କ ଜୀବିକା ଗ୍ରହଣ କରିବାରେ ଏବଂ ଆନ୍ତର୍ଜାତିୟ ବିବାହ ସମ୍ପର୍କରେ ଗାନ୍ଧୀଙ୍କର ସ୍ଥିତି ଯୁକ୍ତି ସଙ୍ଗତ ନଥିଲା । ରକ୍ତ ଓ ଆନୁବଂଶିକତା ଭିତ୍ତିରେ ଚତୁର୍ବର୍ଣ୍ଣର ସମର୍ଥନ, ସହ-ଭୋଜନ ଉପରେ କଟକଣା ସପକ୍ଷରେ ଯୁକ୍ତି, ସଂଯମ ଓ ଇଚ୍ଛାଶକ୍ତିର ସାଧନା ଦୃଷ୍ଟିରୁ ଅଜାତି ବିବାହ ନିଷେଧର ସମର୍ଥନ ଆଦି ବିଚାର, ଯାହା ବାରମ୍ବାର ଗାନ୍ଧୀ ବ୍ୟକ୍ତ କରିଥିଲେ, ତାହା ନିଶ୍ଚିତ ଭାବରେ ଭୁଲ୍ ଥିଲା । ତେବେ ଦୁଇଟି କାରଣରୁ ଏହିସବୁ ବିଚାରକୁ ଗାନ୍ଧୀ ଦୃଢ଼ ଭାବରେ ସମର୍ଥନ କରିଥାଇ ପାରନ୍ତି । ପ୍ରଥମତଃ ବୈଷ୍ଣବ-ଜୈନ ପରିବାରର ଧର୍ମୀୟ ପରିବେଶ ଭିତରେ ତାଙ୍କର ପାଳନ ପୋଷଣ ହୋଇଥିବାରୁ ସେ ଅତ୍ୟନ୍ତ ରକ୍ଷଣଶୀଳ ଥିଲେ । ଦ୍ୱିତୀୟତଃ ତତ୍କାଳୀନ ଭାରତୀୟ ହିନ୍ଦୁ ସମାଜର କଠୋର ଧର୍ମୀୟ ପରମ୍ପରା ଉପରେ ଆକ୍ରମଣ କରି ସେ ନିଜର ଜନସମର୍ଥନ ହରାଇବାକୁ ଚାହୁଁ ନଥିଲେ । କାରଣ ବ୍ରିଟିଶ୍ ବିରୁଦ୍ଧରେ ଲଢ଼ିବା ପାଇଁ ତାଙ୍କୁ ମୁଖ୍ୟତଃ ସେହି ରକ୍ଷଣଶୀଳ ହିନ୍ଦୁମାନଙ୍କର ସମର୍ଥନ ଉପରେ ହିଁ ନିର୍ଭର କରିବାକୁ ପଡୁଥିଲା । ଯେଉଁମାନେ କେବଳ ସଂଖ୍ୟାଗରିଷ୍ଠ ନଥିଲେ, ଅପରନ୍ତୁ ସ୍ୱଚ୍ଛଳ ଓ ପ୍ରଭାବଶାଳୀ ମଧ୍ୟ ଥିଲେ ।

ଜାତି ଓ ବର୍ଣ୍ଣ ବ୍ୟବସ୍ଥାର ବିରୋଧି ଡକ୍ଟର ଆମ୍ବେଦକରଙ୍କର ବଳିଷ୍ଠ ଯୁକ୍ତି ଓ ମର୍ମସ୍ପର୍ଶୀ ଆଲୋଚନାର ପ୍ରଭାବରେ, ନିଜ ଜୀବନର ଶେଷ ବର୍ଷଗୁଡ଼ିକରେ ଗାନ୍ଧୀ ନିଜର ବିଚାର ବଦଳାଇଥିଲେ । ତାପରେ ସେ କେବଳ ଆନ୍ତଜାତି ବିବାହର ଦୃଢ଼ ସମର୍ଥକ ହୋଇଥିଲେ ତାହା ନୁହେଁ ଦଳିତ ଓ ସବର୍ଣ୍ଣଙ୍କ ମଧ୍ୟରେ ବିବାହକୁ ମଧ୍ୟ ସମର୍ଥନ କଲେ । କିନ୍ତୁ ସତ୍ୟର ସନ୍ଧାନ ଓ ପ୍ରୟୋଗ କରି ଅଭିଜ୍ଞତାକୁ ଋଦ୍ଧିମନ୍ତ କରୁଥିବା ଗାନ୍ଧୀ, ଏହା କେବେହେଲେ ସ୍ୱୀକାର କରିନାହାନ୍ତି ଯେ, 'ଆମ୍ବେଦକରଙ୍କ ବିଚାର, ଦୂରଦୃଷ୍ଟି ଓ ବିବେକ ସମ୍ମତ ତର୍କ ଗାନ୍ଧୀଙ୍କ ବିଚାରରେ ପରିବର୍ତ୍ତନ ଆଣିବାରେ ସଫଳ ହୋଇଥିଲା ।

## ଦୁଇ

କ୍ରାନ୍ତିର ପ୍ରତୀକ ଡକ୍ଟର ଭୀମରାଓ ରାମଜୀ ଆମ୍ବେଦକର ଅନ୍ୟାୟ, ଶୋଷଣ ଓ ବୈଷମ୍ୟ ବିରୁଦ୍ଧରେ ଆଜୀବନ ସଂଗ୍ରାମ କରିଥିଲେ । ଯେହେତୁ ହିନ୍ଦୁଧର୍ମ ଓ ଦର୍ଶନ ସାମାଜିକ ବୈଷମ୍ୟକୁ ପ୍ରତିପାଦିତ କରେ ଓ ଅନ୍ୟାୟ, ତ୍ୱରାନ୍ୱିତ କରିଥାଏ, ସେହେତୁ ହିନ୍ଦୁ ଧର୍ମର ବିଦ୍ରୋହୀ ଭାବରେ ଗଣ୍ୟ ହେବାଟା ତାଙ୍କପାଇଁ ଅପରିହାର୍ଯ୍ୟ ହୋଇପଡ଼ିଲା । ଗାନ୍ଧୀ ଆଦର୍ଶବାଦ ଉପରେ ଆଧାରିତ ସେଭଳି କୌଣସି ପ୍ରତିଶ୍ରୁତି ନଦେଇ ସୁଦ୍ଧା ଅସ୍ପୃଶ୍ୟମାନଙ୍କର ଉଦ୍ଧାର ପାଇଁ ସେ ଆପ୍ରାଣ ଉଦ୍ୟମ କରିଥିଲେ । ଏଣୁ ଦଳିତ ଓ ନିଷ୍ପେସିତ କୋଟି କୋଟି ଭାରତୀୟଙ୍କପାଇଁ ସେ ଏକ ମୁକ୍ତିର ପ୍ରତୀକ ଓ ଆରାଧ୍ୟ ପୁରୁଷ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ହିନ୍ଦୁଧର୍ମ ଓ ଦର୍ଶନ 'ଜାତିପ୍ରଥା'କୁ ମୌଳିକ, ସ୍ୱାଭାବିକ ଓ ଅନିବାର୍ଯ୍ୟ ବ୍ୟବସ୍ଥା ଭାବରେ ଗ୍ରହଣ କରେ; କିନ୍ତୁ ଆମ୍ବେଦକରଙ୍କ ମତରେ ଏହା ଏକ ଅମାନବିକ ବ୍ୟବସ୍ଥା ଯାହା ଏକ ଦିଗରେ ସଂଗଠନର ମନୋଭାବକୁ ହତ୍ୟାକରି ସମାଜକୁ ଦୁର୍ବଳ ଓ ନିମ୍ନମୁଖୀ କରେ ଏବଂ ଅନ୍ୟ ଦିଗରେ ମଣିଷକୁ ନିଷ୍ପ୍ରାଣ, ଅଥର୍ବ ଓ ପଙ୍ଗୁ କରିଦିଏ । ଏହି ବ୍ୟବସ୍ଥାଦ୍ୱାରା ମଣିଷ ଶହଶହ ବର୍ଷ ଧରି ଅସ୍ପୃଶ୍ୟମାନଙ୍କୁ ଶିକ୍ଷା, ସମ୍ପତ୍ତି ଓ ଆତ୍ମରକ୍ଷାର ଅବଲମ୍ବନରୁ ବଞ୍ଚିତ କରି ଅଥର୍ବ ଓ ପଙ୍ଗୁ କରି ଦିଆଯାଇଛି । ଏହିଭଳି ଅମାନବିକ ସମାଜ ବ୍ୟବସ୍ଥାର ପ୍ରବର୍ତ୍ତକ, ସମର୍ଥକ ଓ ଯେଉଁମାନେ ଏହା ପ୍ରତି ନିସ୍ପୃହ ମନୋଭାବ ପୋଷଣ କରନ୍ତି ଓ ଯେଉଁମାନେ ନିରବରେ ସହ୍ୟ କରନ୍ତି ସେ ସମସ୍ତେ ତାଙ୍କର କଠୋର ସମାଲୋଚନାର ଶରବ୍ୟ ହୋଇଥିଲେ । ଏଣୁ କେବଳ ଯେ ବ୍ରାହ୍ମଣବାଦର ସମାଲୋଚନା କରୁଥିଲେ ତାହା ନୁହେଁ, ଅନେକ, ପ୍ରସଙ୍ଗରେ ବ୍ରିଟିଶ୍ ସରକାରଙ୍କର ନିସ୍ପୃହତାକୁ ଦୋଷାରୋପ କରି ସେ କହୁଥିଲେ, "ଦୀର୍ଘ ଦେଢ଼ଶହ (ଶହେ ପଚାଶ) ବର୍ଷର ଶାସନ ସତ୍ତ୍ୱେ ବ୍ରିଟିଶ୍ ସରକାର ଦଳିତ ସମସ୍ୟା ପ୍ରତି ଟିକେ ହେଲେ ଦୃଷ୍ଟି ଦେଇନାହିଁ । କାରଣ ସାମାଜିକ ପ୍ରତିରୋଧର ଭୟରେ, ମାନବିକ ମୂଲ୍ୟବୋଧକୁ ବଳିଦେଇ ଏଭଳି ଏକ ଉତ୍କଟ ସାମାଜିକ ସମସ୍ୟା ପ୍ରତି ଉଦାସୀନ ରହିଛି ।" ଦାସତ୍ୱକୁ ଭାଗ୍ୟ ବୋଲି ମାନି ନେଇଥିବା ଅସ୍ପୃଶ୍ୟ ସମ୍ପ୍ରଦାୟକୁ ଗାଳିଦେଇ ସେ କହିଥିଲେ, "ପୃଥିବୀର ଆଲୋକ ଦେଖିବା ପୂର୍ବରୁ ତୁମେମାନେ ମରିଗଲ ନାହିଁ କାହିଁକି ? କାହିଁକି ପୃଥିବୀ ଭାର ବଢ଼ାଇବାପାଇଁ ତୁମେମାନେ ଜନ୍ମ ନେଇ ଦୁଃଖ, ଦାରିଦ୍ର୍ୟ ଓ ଦାସତ୍ୱର ଚିତ୍ରକୁ ଆହୁରି କରୁଣ, ଭୟଙ୍କର ଓ କଦର୍ଯ୍ୟ କରିଦେଲ ?......" ଏଣୁ ଯେଉଁମାନେ ମାନବିକ ମୂଲ୍ୟବୋଧର ପରିପନ୍ଥୀ ସେ ସମସ୍ତଙ୍କୁ ତାଙ୍କର ସ୍ପଷ୍ଟଉକ୍ତି ମାଧ୍ୟମରେ ତୀବ୍ର ନିନ୍ଦା କରୁଥିଲେ । ଯେଉଁ ରାଜନୈତିକ ସଂସ୍କାରକମାନେ ନିଜକୁ ସମାଜ ସଂସ୍କାରକ ବୋଲି ଅଭିହିତ କରିବା

ସତ୍ତ୍ୱେ ବାସ୍ତବରେ ସମାଜ ସଂସ୍କାରର ବିରୋଧି ଥିଲେ ସେମାନେ ଆମ୍ବେଦକରଙ୍କର ତୀବ୍ରତମ ସମାଲୋଚନାର ଶିକାର ହୋଇଥିଲେ । ତନ୍ମଧ୍ୟରୁ 'ଗାନ୍ଧୀ ଓ କଂଗ୍ରେସ' ଅନ୍ୟତମ । "ଅସ୍ପୃଶ୍ୟମାନଙ୍କପାଇଁ ଗାନ୍ଧୀ ଓ କଂଗ୍ରେସ କ'ଣ କରିଛନ୍ତି ?" "What Gandhi and Congress have done to the Untouchables" ? ଏବଂ "ଗାନ୍ଧୀ ଜିନ୍ନା ଓ ରାଣାଡେ" ଏହି ଦୁଇଟି ପୁସ୍ତକ ଓ ଅନେକ ପ୍ରବନ୍ଧ ଓ ଭାଷଣ ମାଧ୍ୟମରେ ରାଜନୈତିକ ସଂସ୍କାରକମାନଙ୍କର ଛଳନାର ମୁଖା ଖୋଲିବାକୁ ସେ ପ୍ରୟାସ କରିଥିଲେ ।

୧୯୧୬ ରେ ୨୬ ବର୍ଷୀୟ ବିଦ୍ୟାର୍ଥୀ ଯୁବକ ଆମ୍ବେଦକର, କଲମ୍ବିଆ ବିଶ୍ୱବିଦ୍ୟାଳୟରେ ସମାଜଶାସ୍ତ୍ରୀୟ ଗବେଷଣା କରୁଥିବା ସମୟରେ "ଭାରତରେ ଜାତିପ୍ରଥା" ଶୀର୍ଷକ ପ୍ରବନ୍ଧ ରଚନା କରିଥିଲେ । ମୌଳିକ ଓ ଅକାଟ୍ୟ ପ୍ରତିପାଦନ ମାଧ୍ୟମରେ ଜାତିପ୍ରଥାର ଉତ୍ପତ୍ତି ସମ୍ବନ୍ଧରେ ସେ ତର୍କସମ୍ମତ ବ୍ୟାଖ୍ୟା ପ୍ରଦାନ କରିଥିଲେ । ଭାରତକୁ ଫେରିବା ପରେ 'ମୂକନାୟକ' ନାମକ ଏକ ପତ୍ରିକା ମାଧ୍ୟମରେ ଅସ୍ପୃଶ୍ୟତା ଭଳି ଉତ୍କଟ ସମସ୍ୟା ସମ୍ବନ୍ଧରେ ଜନ ସଚେତନତା ସୃଷ୍ଟି କଲେ ଏବଂ ଅସ୍ପୃଶ୍ୟମାନଙ୍କ ମଧ୍ୟରେ ଆତ୍ମସମ୍ମାନ ବୋଧ ଜାଗରଣ କରାଇବାପାଇଁ ଚେଷ୍ଟା କଲେ । "ବହିଷ୍କୃତ ହିତକାରଣୀ ସଭା" ନାମକ ଏକ ଦଳିତ ସଂଗଠନ ସ୍ଥାପନ କରି ଅସ୍ପୃଶ୍ୟମାନଙ୍କ ମଧ୍ୟରେ ଶିକ୍ଷା ଓ ସଂସ୍କୃତିର ପ୍ରସାରପାଇଁ ବିଭିନ୍ନ କାର୍ଯ୍ୟକ୍ରମ ଆରମ୍ଭ କଲେ । ସେମାନଙ୍କପାଇଁ ଛାତ୍ରାବାସ, ପୁସ୍ତକାଳୟ, ଶିକ୍ଷାକେନ୍ଦ୍ର (Study Circle) ଆଦି ପ୍ରତିଷ୍ଠା କରିବା ସହିତ ଶିଳ୍ପ ଓ କୃଷି ସମ୍ବନ୍ଧୀୟ ଧନ୍ଦାମୂଳକ ତାଲିମ ଦେବା ଓ ସେମାନଙ୍କର ଦୁଃଖ ଦୁର୍ଦ୍ଦଶା, ଆପତ୍ତି ଅଭିଯୋଗକୁ ସରକାରଙ୍କ ନିକଟରେ ଉପସ୍ଥାପନ କରିବା ଏହି ସଭାର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ବିଭିନ୍ନ ସ୍ଥାନରେ ଅସ୍ପୃଶ୍ୟମାନଙ୍କୁ ଉଦ୍‌ବୋଧନ ଦେଇ ସେ କହୁଥିଲେ 'ଆତ୍ମସମ୍ମାନବୋଧ' ଓ 'ଆତ୍ମସାହାଯ୍ୟ' ଦ୍ୱାରା ନିଜ ଜୀବନର ମାନଦଣ୍ଡକୁ ଉନ୍ନତ କରିବାକୁ ହେବ । ତାଙ୍କର ଅଗ୍ନିବର୍ଷୀ ଭାଷଣ ମାଧ୍ୟମରେ ସମଗ୍ର ଅସ୍ପୃଶ୍ୟ ସମ୍ପ୍ରଦାୟକୁ ଆହ୍ୱାନ ଦେଇ ଡକ୍ଟର ଆମ୍ବେଦକର କହୁଥିଲେ, "ଶିକ୍ଷିତ ହୁଅ ! ବିଦ୍ରୋହ କର ! ସଂଗଠିତ ହୁଅ !" (Educate, Agitate & Organise) । ଅନ୍ୟାୟ ଓ ଦାସତ୍ୱ ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ସେ ଯେ କେବଳ ବକ୍ତବ୍ୟ ଦେଉଥିଲେ ତାହା ନୁହେଁ । କେତେଗୁଡ଼ିଏ ବିଦ୍ରୋହାତ୍ମକ କାର୍ଯ୍ୟକ୍ରମ ଆରମ୍ଭ କରିଥିଲେ । ସେଗୁଡ଼ିକ ମଧ୍ୟରେ ଜଳ ଉପରେ ଅଧିକାର ସାବ୍ୟସ୍ତପାଇଁ "ମହଦ ସତ୍ୟାଗ୍ରହ", କଲାରାମ ମନ୍ଦିର ପ୍ରବେଶ ଆନ୍ଦୋଳନ", "ମନୁସ୍ମୃତି ପ୍ରଜ୍ଜ୍ୱଳନ" ଆଦି ଉଲ୍ଲେଖଯୋଗ୍ୟ । ଏହି ସମୟରେ ସବର୍ଣ୍ଣ ହିନ୍ଦୁମାନଙ୍କର ପ୍ରବଳ ପ୍ରତିରୋଧ ଓ ହିଂସାତ୍ମକ ଆକ୍ରମଣ ସତ୍ତ୍ୱେ ତାଙ୍କର ହଜାର ହଜାର ସମର୍ଥକଙ୍କୁ ଶାନ୍ତିପୂର୍ଣ୍ଣ ଆନ୍ଦୋଳନରେ ନିୟୋଜିତ କରିପାରଥିଲେ ।

ଡକ୍ଟର ଆମ୍ବେଦକରଙ୍କର ଦୂରଦୃଷ୍ଟି ସମ୍ପନ୍ନ ବାସ୍ତବ ବିଚାର ଧାରାନୁଯାୟୀ ଦଳିତ ଶ୍ରେଣୀ ନିଜ ହାତରେ ରାଜନେତିକ କ୍ଷମତା ନପାଇବା ଯାଏ ସେମାନଙ୍କର ଅବସ୍ଥାର ଉନ୍ନତି ହୋଇପାରିବ ନାହିଁ । ଏଣୁ ଦଳିତମାନଙ୍କୁ ରାଜନୈତିକ କ୍ଷମତା ପ୍ରଦାନ କରିବାପାଇଁ ବ୍ରିଟିସ୍ ସରକାରଙ୍କ ନିକଟରେ ବାରମ୍ବାର ଦାବୀପତ୍ର ଉପସ୍ଥାପନ କରିଥିଲେ । 'ମଣ୍ଟେଗୁ-ଚେମ୍‌ସଫୋର୍ଡ଼' ଶାସନ ସଂସ୍କାର କାର୍ଯ୍ୟକ୍ରମରେ ଗଠିତ ସାଉଥ୍ ବର୍ଗ କମିଟି ସମ୍ମୁଖରେ ମତବ୍ୟକ୍ତ କରି ଡକ୍ଟର ଆମ୍ବେଦକର କହିଥିଲେ, "ନିଜେନିଜକୁ ଶାସନ କରିବା ଜଣେ ବ୍ରାହ୍ମଣର ଯେପରି ଜନ୍ମଗତ ଅଧିକାର, ଜଣେ ଅସ୍ପୃଶ୍ୟର ମଧ୍ୟ ସେହିପରି ଜନ୍ମଗତ ଅଧିକାର ।" ପରବର୍ତ୍ତୀ ସମୟରେ ଷ୍ଟାଚ୍ୟୁଟୋରୀ କମିଶନ୍ ନିକଟରେ ଦଳିତ ଶ୍ରେଣୀର ସାମାଜିକ ରାଜନୈତିକ, ପ୍ରଶାସନିକ, ଅର୍ଥନୈତିକ ଓ ଶିକ୍ଷା ସମ୍ବନ୍ଧୀୟ ସମସ୍ୟା ବିଷୟରେ ଏକ ବିସ୍ତୃତ ବିବରଣୀ ଉପସ୍ଥାପନ କରିଥିଲେ ଏବଂ ଜନସଂଖ୍ୟା ଅନୁପାତରେ ସେମାନଙ୍କୁ ଯଥେଷ୍ଟ ରାଜନୈତିକ କ୍ଷମତା ପ୍ରଦାନପାଇଁ ଦାବୀ କରିଥିଲେ । ପ୍ରଥମ ଗୋଲ୍ ଟେବୁଲ୍ ବୈଠକରେ ଯୋଗଦେଇ ଆମ୍ବେଦକର ଯେଉଁ ବକ୍ତବ୍ୟ ପ୍ରଦାନ କରିଥିଲେ, ଏହାର ମର୍ମ ହେଉଛି, ଦଳିତ ଶ୍ରେଣୀ ହିନ୍ଦୁମାନଙ୍କର ଅନ୍ତର୍ଭୁକ୍ତ ବୋଲି କୁହାଯାଉଥିଲେ ସୁଦ୍ଧା ସେମାନଙ୍କର ହିନ୍ଦୁମାନଙ୍କ ସହିତ କୌଣସି ସମ୍ପର୍କ ନାହିଁ । ସେମାନେ ଅସ୍ପୃଶ୍ୟ ଓ ଅଜାତି ଏବଂ ସେମାନଙ୍କର ସ୍ଥିତି ସ୍ୱତନ୍ତ୍ର । ଏଣୁ ସେମାନଙ୍କ ଭବିଷ୍ୟତକୁ ଉଚ୍ଚ ବର୍ଣ୍ଣର ଶାସକମାନଙ୍କ ଦୟା ଉପରେ ଛାଡ଼ି ନଦେଇ ସ୍ୱତନ୍ତ୍ର ବ୍ୟବସ୍ଥା କରାଯାଉ ଏବଂ ଆଇନସଭା ଓ ପ୍ରଶାସନରେ ପ୍ରତିନିଧିତ୍ୱ ଦେଇ ରାଜନୈତିକ କ୍ଷମତା ପ୍ରଦାନ କରାଯାଉ । ଦଳିତ ସଂପ୍ରଦାୟକୁ ସଂଖ୍ୟାଲଘୁ ସଂପ୍ରଦାୟର ମାନ୍ୟତା ଦେବାପାଇଁ ସେ ଦାବୀ ଜଣାଇଥିଲେ ।

ଦ୍ୱିତୀୟ ଗୋଲ୍‌ଟେବୁଲ୍ ବୈଠକରେ ଆମ୍ବେଦକର ଓ ଗାନ୍ଧୀଙ୍କର ମତଭେଦ ଓ ବିବାଦ କେବଳ ଭାରତରେ ନୁହେଁ, ବିଦେଶରେ ମଧ୍ୟ ବିଭିନ୍ନ ପ୍ରତିକ୍ରିୟାକୁ ରୂପଦେଲା । କଂଗ୍ରେସ କାର୍ଯ୍ୟକାରିଣୀ ସଭାରେ ନିଆଯାଇଥିବା ନିଷ୍ପତ୍ତିକୁ ଗୋଲ୍ ଟେବୁଲ୍ ବୈଠକରେ ଗାନ୍ଧୀ ଉପସ୍ଥାପନ କଲେ । ଏଥିରେ ସଂଯୁକ୍ତ ନିର୍ବାଚନ ମଣ୍ଡଳୀର ବ୍ୟବସ୍ଥା ସହିତ ଶିଖ୍ ଓ ମୁସ୍‌ଲିମ୍‌ମାନଙ୍କପାଇଁ ସଂରକ୍ଷଣ ରଖାଯାଇଥିଲା; କିନ୍ତୁ ଦଳିତ ଶ୍ରେଣୀଙ୍କୁ କେବଳ ମତଦାତା ଭାବରେ ରଖାଯାଇଥିଲା । ଗାନ୍ଧୀ କହିଲେ, '...ଦଳିତମାନଙ୍କୁ କେବଳ ମତଦାନର ଅଧିକାର ଦେଲେ ସେମାନେ ସନ୍ତୁଷ୍ଟ ହୋଇଯିବେ । ଅନ୍ୟ କୌଣସି ବ୍ୟବସ୍ଥାର ଆବଶ୍ୟକତା ନାହିଁ ।' ଆମ୍ବେଦକରଙ୍କର ଯୁକ୍ତି ଥିଲା ଦଳିତ ସମ୍ପ୍ରଦାୟପାଇଁ ସାମ୍ବିଧାନିକ ସୁରକ୍ଷା (Constitutional Safeguards) ଏକାନ୍ତ ଜରୁରୀ ଥିବାରୁ ସେମାନଙ୍କୁ ସଂଖ୍ୟାଲଘୁ ସଂପ୍ରଦାୟ ଭାବରେ ସ୍ୱୀକୃତି ଦେଇ 'ଅଲଗା ନିର୍ବାଚନ ମଣ୍ଡଳୀ'ର ବ୍ୟବସ୍ଥା ଯୋଗାଇଦେବା

ଆବଶ୍ୟକ । ସେହି ବୈଠକର ସଂଖ୍ୟାଲଘୁ-ସବ୍‌-କମିଟୀରେ ଉଭୟ ନେତାଙ୍କ ମଧ୍ୟରେ ମତପାର୍ଥକ୍ୟ ଅବ୍ୟାହତ ରହିଲା ଓ ବିବାଦ ତୀବ୍ରତର ହେଲା । ଗାନ୍ଧୀଙ୍କର ଉକ୍ତିଥିଲା, 'ଦଳିତମାନଙ୍କୁ ସାମାଜିକ ଓ ଧର୍ମୀୟ ନିର୍ଯ୍ୟାତନାରୁ ରକ୍ଷା କରିବା ଆବଶ୍ୟକ । ଆଇନ ସଭାକୁ ପ୍ରତିନିଧି ହୋଇଯିବାଟା ସେମାନଙ୍କ ପକ୍ଷରେ ଆବଶ୍ୟକ ନୁହେଁ ।' କିନ୍ତୁ ବୈଷମ୍ୟ ଉପରେ ଆଧାରିତ ଭାରତୀୟ ସମାଜରେ ସମସ୍ତ କ୍ଷମତା କେବଳ ଉଚ୍ଚ ବର୍ଣ୍ଣର ଲୋକଙ୍କ ହାତରେ ଠୁଳ ହୋଇ ରହିଲେ, ଦଳିତ ଶ୍ରେଣୀର ଉନ୍ନତି ଅସମ୍ଭବ ବୋଲି ଆମ୍ବେଦକରଙ୍କର ହୃଦବୋଧ ହୋଇଥିଲା । ଏଣୁ ସେ 'ଅଲଗା ନିର୍ବାଚନ ମଣ୍ଡଳୀ'ର ଦାବୀରେ ଅଟଳ ରହିଲେ । ଲଣ୍ଡନରେ ଥିବାବେଳେ, ଗୋଲ୍ ଟେବୁଲ୍ ବୈଠକ ବାହାରେ ଆମ୍ବେଦକର ବ୍ରିଟିଶ ପାର୍ଲିଆମେଣ୍ଟର 'ହାଉସ୍ ଅଫ୍ କମନ୍‌ସ'ରେ ତାଙ୍କ ଦୃଷ୍ଟିଭଙ୍ଗୀ ଓ ଦାବୀକୁ ଉପସ୍ଥାପିତ କଲେ । ସମସ୍ତ ସଦସ୍ୟ ତାଙ୍କର ଚିନ୍ତାଧାରା, ସ୍ପଷ୍ଟ ବକ୍ତବ୍ୟ, ତଥ୍ୟପୂର୍ଣ୍ଣ ଉପସ୍ଥାପନା ଓ ଦାୟିତ୍ୱସମ୍ପନ୍ନ ବ୍ୟକ୍ତିତ୍ୱରେ ଚମତ୍କୃତ ହେଲେ । ସତ୍ୟ ଓ ବାସ୍ତବତା ଉପରେ ଆଧାରିତ ତାଙ୍କର ଅକାଟ୍ୟ ଯୁକ୍ତିରେ ପ୍ରଭାବିତ ହୋଇ ସଂଖ୍ୟାଲଘୁ-ସବ-କମିଟୀ 'ଅଲଗା ନିର୍ବାଚନ ମଣ୍ଡଳୀ'ର ଦାବୀକୁ ଗ୍ରହଣ କଲା ।

୧୯୩୨ ମସିହା ଅଗଷ୍ଟ ୧୭ ତାରିଖରେ ବ୍ରିଟିଶ୍ ସରକାରଙ୍କ 'ସାମ୍ପ୍ରଦାୟିକ ପୁରସ୍କାର' (Communal Award) ଘୋଷଣା କରଗଲା । ଦଳିତ ସଂପ୍ରଦାୟକୁ 'ଅଲଗା ନିର୍ବାଚନ ମଣ୍ଡଳୀ' ସହିତ ଭୋଟ୍ ଦାନର ଅଧିକାର ଏବଂ ସାଧାରଣ ନିର୍ବାଚନ ମଣ୍ଡଳୀରେ ଲଢ଼ିବାପାଇଁ ମଧ୍ୟ ଅଧିକାର ଦିଆଗଲା । କିନ୍ତୁ ଏହା ବିରୁଦ୍ଧରେ ଆମରଣ ଅନଶନ ଆରମ୍ଭ କରି ଗାନ୍ଧୀ ସାରା ଦେଶରେ ଚାଞ୍ଚଲ୍ୟ ସୃଷ୍ଟି କରିଦେଲେ । ପ୍ରଥମେ ଆମ୍ବେଦକର ନିଜ ନୀତିରେ ଅଟଳ ରହି ଗାନ୍ଧୀଙ୍କୁ ତୀବ୍ର ସମାଲୋଚନା କଲେ । କିନ୍ତୁ ମାନବିକତା ଦୃଷ୍ଟିରୁ ଗାନ୍ଧୀଙ୍କର ଜୀବନ ରକ୍ଷାପାଇଁ ତଥା ଜାତିଗତ ହିଂସା ଓ ରକ୍ତପାତକୁ ଏଡାଇବା ପାଇଁ ଆମ୍ବେଦକର ବାଧ୍ୟହୋଇ ଗାନ୍ଧୀଙ୍କ ସହିତ ଏକ ଚୁକ୍ତି ସ୍ୱାକ୍ଷର କଲେ । ଏହି ପୁନାଚୁକ୍ତିଦ୍ୱାରା 'ଅଲଗା ନିର୍ବାଚନ ମଣ୍ଡଳୀ' ପରିବର୍ତ୍ତେ ସଂଯୁକ୍ତ ନିର୍ବାଚନ ମଣ୍ଡଳୀରେ ଦଳିତମାନଙ୍କପାଇଁ ସ୍ଥାନ ସଂରକ୍ଷଣର ବ୍ୟବସ୍ଥା ରହିଲା ।

ଭାରତ ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ପଣ୍ଡିତ ନେହେରୁଙ୍କ ଅଧିନାୟକତ୍ୱରେ ମଧ୍ୟବର୍ତ୍ତୀକାଳୀନ ସରକାର ଗଠନ କରାଯାଇଥିଲା । ଡକ୍ଟର ଆମ୍ବେଦକର କଂଗ୍ରେସର ଘୋର ବିରୋଧି ହୋଇଥିବା ସତ୍ତ୍ୱେ ତାଙ୍କୁ ନେହେରୁଙ୍କ କ୍ୟାବିନେଟ୍‌କୁ ସ୍ୱାଗତ କରାଯାଇଥିଲା । କାରଣ ସେତେବେଳେ ଡକ୍ଟର ଆମ୍ବେଦକରଙ୍କ ଭଳି ଜଣେ ଆଇନଜ୍ଞ,ରାଜନୀତି, ଅର୍ଥନୀତି, ସମାଜଶାସ୍ତ୍ର ଓ ଭାରତର ଐତିହ୍ୟ ଓ ସଂସ୍କୃତିରେ ଜ୍ଞାନ ଥିବା ଜଣେ ନିପୁଣ ବ୍ୟକ୍ତିଙ୍କର

ଆବଶ୍ୟକତା ଥିଲା । ସେ ଭାରତର ପ୍ରଥମ ଆଇନ ମନ୍ତ୍ରୀ ହେଲେ । ଏ ଦିଗରେ ଅବଶ୍ୟ ଗାନ୍ଧୀଙ୍କର ପ୍ରଚ୍ଛନ୍ନ ସହୃଦୟତା ବଳବତ୍ତର ରହିଥିଲା ।

ଡକ୍ଟର ଆମ୍ବେଦକର ଜଣେ ସାଧାରଣ ସଦସ୍ୟ ଭାବରେ 'ସମ୍ବିଧାନ ନିର୍ମାତା ସଭା'ରେ ଯୋଗ ଦେଇଥିଲେ ଓ ପରେ 'ଡ୍ରାଫଟିଙ୍ଗ କମିଟୀର' ଚେୟାରମ୍ୟାନ୍ ଭାବରେ ନିର୍ବାଚିତ ହୋଇଥିଲେ । ତାଙ୍କର ଦୀର୍ଘ ୨ ବର୍ଷ ୧୧ମାସ ଓ ୧୭ ଦିନର ନିରବଚ୍ଛିନ୍ନ ପରିଶ୍ରମ ପରେ ସ୍ୱାଧୀନ ଭାରତର ସମ୍ବିଧାନ ପ୍ରସ୍ତୁତ ହେଲା, ଯାହା କି 'ସ୍ୱାଧୀନତା', 'ସାମ୍ୟ' ଓ 'ଭ୍ରାତୃତ୍ୱ'ର ମୂଳତତ୍ତ୍ୱ ଉପରେ ଆଧାରିତ ହେଲା । ବୈଷମ୍ୟ ବିରୁଦ୍ଧରେ ଦୀର୍ଘ ବର୍ଷ ବର୍ଷର ପ୍ରତିଜ୍ଞାବଦ୍ଧ ସଂଘର୍ଷ ପରେ ଯେଉଁ ଗଣତାନ୍ତ୍ରିକ ରାଷ୍ଟ୍ରର ରୂପକଳ୍ପ ପ୍ରକାଶିତ ହେଲା, ତାହା 'ନ୍ୟାୟ' ଓ 'ସାମ୍ୟ' ଉପରେ ପ୍ରତିଷ୍ଠିତ ହୋଇଥିଲା । ପାର୍ଲିଆମେଣ୍ଟରେ ଉଦ୍‌ବୋଧନ ଦେଇ ଆମ୍ବେଦକର କହିଲେ, "..... On the 25th January 1950, we are going to enter into a life of contradictions. In politics we will have equality & in social and economic life we will have inequiality. In politics we will be recognising the principle of one man one vote and one vote one value. In our social and economic structure, continue to deny the principle of one man one value. How long shall we continue to live this life of contradictions? How long shall we continue to deny equality in our social and economic life? If we continue to deny it for long, we will do so only by putting our political democracy in peril. We must remove this contradiction at the earliest possible moment or else those who suffer from inequality will blow up the structure of political democracy, which this Assembly has so laboriously built up."

ଗାନ୍ଧୀ ଓ ଆମ୍ବେଦକର ପରସ୍ପରର ଶତ୍ରୁ ନଥିଲେ, ଏହା ସତ୍ୟ; କିନ୍ତୁ ଏହା ମଧ୍ୟ ସତ୍ୟ ଯେ ଆମ୍ବେଦକର ଗାନ୍ଧୀଙ୍କୁ ତୀବ୍ର ଭାଷାରେ ସମାଲୋଚନା କରୁଥିଲେ ଏବଂ ବେଳେବେଳେ ଗାନ୍ଧୀ ଆମ୍ବେଦକରଙ୍କ ବିଷୟରେ ଏଭଳି କେତେକ ମନ୍ତବ୍ୟ ପ୍ରକାଶ କରିଥିଲେ, ଯାହ ଆମ୍ବେଦକରଙ୍କୁ ଗଭୀର ଦୁଃଖ ଦେଇଥିଲା ।

ଆମ୍ବେଦକରଙ୍କର ସମାଲୋଚନା ପଛରେ ଅନେକ କାରଣ ଥିଲା । ପ୍ରଥମତଃ ଗାନ୍ଧୀଙ୍କର ମୂଳଲକ୍ଷ୍ୟ ଥିଲା ବ୍ରିଟିଶ୍ ସରକାର ବିରୁଦ୍ଧରେ ଲଢ଼ିବା । ଏଣୁ ଦଳିତ ସମସ୍ୟା

ବିଷୟରେ ସେ ଯଥେଷ୍ଟ ସମୟ ଓ ପରିଶ୍ରମ ବିନିଯୋଗ କରିପାରୁ ନଥିଲେ ଏବଂ ଦଳିତମାନଙ୍କର ସ୍ୱାର୍ଥରକ୍ଷାପାଇଁ ରକ୍ଷଣଶୀଳ ହିନ୍ଦୁମାନଙ୍କୁ ବିମୁଖ କରିବା ଭଳି ପଦକ୍ଷେପ ନେବା ତାଙ୍କପାଇଁ ଅସମ୍ଭବ ଥିଲା । ଅଥଚ ଗାନ୍ଧୀ ପ୍ରତି କଥାରେ ଅସ୍ପୃଶ୍ୟ ପ୍ରଶ୍ନ ଉଠାଇ ଏହା ପ୍ରତିପାଦିତ କରିବାକୁ ଚାହୁଁଥିଲେ ଯେ, ସେ ଅସ୍ପୃଶ୍ୟମାନଙ୍କ ପ୍ରତି ସମ୍ବେଦନଶୀଳ । ରାଜନୈତିକ ସଂସ୍କାରକଙ୍କର ଏହି ଦ୍ୱୈତ ବ୍ୟକ୍ତିତ୍ୱ ଓ ଛଳନା ଆମ୍ବେଦକରଙ୍କପାଇଁ ଅସହ୍ୟ ଥିଲା । କାରଣ ସେ ପୂର୍ଣ୍ଣ ପ୍ରାଣରେ ଦଳିତ ମୁକ୍ତିର ଲକ୍ଷ୍ୟ ନେଇ କାର୍ଯ୍ୟକ୍ରମ ଗ୍ରହଣ କରୁଥିଲେ । ଏଣୁ ଗାନ୍ଧୀଙ୍କୁ ସମାଲୋଚନା କରିବାଟା ଅବଶ୍ୟମ୍ଭାବୀ ହୋଇପଡ଼ିଥିଲା ।

ପ୍ରାୟ ପଚିଶ ବର୍ଷ ଧରି ଗାନ୍ଧୀ ଓ ଆମ୍ବେଦକରଙ୍କ ମଧ୍ୟରେ ଯେଉଁ ବିବାଦ ଲାଗିରହିଥିଲା, ଏହାର ମୂଳରେ ଥିଲା ଉଭୟଙ୍କ ଦୃଷ୍ଟିରେକୋଣର ମୌଳିକ ପାର୍ଥକ୍ୟ । ଯେ କୌଣସି ସବର୍ଣ୍ଣ ହିନ୍ଦୁଠାରୁ ଅଧିକ ରକ୍ଷଣଶୀଳ ଗାନ୍ଧୀ ଜାତିପ୍ରଥା ଓ ବର୍ଣ୍ଣ ବ୍ୟବସ୍ଥାକୁ ସମର୍ଥନ କରୁଥିଲେ ଓ 'ଅସ୍ପୃଶ୍ୟତା'କୁ ପାପ ବୋଲି କହୁଥିଲେ । କିନ୍ତୁ ଅସ୍ପୃଶ୍ୟତାର ନିବାରଣପାଇଁ 'ଜାତିପ୍ରଥା'ର ଉଚ୍ଛେଦ ଏକାନ୍ତ ଜରୁରୀ ବୋଲି ଆମ୍ବେଦକରଙ୍କର ମତଥିଲା ଏବଂ ଅସ୍ପୃଶ୍ୟତା ଓ ଜାତିପ୍ରଥାର ବିନାଶ ସାଧନପାଇଁ ଆନ୍ତର୍ଜାତି ବିବାହ ଏକ ଯଥାର୍ଥ ସମାଧାନର ପଥ ବୋଲି ସେ କହୁଥିଲେ । ଅନ୍ୟ ପକ୍ଷରେ "ସହ-ଭୋଜନ" ଓ 'ଆନ୍ତର୍ଜାତି-ବିବାହ' ଉପରେ କଟକଣା ଓ ନିଷେଧକୁ ଗାନ୍ଧୀ ସମର୍ଥନ କରୁଥିଲେ ।

ଗାନ୍ଧୀ ବର୍ଣ୍ଣ ବ୍ୟବସ୍ଥାର ସମର୍ଥନ କରି ନିଜ ବାପଅଜାଙ୍କ ପେଶାକୁ ଅବଲମ୍ବନ କରିବା ଉଚିତ୍ ବୋଲି କହୁଥିଲେ । ଜାତିଗତ ବୃତ୍ତିକୁ ଅବଲମ୍ବନ କରିବାରେ ବାଧ୍ୟବାଧକତା, ସମାଜରେ ବୈଷମ୍ୟ ଓ ଶୋଷଣକୁ ତ୍ୱରାନ୍ୱିତ କରୁଛି ବୋଲି ଆମ୍ବେଦକରଙ୍କର ମତଥିଲା । ଏଣୁ ସମାଜ ଦୃଷ୍ଟିରେ ଘୃଣ୍ୟ ଓ ନୀଚ ବୃତ୍ତିଗୁଡ଼ିକୁ ତ୍ୟାଗ କରିବାପାଇଁ ସେ ଅସ୍ପୃଶ୍ୟମାନଙ୍କୁ ଆହ୍ୱାନ ଦେଉଥିଲେ । ଗାନ୍ଧୀ ଯେ ତାଙ୍କର ବଂଶଗତ ବୃତ୍ତି (ବ୍ୟବସାୟ) ତ୍ୟାଗ କରି ସାରିଛନ୍ତି ଏ ବିଷୟରେ ମଧ୍ୟ ଆମ୍ବେଦକର ସୂଚାଇ ଥିଲେ । କୌଳିକ ବୃତ୍ତିରେ ସମର୍ଥନ କରି ଗାନ୍ଧୀ କହୁଥିଲେ, "ବୃତ୍ତିଗତ ଶ୍ରେଣୀ ବିଭାଗ ସମାଜକୁ ପଛୁଆ କରିବା ପରିବର୍ତ୍ତେ ଅର୍ଥନୈତିକ କ୍ଷେତ୍ରରେ ପ୍ରତିଯୋଗିତା ମୂଳକ କରି ଠିଆ କରିବ ଓ ଆଧୁନିକ ଯୁଗରେ ନିଜର ସ୍ଥାନ ବଜାୟ ରଖିବା ଲାଗି ଏକ ଅବଲମ୍ବନ ହେବ ।" ଏହି ଚିନ୍ତାଧାରା ଇଚ୍ଛା ପ୍ରସୂତ ଭାବନା ବିଳାସ ବ୍ୟତୀତ ଅନ୍ୟ କିଛି ନୁହେଁ । ଅନ୍ୟ ପକ୍ଷରେ ନୀଚ ଓ ଅପରିଷ୍କାର ବୃତ୍ତିଗୁଡ଼ିକୁ ପରିତ୍ୟାଗ କରିବାର ଆହ୍ୱାନ ସ୍ୱାଭିମାନ ଓ ଆତ୍ମସମ୍ମାନ ସହିତ ଜଡ଼ିତ ଥିବାରୁ ଆମ୍ବେଦକରଙ୍କର ଦୃଷ୍ଟଭଙ୍ଗୀ ନ୍ୟାୟୋଚିତ ବୋଧହୁଏ ।

ମାଲବାରର 'ଗୁରୁବାୟୁର' ମନ୍ଦିରରେ ହରିଜନମାନଙ୍କୁ ପ୍ରବେଶ ଅଧିକାର ନମିଳିଲେ ଗାନ୍ଧୀ ଆମରଣ ଅନଶନ କରିବେ ବୋଲି ଘୋଷଣା କରି ମଧ୍ୟ ଏଥିରୁ କ୍ଷାନ୍ତ ରହିବା' ଓ 'ଦଳିତ ଶ୍ରେଣୀପାଇଁ ଅଲଗା ନିର୍ବାଚନ ମଣ୍ଡଳୀ' ବ୍ୟବସ୍ଥା ବିରୁଦ୍ଧରେ ଅନଶନ କରି ଏହି ସୁବିଧାରୁ ବଞ୍ଚିତ କରିବା ଏହି ଉଭୟ ଉଦାହରଣ ଗାନ୍ଧୀଙ୍କ 'ହରିଜନ ପ୍ରେମୀ' ଆମ୍ବେଦକର ଅନୁଭବ କରିଥିଲେ ତାହା ନୁହେଁ ସମଗ୍ର ଦଳିତ ଶ୍ରେଣୀ ଭିତରେ ଗାନ୍ଧୀଙ୍କପାଇଁ ଅବିଶ୍ୱାସ ସୃଷ୍ଟି କରିଛି ।

ଦ୍ୱିତୀୟ ଗୋଲ୍ ଟେବୁଲ୍ ବୈଠକରେ ଗାନ୍ଧୀ ଯେତେବେଳେ ଶିଖ୍ ଓ ମୁସ୍‌ଲିମ୍‌ମାନଙ୍କପାଇଁ ସଂରକ୍ଷଣର ପ୍ରସ୍ତାବ ରଖିଲେ ଓ କେବଳ ମତଦାନର ଅଧିକାର ଦେଲେ ଦଳିତ ସଂପ୍ରଦାୟ ସନ୍ତୁଷ୍ଟ ରହିବେ ବୋଲି କହିଲେ, ସେ କେତେ ପରିମାଣରେ ଦଳିତ ସମସ୍ୟା ପ୍ରତି ସମ୍ବେଦନଶୀଳ ତାହା ସ୍ପଷ୍ଟ ହୋଇଗଲା । ଦ୍ୱିତୀୟ ଗୋଲ୍ ଟେବୁଲ୍ ବୈଠକରୁ ଫେରିବା ପରେ ବମ୍ବେର ଏକ ସାଧାରଣ ସଭାରେ ୧୯୩୧ ଡିସେମ୍ବର ୨୮ ତାରିଖରେ ଗାନ୍ଧୀ ଘୋଷଣା କଲେ, "ଅସ୍ପୃଶ୍ୟମାନଙ୍କୁ କୌଣସି ସଂରକ୍ଷଣ ଦେବାପାଇଁ ସେ ପ୍ରସ୍ତୁତ ନୁହନ୍ତି, କାରଣ ଏହା ଅସ୍ପୃଶ୍ୟତାକୁ ତ୍ୱରାନ୍ୱିତ କରିବ ।" କିନ୍ତୁ ସଂରକ୍ଷଣ ବ୍ୟତିରେକେ ଦଳିତ ସଂପ୍ରଦାୟକୁ କୌଣସି ପ୍ରକାରର ପ୍ରତିନିଧିତ୍ୱ ମିଳିଥାଆନ୍ତା କି ନାହିଁ, ଏହା ମଧ୍ୟ ସନ୍ଦେହର ବିଷୟ ।

ସାର୍ ସାମୁଏଲ୍ ହୋଆର୍ ଯେ କି ସେକ୍ରେଟରୀ ଅଫ୍ ଷ୍ଟେଟ୍ ଫର୍ ଇଣ୍ଡିଆ ଥିଲେ, ତାଙ୍କୁ ଏକ ଚିଠି ଲେଖି ଗାନ୍ଧୀ କହିଥିଲେ, "ଦଳିତ ଶ୍ରେଣୀର ସମସ୍ୟା ମୁଖ୍ୟତଃ ନୈତିକ ଓ ଧାର୍ମିକ ସମସ୍ୟା ଯାହା କି ସବର୍ଣ୍ଣମାନଙ୍କର ତପସ୍ୟା ଓ ଅନୁତାପଦ୍ୱାରା ଦୂର ହୋଇ ପାରିବ । ଯେହେତୁ 'ଅଲଗା ନିର୍ବାଚନ ମଣ୍ଡଳୀ'ର ବ୍ୟବସ୍ଥା ଏକ ତପସ୍ୟା ନୁହେଁ ଏହା ସମସ୍ୟାର ବାସ୍ତବ ସମାଧାନ ନୁହେଁ..." ସବର୍ଣ୍ଣମାନେ ତପସ୍ୟା ଓ ଅନୁତାପ କରିବା ଯାଏ ଦଳିତମାନେ ଅବଦମିତ ହୋଇ ନିର୍ଯ୍ୟାତନା ଭୋଗି ଚାଲନ୍ତୁ'- ଏ ଯୁକ୍ତି କେତେଦୂର ଯଥାର୍ଥ ବୁଝିହୁଏ ନାହିଁ । ଅନ୍ୟ ପକ୍ଷରେ ଆମ୍ବେଦକର ଅସ୍ପୃଶ୍ୟମାନଙ୍କୁ କହୁଥିଲେ ପରିସ୍ଥିତିକୁ ପରିବର୍ତ୍ତନ କରିବା ସେମାନଙ୍କ ହାତରେ ଅଛି । ଏଣୁ ସେମାନେ କୌଣସି ସମୟ, ଆକସ୍ମିକତା ବା ବିଶେଷ ଘଟଣାପାଇଁ ଅପେକ୍ଷା ନରଖି ନିଜର ଦୁର୍ଦ୍ଦଶା ଦୂରୀକରଣପାଇଁ ପ୍ରଚେଷ୍ଟା କରିବା ଆବଶ୍ୟକ ।

କଂଗ୍ରେସର ପ୍ରମୁଖ ଆନ୍ଦୋଳନଗୁଡ଼ିକରେ ଯୋଗଦାନ କରିବାପାଇଁ ଗାନ୍ଧୀ ବାରମ୍ବାର ଦଳିତମାନଙ୍କୁ ଆହ୍ୱାନ ଦେଉଥିଲେ । କିନ୍ତୁ ସେ ନିଜେ ହିଁ ଅନୁଭବ କରିଥିଲେ ହରିଜନ କର୍ମୀମାନଙ୍କୁ କେଉଁଭଳି ବୈଷମ୍ୟପୂର୍ଣ୍ଣ ବ୍ୟବହାର ପ୍ରଦର୍ଶନ କରାଯାଉଛି । ଦାଣ୍ଡିଯାତ୍ରା

ସମୟରେ ଗଜେରୀଠାରେ ଏକ ସଭାରେ ହରିଜନମାନେ କଂଗ୍ରେସ କର୍ମୀମାନଙ୍କଠାରୁ ଦୂରରେ ବସିଥିବାଟା ସେ ନିଜେ ହିଁ ପ୍ରତ୍ୟକ୍ଷ କରିଥିଲେ ।

କଂଗ୍ରେସ ଏକ ସବର୍ଣ୍ଣ ରାଜନୈତିକ ଦଳ ଥିଲା । ଏଣୁ ବ୍ରିଟିଶ୍ ସରକାର ଯଦି କଂଗ୍ରେସ ହାତରେ କ୍ଷମତା ହସ୍ତାନ୍ତର କରି ଭାରତରୁ ବିଦାୟ ନିଅନ୍ତି, ତେବେ ରକ୍ଷଣଶୀଳ ହିନ୍ଦୁ ଶାସନରେ ଦଳିତ ଦାସତ୍ୱ ଅଧିକ ଦୃଢ଼ୀଭୁତ ହେବ ବୋଲି ଆମ୍ବେଦକର ଅନୁଭବ କରିଥିଲେ । ଯେଉଁଠି ଦଳିତମାନଙ୍କର ନିଜକୁ ସୁରକ୍ଷା ଦେବାର ଅଧିକାର ନଥିଲା, ମନ୍ଦିର, ଜଳ ଓ ରାସ୍ତା ଉପରେ ଅଧିକାର ନଥିଲା, ସେଠି ଯେ ସେମାନଙ୍କୁ ରାଜନୈତିକ କ୍ଷମତା ବିନା ଦଳିତ ମୁକ୍ତି ଅସମ୍ଭବ ବୋଲି ବୋଧ ହେଉଥିଲା । ଏଣୁ କଂଗ୍ରେସ ଯେଉଁ ସ୍ୱାଧୀନତା ଆଣିବ ତାହା ଦଳିତମାନଙ୍କପାଇଁ କୌଣସି ଅର୍ଥ ରଖେ ନାହିଁ ବୋଲି ଅନୁଭବ କରୁଥିବାରୁ ଆମ୍ବେଦକର କଂଗ୍ରେସ ଆନ୍ଦୋଳନକୁ ବିରୋଧ କରୁଥିଲେ ।

ଗାନ୍ଧୀଙ୍କ ପଛରେ ରହିଥିଲା ଶିକ୍ଷିତ, ସ୍ୱଚ୍ଛଳ, ସଚେତନ ତଥା ପ୍ରଭାବଶାଳୀ ହିନ୍ଦୁ ସମାଜ ଏବଂ ସବର୍ଣ୍ଣ 'ସମ୍ବାଦ ସଂସ୍ଥା' । କିନ୍ତୁ ଆମ୍ବେଦକର ଲଢୁଥିଲେ ଦଳିତ ନିଷ୍ପେସିତ ଓ ଅଚେତନ ଅସ୍ପୃଶ୍ୟମାନଙ୍କପାଇଁ । ତାଙ୍କୁ ସମର୍ଥନ କରିବା ଭଳି ସମ୍ବାଦ ସଂସ୍ଥା ମଧ୍ୟ ନଥିଲା, ଯେହେତୁ ସେ ସ୍ୱୟଂ ଥିଲେ ଜଣେ ଅସ୍ପୃଶ୍ୟ । ଏଣୁ ଗାନ୍ଧୀଙ୍କୁ ହରିଜନମାନଙ୍କର ତ୍ରାଣକର୍ତ୍ତା ରୂପେ ପ୍ରବଳ ପ୍ରଚାର କରାଯିବା ସମୟରେ, ଆମ୍ବେଦକରଙ୍କର ମହତ୍ତ୍ୱପୂର୍ଣ୍ଣ ଅବଦାନ ଲୋକ ଲୋଚନରେ ଅନ୍ତରାଳରେ ରହିଗଲା । ସାମାଜିକ କ୍ରାନ୍ତି ପାଇଁ ଆମ୍ବେଦକର ଯେଉଁଭଳି ଭାବରେ ପ୍ରତିଜ୍ଞା ବଦ୍ଧ ଥିଲେ ଓ ଯେତିକି କଷ୍ଟ ସହ୍ୟ କରିଥିଲେ, ସେହି ପରିମାଣରେ ଯଦି ଜଣେ ସବର୍ଣ୍ଣ ବ୍ୟକ୍ତି କରିଥାଆନ୍ତେ, ତାଙ୍କୁ ଅଜସ୍ର ପ୍ରଶଂସା, ସମ୍ମାନ ଓ ପୂଜା ମିଳିଥାଆନ୍ତା; କିନ୍ତୁ ଆମ୍ବେଦକରଙ୍କୁ ମିଳିଲା ଅଜସ୍ର ନିନ୍ଦା, ଅପବାଦ, ସମାଲୋଚନା ଓ ଆଜିଯାଏ ତାଙ୍କ କାର୍ଯ୍ୟର ଯଥାଯଥ ମୂଲ୍ୟାଙ୍କନ କରାଯାଇପାରିଲା ନାହିଁ ।

ସୌଜନ୍ୟ : ସୁପ୍ରିୟା ମଲ୍ଲିକ, *ପ୍ରଗତିଶୀଳ ପତ୍ରିକା ଅଧିକାର*, ୧୯୯୯, ଭାଗ-*୬*, ସଂଖ୍ୟା-*୬* ।

# ବାବାସାହେବ, ବାପୁ ଓ ଜାତିପ୍ରଥାର ଅବସାନ

ଭଗବାନ ପ୍ରକାଶ

୧୮୯୧ ମସହା ଏପ୍ରିଲ ୧୪ ତାରିଖ ଦିନ ମଧ୍ୟପ୍ରଦେଶର ମାହୁ କାଣ୍ଟନମେଣ୍ଟରେ ରାମଜୀ ମାଲୋଜୀ ସକପାଲ ଓ ଭୀମାବାଇଙ୍କର ଚତୁର୍ଦ୍ଦଶ ଓ ଶେଷ ସନ୍ତାନ ରୂପେ ଜନ୍ମଗ୍ରହଣ କରିଥିଲେ ଭିମରାଓ ଆମ୍ବେଦକର । ଏହାର ୨୨ ବର୍ଷ ପୂର୍ବରୁ ୧୮୬୯ ମସିହାରେ ମହାତ୍ମାଗାନ୍ଧିଙ୍କ ଜନ୍ମ । ବାବାସାହେବ ଆମ୍ବେଦକରଙ୍କ ଦେହାନ୍ତ ୬ ଡିସେମ୍ବର, ୧୯୫୬ ମସିହାରେ । ଏହାର ଆଠ ବର୍ଷ ପୂର୍ବରୁ ବାପୁ ସହିଦ ହୋଇଥିଲେ ନିଜର ବିଚାର, ବିଶ୍ୱାସ, ଆଦର୍ଶପାଇଁ ।

ମହର୍ଷି ବାଲ୍ମିକୀ ଓ କବୀରଙ୍କ ପରେ ବାବାସାହେବ ଥିଲେ ଦଳିତ ବର୍ଗରେ ଜନ୍ମିତ ସର୍ବଶ୍ରେଷ୍ଠ ଭାରତୀୟ, ଉଚ୍ଚକୋଟିର ବିଦ୍ୱାନ, ବାଗ୍ମୀ, ମହାନ୍ ସଂଗ୍ରାମୀ ଓ ସମାଜ ସଂସ୍କାରକ । ତାଙ୍କୁ ଦ୍ୱିତୀୟ ବୋଧିସତ୍ତ୍ୱ ବୋଲି କହାଯାଇଥିଲା । କଲମ୍ବିଆ ବିଶ୍ୱବିଦ୍ୟାଳୟ, ଲଣ୍ଡନ ସ୍କୁଲ୍ ଅଫ୍ ଇକୋନୋମିକ୍ସ ଭଳି ବିଶ୍ୱ ପ୍ରସିଦ୍ଧ ଶିକ୍ଷାନୁଷ୍ଠାନମାନଙ୍କରୁ ତିନିତିନିଟି ବିଷୟରେ ବିଦ୍ୟାବାରିଧି ବା ଡକ୍ଟରେଟ୍ କରିଥିବା ବାବାସାହେବଙ୍କ ଭଳି ବ୍ୟକ୍ତି ସମକାଳୀନ ସାମାଜିକ ଓ ରାଜନୈତିକ କ୍ଷେତ୍ରରେ ଥିଲେ ବିରଳ । ଏଥିପାଇଁ ତାଙ୍କୁ ସବୁ ସାହାଯ୍ୟ ସମର୍ଥନ ମିଳିଥିଲା ବରୋଦା ଗାଏକ୍‌ୱାଡ୍ ରାଜା ସହ୍ୟାଜି ରାଓଙ୍କଠାରୁ । ସହ୍ୟାଜୀ ରାଓ ନିଜେ ଥିଲେ ଜଣେ ସବର୍ଣ୍ଣ ହିନ୍ଦୁ କ୍ଷତ୍ରୀୟ । ସେ ତରୁଣ ଭୀମରାଓଙ୍କ ବିଚକ୍ଷଣ ପ୍ରତିଭାରେ ବିସ୍ମିତ ହୋଇଯାଇଥିଲେ ।

ବିଦେଶରୁ ଉଚ୍ଚ ଶିକ୍ଷା ସାରି ଫେରିବା ପରେ ୧୯୨୩ ମସିହାରେ ଦଳିତ ଉତ୍‌ଥାନପାଇଁ ବାବାସାହେବ ପ୍ରତିଷ୍ଠା କଲେ 'ବହିଷ୍କୃତ ହିତକାରିଣୀ ସଭା' ଏବଂ ସେହି ଦିନଠାରୁ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଅସ୍ପୃଶ୍ୟତା ଓ ଜାତିଗତ ଭେଦଭାବ ବିରୋଧରେ ସଂଗ୍ରାମ ଜାରି ରଖିଥିଲେ । ତାଙ୍କର ପୁସ୍ତକ 'ଆନିହିଲେସନ୍ ଅଫ୍ କାଷ୍ଟ' ପ୍ରତ୍ୟେକ ଭାରତୀୟ ପଢ଼ିବା ଆବଶ୍ୟକ । ୧୯୩୦ ମସିହା ଅଗଷ୍ଟ ୮ ତାରିଖ ଦିନ ସେ ଦଳିତ ମହାସମ୍ମିଳନୀକୁ ଉଦ୍‌ବୋଧନ ଦେଇ କହିଥିଲେ 'ଚାଲ, ଆମେ ନିଜେ ନିଜର ରାସ୍ତା ବାଛି ନେବା, କେବଳ ରାଜନୈତିକ କ୍ଷମତା ମିଳିଲେ ଦଳିତଙ୍କ ଅବସ୍ଥା ସୁଧୁରିବ ନାହିଁ, ଦଳିତମାନେ ଉନ୍ନତର ସାମାଜିକ ଜୀବନପାଇଁ ପ୍ରଥମେ ଆତ୍ମ ସମୀକ୍ଷା କରନ୍ତୁ, ନିଜ ଅଭ୍ୟାସ ଓ ବିଚାର ବଦଳାନ୍ତୁ, ନିଜ ପିଲାଙ୍କୁ ଶିକ୍ଷିତ କରାନ୍ତୁ, ଯାହା ଘଟୁଛି ତାକୁ ଅସ୍ୱୀକାର, ପ୍ରତ୍ୟାଖ୍ୟାନ କରନ୍ତୁ... ।'

ଆମ୍ବେଦକର ବିଭିନ୍ନ ଜାତିରେ ବିଭକ୍ତ ଦଳିତଙ୍କୁ ଏକାଠି କରି ସଚେତନ ଓ ସକ୍ରିୟ କରିବାପାଇଁ ଉଦ୍ୟମ କରୁଥିଲା ବେଳେ, ଗାନ୍ଧୀ ସବର୍ଣ୍ଣଙ୍କ ମଧ୍ୟରେ ଦଳିତଙ୍କ ପ୍ରତି ଥିବା ରୁଗ୍ଣ ମାନସିକତା ଉପରେ କ୍ରମାଗତ ଭାବରେ ପ୍ରହାର କରୁଥିଲେ । ରଚନାତ୍ମକ କାର୍ଯ୍ୟକ୍ରମ ମାଧ୍ୟମରେ ଦଳିତଙ୍କ କଲ୍ୟାଣ ପାଇଁ ସାରା ଦେଶରେ ପଦଯାତ୍ରା କରି ଶତାଧିକ ଅନୁଷ୍ଠାନ ସ୍ଥାପନ କରିଥିଲେ । ଆଶ୍ରମରେ ବ୍ରାହ୍ମଣ ଅନ୍ତେବାସୀଙ୍କୁ ପ୍ରଥମେ ଅନ୍ୟର ପାଇଖାନା ସଫା ଦାୟିତ୍ୱ ଦେଉଥିଲେ । ଜଣେ ଦଳିତ ଆଶ୍ରମ ପାକଶାଳାର ରୋଷେଇ ଦାୟିତ୍ୱ ନେଇ ସବର୍ଣ୍ଣଙ୍କୁ ଅସବର୍ଣ୍ଣଙ୍କ ସଙ୍ଗେ ବସାଇ ପଂକ୍ତି ଭୋଜନ କରାଉଥିଲେ । କେବଳ ସବର୍ଣ୍ଣ ଓ ଅସବର୍ଣ୍ଣଙ୍କ ମଝିରେ ବିବାହରେ ଯୋଗ ଦେଉଥିଲେ, ଅନ୍ୟ ସାଧାରଣ ବିବାହକୁ ଯାଉ ନଥିଲେ । ଶ୍ରୀମନ୍ଦିରରେ ଅସବର୍ଣ୍ଣଙ୍କ ପ୍ରବେଶ ନିଷେଧ ଥିବାରୁ ସେ ପୁରୀ ପାଖରେ ଥାଇ ମନ୍ଦିର ଯାଇ ନଥିଲେ ଓ ପତ୍ନୀ କସ୍ତୁରବା ତାଙ୍କ ଅଜ୍ଞାତରେ ଶ୍ରୀମନ୍ଦିର ଯାଇଥିବା ଶୁଣି ଅନଶନରେ ବସିଲେ । ତେଣୁ ଯେଉଁ ବ୍ୟକ୍ତି ଦଳିତ ଅଧିକାର ଓ ସମ୍ମାନପାଇଁ ନିଜ ସ୍ତ୍ରୀଙ୍କ ଆଚରଣକୁ ବିରୋଧ କରି ଅନଶନ କରିପାରନ୍ତି, ସେ ରାମ୍‌ସେ ମାକ୍‌ଡୋନାଲ୍‌ଡଙ୍କ ଦେଶ ବିଭାଜନକାରୀ ସାମ୍ପ୍ରଦାୟିକ ବିଲ୍ ବିରୋଧ କରି ଅନଶନରେ ବସିବାରୁ ତାଙ୍କୁ ଏବେ ଦଳିତ ବିରୋଧି ବୋଲି ଚିତ୍ରଣ କରାଯିବା ଦୁର୍ଭାଗ୍ୟଜନକ ।

ଆମ୍ବେଦକର ଦଳିତଙ୍କ ସ୍ୱାର୍ଥ ରକ୍ଷାପାଇଁ ଅଲଗା ନିର୍ବାଚନ ମଣ୍ଡଳୀ ଚାହୁଁଥିଲେ । ଗାନ୍ଧୀ ଭାବୁଥିଲେ ବିଦେଶୀ ଇଂରେଜ ସରକାର ପୁଣି ଥରେ 'ଡିଭାଇଡ୍ ଆଣ୍ଡ ରୁଲ୍' ପଲିସିରେ ଜାତି, ଧର୍ମ, ସମ୍ପ୍ରଦାୟ ଭିତ୍ତିରେ ଦେଶକୁ ଖଣ୍ଡଖଣ୍ଡ କରି ରଖିବାକୁ ଚାହାନ୍ତି ଏବଂ ଥରେ ଅଲଗା ନିର୍ବାଚନ ମଣ୍ଡଳୀ ହୋଇଗଲେ ଦଳିତମାନେ ସବୁ ଦିନପାଇଁ ଦେଶର ମୁଖ୍ୟ ସ୍ରୋତରୁ ଅଲଗା ହୋଇ ରହିଯିବେ । ଉଭୟଙ୍କ ବିଚାର ପଛରେ ଯୁକ୍ତି ଥିଲା ଏବଂ ୧୯୩୨ ପୁନା ଆକ୍ଟ ବା ଚୁକ୍ତିରେ ଦଳିତ ଓ ଆଦିବାସୀଙ୍କପାଇଁ ସ୍ଥାନ ସଂରକ୍ଷଣ ସହମତି ହୋଇଆରେ ଏହି ବିବାଦର ଅବସାନ ହେଲା ଏବଂ ଏହି ସଂରକ୍ଷଣ ନୀତି ଫଳରେ ଆଜି ଭାରତରେ ଦଳିତ ବର୍ଗ ଏକ ମହାଶକ୍ତି ଭାବରେ ମୁଣ୍ଡ ଟେକି ଠିଆ ହୋଇଛନ୍ତି ଏବଂ ନିଜ ଅଧିକାର ଓ ସମ୍ମାନପାଇଁ ଆନ୍ଦୋଳନ ଜାରି ରଖିଛନ୍ତି ।

ଆମ୍ବେଦକର ନିଜେ ଜାତିବାଦର ପକ୍ଷଧର ନଥିଲେ ଏବଂ ଜାତି-ପ୍ରଥା ଲୋପ କରିବାକୁ ଚାହୁଁଥିଲେ । ରାମ ମନୋହର ଲୋହିଆଙ୍କ ସମର୍ଥନରେ ସେତେବେଳେ କୁହାଯାଉଥିଲା ସବର୍ଣ୍ଣମାନେ 'ରୋଟି ଓ ବେଟି' ମାଧ୍ୟମରେ ଏହି ଆନ୍ଦୋଳନରେ ସାମିଲ ହେଲେ ଜାତିବାଦ ଓ ଅସ୍ପୃଶ୍ୟତା ଲୋପପାଇବ । ଅର୍ଥାତ୍ ଅସବର୍ଣ୍ଣଙ୍କ ସହ ଭୋଜନ ଓ ତାଙ୍କ ଘରେ ବିବାହ ଓ କନ୍ୟାଦାନ ମାଧ୍ୟମରେ ସମ୍ପର୍କ ପ୍ରତିଷ୍ଠା ହେଲେ ଯାଇ ଜାତି ହଟିବ, ସାମାଜିକ ନ୍ୟାୟ ଓ ସମାନତା ପ୍ରତିଷ୍ଠିତ ହେବ । ଆଧୁନିକ ଭାରତରେ ଏବେ ଉଚ୍ଚଶିକ୍ଷିତ ଯୁବବର୍ଗ ଏହି ବିଚାରକୁ

କ୍ରମେ ପସନ୍ଦ କରୁଥିବା ଲକ୍ଷଣ ପ୍ରକାଶ ପାଇଲାଣି । ଗତ ୬୦ ବର୍ଷ ମଧ୍ୟରେ 'ଇଣ୍ଟର କାଷ୍ଟ' ବିବାହର ସଂଖ୍ୟା ଓ ଅନୁପାତ ମଧ୍ୟ ବଢ଼ିଲାଣି । ରୋଟି ଓ ବେଟୀ ସମ୍ପର୍କ ଆରମ୍ଭ ହେଲାଣି ।

ଗାନ୍ଧୀ କହୁଥିଲେ ଯଦି ମୋର ପୁନର୍ଜନ୍ମ ହୁଏ, ତେବେ ମୋତେ ଦଳିତ ବା ମହିଳା ରୂପେ ଜନ୍ମ ଦେବାକୁ ଈଶ୍ୱରଙ୍କୁ ପ୍ରାର୍ଥନା । ବାବାସାହେବ କହୁଥିଲେ ହିନ୍ଦୁ ହୋଇ ଜନ୍ମ ହେଇଛି କିନ୍ତୁ ହିନ୍ଦୁ ହୋଇ ମରିବି ନାହିଁ । ବାବାସାହେବ ଓ ବାପୁ ଉଭୟଙ୍କର ପ୍ରଚଳିତ ସାମାଜିକ ବିଧି, ବ୍ୟବସ୍ଥା ବିରୋଧରେ କ୍ରୋଧ ଓ ଅସନ୍ତୋଷ ଥିଲା । ଉଭୟେ ଏହାକୁ ଭିନ୍ନଭିନ୍ନ ଢଙ୍ଗରେ ଦେଖୁଥିଲେ ଓ ପ୍ରକାଶ କରୁଥିଲେ । ଗାନ୍ଧୀ କହୁଥିଲେ- 'ମୁଁ ତିକ୍ତ ଅନୁଭୂତିରୁ ଏତିକି ଶିଖିଛି ଯେ ନିଜର କ୍ରୋଧ ଜନିତ ଉତ୍ତାପକୁ ଶକ୍ତିରେ ପରିଣତ କରି ହେବ ।' ଏହି ଶକ୍ତିକୁ ବାପୁ ଦଳିତ କଲ୍ୟାଣ ସମେତ ୧୮ଟି ରଚନାତ୍ମକ କାର୍ଯ୍ୟକ୍ରମ ମାଧ୍ୟମରେ ପ୍ରକାଶ କରିଥିଲେ । ବାବାସାହେବ ଏ ବିଷୟରେ ମହାତ୍ମା ବୁଦ୍ଧଙ୍କ ବାଣୀ ଅନୁସରଣ କରିବାପାଇଁ ଚେଷ୍ଟା କରୁଥିଲେ । ବୁଦ୍ଧ କହୁଥିଲେ- ଯେପରି ଜଣେ ବାହନ ଚାଳକ ଏକ ଧାବମାନ ଗାଡ଼ିର ଗତି ନିୟନ୍ତ୍ରଣ କରି ଗନ୍ତବ୍ୟ ସ୍ଥଳରେ ପହଞ୍ଚେ, ସେମିତି ଜଣେ ସଭ୍ୟ ବ୍ୟକ୍ତି ନିଜର କ୍ରୋଧକୁ ଲଗାମ ଦେଇ ଓ ଗଠନମୂଳକ ଭାବରେ ନିୟନ୍ତ୍ରଣ କରି ଲକ୍ଷ୍ୟସ୍ଥଳରେ ପହଞ୍ଚନ୍ତି । କେବଳ ଅସଭ୍ୟ ଲୋକେ ନିଜର ଭାବନାକୁ ଅସଭ୍ୟ ଲୋକେ ନିଜର ଭାବନାକୁ ଅସଭ୍ୟ ଭାଷା ଓ ଆଚରଣ ଜରିଆରେ ପ୍ରକାଶ କରିଥାନ୍ତି ।

ଅକ୍ଟୋବର ୧୯୩୧ ମସିହାରେ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟରେ ଏକ ସଭାରେ ଉଦ୍‌ବୋଧନ ଦେଇ ଗାନ୍ଧୀ କହିଥିଲେ, 'ମୁଁ ସବୁଠୁ ବେଶି ସମ୍ମାନ ଓ ଶ୍ରଦ୍ଧା କରେ ଡ.ଆମ୍ବେଦକରଙ୍କୁ । ସେ ଜୀବନରେ ଯେପରି ଅପମାନିତ ହୋଇଛନ୍ତି, ଯେପରି ଅବସ୍ଥାରେ ଯେ କୌଣସି ବ୍ୟକ୍ତିର ଭାଷା ଓ ଆଚରଣ ତିକ୍ତ କଟୁ ଓ କର୍କଶ ହେବା ସ୍ୱାଭାବିକ । କିନ୍ତୁ ସେ ଯେ ଏପର୍ଯ୍ୟନ୍ତ ଆମ ମୁଣ୍ଡ ଫଟେଇ ନାହାନ୍ତି, ଏହା ତାଙ୍କର ଆତ୍ମ ସଂଯମର ପରିଚୟ ।' ତିନି ବର୍ଷ ପରେ ୧୯୩୪ ମସିହାରେ କରାଚୀ ସହରରେ ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେଇ ଗାନ୍ଧୀ ଆମ୍ବେଦକରଙ୍କ ସଂଘର୍ଷ ଓ ତ୍ୟାଗର ଭୂରିଭୂରି ପ୍ରଶଂସା କରିଥିଲେ । ୧୯୩୬ ମସିହାରେ ଗାନ୍ଧୀ ଦଳିତଙ୍କ ଦୁର୍ଗତିପାଇଁ ସବର୍ଣ୍ଣଙ୍କୁ ଦାୟୀ କରିଥିଲେ ଓ ଏହି ପାପପାଇଁ ପ୍ରାୟଶ୍ଚିତ କରିବାକୁ କହିଥିଲେ । ହିନ୍ଦୁ ଧର୍ମର ସନାତନୀ ଗୋଷ୍ଠୀ ଗାନ୍ଧୀଙ୍କ ସମାଜ ସଂସ୍କାର କାର୍ଯ୍ୟକ୍ରମକୁ ଘୋର ବିରୋଧ କରୁଥିଲେ । ଏପରିକି ଶଙ୍କରାଚାର୍ଯ୍ୟମାନେ ଏକାଠି ହୋଇ ତାଙ୍କୁ ଅଣହିନ୍ଦୁ ବୋଲି ଘୋଷଣା କରିଥିଲେ । ୧୯୩୧ ସମିହାରେ ଲଣ୍ଡନରେ ଅନୁଷ୍ଠିତ ଗୋଲଟେବୁଲ୍ ସମ୍ମିଳନୀରେ ଭାରତରେ ସବର୍ଣ୍ଣମାନଙ୍କର ଦଳିତଙ୍କ ପ୍ରତି ଆଚରଣ ଆଲୋଚନା ଶୁଣି ଲଜ୍ଜାରେ ଗାନ୍ଧୀଙ୍କ ମୁଣ୍ଡ ନଇଁ ଯାଇଥିଲା ଓ ସେଠାରୁ ଫେରି ଦେଶବାସୀଙ୍କ ବିବେକ ଜାଗ୍ରତ କରିବାପାଇଁ ଦଳିତଙ୍କ ସାଙ୍ଗରେ ରହିବାକୁ ଆରମ୍ଭ କଲେ । ଏବଂ

ସ୍ୱାଧୀନ ଭାରତର ପ୍ରଥମ ସମ୍ବିଧାନ ପ୍ରଣୟନ ସଭାର ଅଧ୍ୟକ୍ଷ ଭାବରେ ବାବାସାହେବଙ୍କୁ ଆମନ୍ତ୍ରଣ କରିଥିଲେ ଗାନ୍ଧୀ ଓ ନେହରୁ । ଫଳରେ ଆଜି ସମ୍ବିଧାନ ବିଶାରଦମାନେ କହୁଛନ୍ତି ଭାରତୀୟ ସମ୍ବିଧାନ କେବଳ ଏକ ଆଇନକାନୁନ୍ ସମ୍ବଳିତ ଦସ୍ତାବିଜ୍ ନୁହେଁ- ଏହା ଏକ 'ସୋସିଆଲ ଡକୁମେଣ୍ଟ୍', ସ୍ୱାଧୀନ ମଣିଷଙ୍କପାଇଁ ପ୍ରଣୀତ ନୂତନ ମନୁସ୍ମୃତି । ମାନବତାର ନୂତନ ଧର୍ମଗ୍ରନ୍ଥ ।

ବାବାସାହେବ ଓ ବାପୁଙ୍କ ମଧ୍ୟରେ ମତଭେଦ ଥିଲା । ଯେପରି ଗାନ୍ଧିଙ୍କର ନେହରୁ, ସର୍ଦ୍ଦାର ପଟେଲ ମୌଲାନ ଆଜାଦ, ଜିନ୍ନା ଓ ସୁଭାଷ ବୋଷଙ୍କ ସହ ମଧ୍ୟ ଦେଶ ଗଠନ ସମ୍ପର୍କରେ ମତାନ୍ତର ଥିଲା । ଉଦାହରଣ ସ୍ୱରୂପ ଗାନ୍ଧୀ ଥିଲେ ଗ୍ରାମ ସ୍ୱରାଜର ପ୍ରବକ୍ତା । ଆମ୍ବେଦକର କହୁଥିଲେ ଭାରତର ଗାଁଗୁଡ଼ିକ ହେଲା ରକ୍ଷଣଶୀଳତା ଓ ଅସ୍ପୃଶ୍ୟତା ଭଳି ସାମାଜିକ ପାପର ଦୁର୍ଗ । ତେଣୁ ଗାଁରେ ବା ଗ୍ରାମସଭାରେ ଦଳିତଙ୍କ ଭବିଷ୍ୟତ ଅନ୍ଧାର । ବରଂ ଗାଁ ଅପେକ୍ଷା ସହରରେ ଦଳିତ ସ୍ୱାର୍ଥ ଅଧିକ ସୁରକ୍ଷିତ । ସେ ଭାବୁଥିଲେ ସହରୀକରଣଦ୍ୱାରା ଅସ୍ପୃଶ୍ୟତା ଦୂରୀକରଣ ସହଜ ହେବ । ନିଜେ ଆଧୁନିକ ପୋଷାକ ପିନ୍ଧୁଥିଲେ । ହିନ୍ଦୀ ଓ ଇଂରାଜୀ ଭାଷାର ସମର୍ଥକ ଥିଲେ । ଏହା ସତ୍ତ୍ୱେ ବାପୁ ଓ ବାବା ସାହେବ ଥିଲେ ଦୁଇଟି ପରିପୂରକ ଚିନ୍ତାଧାରାର ପ୍ରତିନିଧି । ଗାନ୍ଧୀଙ୍କୁ କୁହାଯାଉଥିଲା 'ରୁରାଲ ରୋମାଣ୍ଟିକ୍' ଓ ଆମ୍ବେଦକରଙ୍କୁ 'ଅର୍ବାନ ଆଡ୍‌ଭୋକେଟ୍' । ସେତେବେଳେ ଅନେକ ଲୋକ ଭାବୁଥିଲେ ଗାନ୍ଧୀ ଅର୍ଥ କଂଗ୍ରେସ ଓ କଂଗ୍ରେସ ଅର୍ଥ ଭାରତ । ବାବା ସାହେବ ଭାବୁଥିଲେ, କଂଗ୍ରେସ ରକ୍ଷଣଶୀଳ ସବର୍ଣ୍ଣଙ୍କ ପାଟି ଓ ତା ଅପେକ୍ଷା ବିଦେଶୀ ଇଂରେଜ ଭଲ । ଯେପରି ଜିନ୍ନା ଭାବୁଥିଲେ କଂଗ୍ରେସ ହିନ୍ଦୁଙ୍କ ସଂଗଠନ, କମ୍ୟୁନିଷ୍ଟମାନେ ଭାବୁଥିଲେ ଏହା ବୁର୍ଜୁଆଙ୍କ ଦଳ । କିନ୍ତୁ ଗାନ୍ଧୀ ଭାବୁଥିଲେ, ହିନ୍ଦୁ ଧର୍ମ ଭିତରେ ଦଳିତଙ୍କ ଅଧିକାର ସାବ୍ୟସ୍ତ କରାଯାଇ ପାରିବ, କଂଗ୍ରେସରେ ସେ ଦଳିତଙ୍କୁ ଉଚ୍ଚ ସ୍ଥାନ ଓ ସମ୍ମାନ ଦେଉଥିଲେ । ଆମ୍ବେଦକର ଏ କଥାକୁ ବିଶ୍ୱାସ କରୁନଥିଲେ । ଅଷ୍ଟାଦଶ ଶତାବ୍ଦୀରେ ଯେତେବେଳେ ଇଂରେଜ ଶାସନ କବଳରୁ ମୁକ୍ତିପାଇଁ ଆମେରିକୀୟମାନେ ଆନ୍ଦୋଳନ କରୁଥିଲେ ପ୍ରଖ୍ୟାତ କବି ସାମୁଏଲ୍ ଜନ୍‌ସନ୍ ଆମ୍ବେଦକରଙ୍କ ଭଳି ସେମାନଙ୍କୁ ପଚାରିଥିଲେ "ତୁମେ କେବେ ନିଜ ଦେଶରୁ କୃଷ୍ଣକାୟଙ୍କୁ ଦାସତ୍ୱ ପ୍ରଥାରୁ ମୁକ୍ତ କରିବ ?" କିନ୍ତୁ ସ୍ୱାଧୀନ ଭାରତର ସମ୍ବିଧାନ ପ୍ରଥମରୁ ହିଁ ଦାସତ୍ୱ ବା ଅସ୍ପୃଶ୍ୟତା ସ୍ୱୀକାର କରେ ନାହିଁ ।

ବିଳମ୍ବରେ ହେଲେ ମଧ୍ୟ ଆମେରିକାରୁ ଦାସତ୍ୱ ପ୍ରଥା ଉଠିଲା । ସେମିତି ବିଳମ୍ବ ହେଉଥିଲେ ବି ସାମାଜିକ ସ୍ତରରେ ଭାରତରୁ ଜାତିପ୍ରଥା ଓ ଅସ୍ପୃଶ୍ୟତାର ଅବସାନ ହେବ ଏବଂ ସେଇ ଦିନଟି ହେବ ବାବାସାହେବ, ବାପୁ ଓ ସର୍ବୋପରି ଭାରତର ପ୍ରକୃତ ବିଜୟର ଦିନ ।

# ବିଶ୍ୱ ନାୟକ

ପ୍ରଭାତକୁମାର ନନ୍ଦ

ପୃଥିବୀର ପ୍ରତ୍ୟେକ ସମାଜରେ ନାୟକ ଅଛନ୍ତି । ସେମାନେ ହିଁ ଜନତାଙ୍କର ପ୍ରତିନିଧି ବା ସାଧାରଣ ବ୍ୟକ୍ତିଙ୍କଠାରୁ ବହୁ ଭାବରେ ଅଧିକ ଜ୍ଞାନୀ । ଅଭିଜ୍ଞତାକୁ ଆଧାରକରି ସମାଜରେ ଅଭିଜ୍ଞ ବ୍ୟକ୍ତିମାନେ ଯେଉଁ ପନ୍ଥା ପ୍ରବର୍ତ୍ତନ କରନ୍ତି, ସେହି ସମାଜର ସମସ୍ତ ବ୍ୟକ୍ତି ତାହା ଅନୁସରଣ କରନ୍ତି । ଏହି ସିଦ୍ଧାନ୍ତ କ୍ଷେତ୍ରିୟ ଓ ତାହା ସମସ୍ତ ସମାଜରେ ପ୍ରବର୍ତ୍ତିତ ହୋଇପାରିବ ନାହିଁ । ମାତ୍ର ଯେଉଁ ନାୟକମାନଙ୍କର ମାର୍ଗଦର୍ଶନ ସାର୍ବଜନୀନ ଓ ଯେକୌଣସି ସମାଜର ଜନସାନସର ହିତରେ ବ୍ୟବହାର କରାଯାଇପାରିବ, ସେହି ନାୟକମାନଙ୍କୁ ବିଶ୍ୱନାୟକ ଆଖ୍ୟା ଦିଆଯାଇପାରେ । ସେମାନଙ୍କ ମଧ୍ୟରୁ ସକ୍ରେଟିସ୍, ପ୍ଲାଟୋ, ମହାତ୍ମାଗାନ୍ଧୀ, ବାବାସାହେବ ଆମ୍ବେଦକର, କାର୍ଲମାର୍କସ୍ ଓ ଲେନିନ୍ ଅନ୍ୟତମ ।

ବିଂଶ ଶତାବ୍ଦୀରେ ବିଶ୍ୱଜନତାଙ୍କର ନବଜାତକ ନିର୍ମାଣର କର୍ଣ୍ଣଧାର ବାବାସାହେବ ଭୀମରାଓ ଆମ୍ବେଦକରଙ୍କର ଜୀବନୀକୁ ଅନୁଧ୍ୟାନ କଲେ, ତନ୍ମଧ୍ୟରୁ, ନିରୀହ, ନିଷ୍ପେଷିତ, ନ୍ୟୂନ, ନିରକ୍ଷର, ଅସଚେତନ ବ୍ୟକ୍ତି ସମୂହର ଜୀବନ ଯନ୍ତ୍ରଣା ପ୍ରଭାବିତ ହୋଇଥାଏ । ବାବାସାହେବ ଭାରତର ଅବହେଳିତ ଜନସମୁଦାୟ ନିମିତ୍ତ ସଂଗ୍ରାମ କରି ବହୁ ମାର୍ଗ ପ୍ରଦର୍ଶନ କରିଥିଲେ । ମାତ୍ର ସେହି ମାର୍ଗ ବିଶ୍ୱର ଯେକୌଣସି ଦେଶର ଅବହେଳିତ ଜନସାଧାରଣଙ୍କର ବିକାଶ ନିମିତ୍ତ ଉପଯୁକ୍ତ ପ୍ରମାଣିତ ହୋଇଥିଲା । ୧୯୨୪ ମସିହାରେ ବାବାସାହେବ ତାଙ୍କର ସଂସ୍କାରମୂଳକ କାର୍ଯ୍ୟକ୍ରମ ଆରମ୍ଭ କରିଥିଲେ ମଧ୍ୟ, ୧୯୪୨ ମସିହାରେ ସେ ବିଶ୍ୱଜନନାୟକର ମର୍ଯ୍ୟାଦା ଲାଭ କରିଥିଲେ ।

୧୯୪୨ ମସିହା ଜୁଲାଇ ୧୮ ଓ ୧୯ ତାରିଖରେ ନାଗପୁରଠାରେ ଭାରତର ଅବହେଳିତ ଶ୍ରେଣୀ ସମାବେଶ (ଭାରତ ଡିପ୍ରେସ୍‌ଡ୍ କ୍ଲାସେସ୍ କନ୍‌ଫରେନ୍ସ) ଅନୁଷ୍ଠିତ ହୋଇଥିଲା । ଏହି ସଭାରେ ପ୍ରାୟ ସତୁରୀ ହଜାର ଜନସାଧାରଣ ଏକତ୍ରିତ ହୋଇଥିଲେ । ସେହି ସଭାରେ ଡଃ ଆମ୍ବେଦକର ଘୋଷଣା କରିଥିଲେ ଯେ, ନିଜକୁ ଶିକ୍ଷିତ କରାଅ, ସଂଘବଦ୍ଧ ହୁଅ ଓ ଆନ୍ଦୋଳନ କର । ଏହି ଘୋଷଣା ହିଁ, ବାବାସାହେବ ଡଃ ଆମ୍ବେଦକରଙ୍କୁ ବିଶ୍ୱନାୟକ ସ୍ତରରେ ପହଞ୍ଚାଇ ଦେଇଥିଲା । ବାବାସାହେବଙ୍କର ଏହି ବାଣୀ ବିଶ୍ୱର ଯେକୌଣସି ଦେଶର ଦଳିତ ଜନସାଧାରଣଙ୍କର ହିତଦୃଷ୍ଟିରେ ଗ୍ରହଣୀୟ, ଏଥିରେ ଦ୍ୱିଧାର ସମ୍ଭାବନା ନାହିଁ । ଏହି ଘୋଷଣା ପରେପରେ ତାଙ୍କୁ ରାଷ୍ଟ୍ରର ଶ୍ରମିକ ବିଭାଗର ମନ୍ତ୍ରୀରୂପେ

ଗ୍ରହଣ କରାଯାଇଥିଲା । ବାବାସାହେବ ଡକ୍ଟର ଆମ୍ବେଦକରଙ୍କ ଉପରୋକ୍ତ ଐତିହାସିକ ଘୋଷଣା ବିଷୟରେ ଅଧିକ ଆଲୋଚନା କରାଗଲେ, ତାହା ସାର୍ବଜନୀନ ଭାବରେ ପ୍ରମାଣିତ ହୋଇପାରିବ ।

ଯେ କୌଣସି ଆନ୍ଦୋଳନ କରିବାକୁ ହେଲେ, ସେହି ଆନ୍ଦୋଳନର ଉଦ୍ଦେଶ୍ୟ ଓ କାର୍ଯ୍ୟପନ୍ଥା ସଂପର୍କରେ ସବିଶେଷ ଜ୍ଞାନ ରହିବା ଆବଶ୍ୟକ । ଅଧିକାଂଶ ସମାଜରେ ଆନ୍ଦୋଳନକାରୀମାନେ ସେ ବିଷୟରେ ସଚେତନ ନଥାନ୍ତି । ନେତା କହୁଛନ୍ତି ବୋଲି ସେ ଆନ୍ଦୋଳନରେ ଯୋଗ ଦେଇଥାନ୍ତି ବା ତାଙ୍କୁ ଭ୍ରମାତ୍ମକ ତଥ୍ୟ ପ୍ରଦାନ କରାଯାଇ ଆନ୍ଦୋଳନ ସ୍ଥଳକୁ ଅଣାଯାଇଥାଏ । ବହୁ ସମାଜରେ ଆନ୍ଦୋଳନାତ୍ମକ ସଭା ନିମିତ୍ତ ସାଧାରଣ ବ୍ୟକ୍ତିଙ୍କୁ ବିଭିନ୍ନ ଯାନ ବାହାନରେ ଅଣାଯାଇଥାଏ ।  ବିଭିନ୍ନ ପର୍ଯ୍ୟଟନ ସ୍ଥଳ ଭ୍ରମଣ ଓ ସୁସ୍ୱାଦ ଖାଦ୍ୟ ବ୍ୟତୀତ ପାରିଶ୍ରମିକ ପ୍ରଦାନ ନିମିତ୍ତ ପ୍ରତିଶ୍ରୁତି ଦିଆଯାଇଥାଏ । ସଭାରେ ବ୍ୟକ୍ତି ସମାବେଶ ବୃଦ୍ଧି ନିମିତ୍ତ ବିଭିନ୍ନ ରାଜନୈତିକ ଦଳ ଏହି ପ୍ରକ୍ରିୟାରେ ଆଶ୍ରୟ ନେଇଥାଆନ୍ତି । ମାତ୍ର ସମାବେଶ ପରେ ଆନ୍ଦୋଳନ ଠିକ୍ ଭାବରେ ହୋଇପାରେ ନାହିଁ । ସାଧାରଣ ଅଶିକ୍ଷିତ ଓ ଅସଚେତନ ଜନତାଙ୍କୁ ହିଁ କେବଳ ଏହି ମାର୍ଗରେ ଶିକାର କରାଯାଇପାରେ । ଶିକ୍ଷିତ ଓ ସଚେତନ ବ୍ୟକ୍ତି କଦାପି ଏ ଭଳି ଆନ୍ଦୋଳନରେ ଯୋଗଦେବେ ନାହିଁ । ତେଣୁ ଯେକୌଣସି ଆନ୍ଦୋଳନ ପୂର୍ବରୁ ଆନ୍ଦୋଳନକାରୀମାନଙ୍କୁ ଶିକ୍ଷିତ କରିବାପାଇଁ ବାବାସାହେବ ଆହ୍ୱାନ ଦେଇଥିଲେ । ସେ ନିଜ ଜୀବନରେ ଉଚ୍ଚ ଶିକ୍ଷିତ ଥିଲେ । ଭାରତର ଅବହେଳିତ ଦଳିତ ବ୍ୟକ୍ତିମାନେ ନିଜର ଶିକ୍ଷାହୀନତା ଯୋଗୁଁ ଯେ ସଚେତନ ହୋଇପାରୁ ନାହାନ୍ତି ଓ ଆନ୍ଦୋଳନ ନିମିତ୍ତ ସାହସ ସଞ୍ଚୟ କରିପାରୁନାହାନ୍ତି, ସେ ବିଷୟେରେ ସେ ନିଶ୍ଚିତ ଥିଲେ । ତେଣୁ ସେ ସମସ୍ତ ଦଳିତ ଜାତିର ବ୍ୟକ୍ତିଙ୍କୁ ଅଧ୍ୟୟନ କରି ଜ୍ଞାନ ଅର୍ଜନ କରିବା ନିମିତ୍ତ ପଦକ୍ଷେପ ନେଇଥିଲେ ଓ ସେଥିରେ ସଫଳ ହୋଇଥିଲେ । ଶିକ୍ଷିତ ବ୍ୟକ୍ତି ହିଁ ସଚେତନ ବ୍ୟକ୍ତି । ସେହିଭଳି ବ୍ୟକ୍ତି ହିଁ ଆନ୍ଦୋଳନରେ ସକ୍ରୀୟ ଅଂଶ ଗ୍ରହଣ କରିବାକୁ ସମର୍ଥ ।

ବିଭିନ୍ନ ସମାଜରେ ଶିକ୍ଷିତ ବ୍ୟକ୍ତିଙ୍କର ଅଭାବ ନାହିଁ । ମାତ୍ର ସେହି ସମାଜରେ ଆନ୍ଦୋଳନ ସଫଳ ହୋଇପାରୁନାହିଁ । ତାହାର ମୂଳ କାରଣ ହେଉଛି, ଶିକ୍ଷିତ ବ୍ୟକ୍ତିମାନେ ନିଜର ଅହଂଭାବ ଯୋଗୁଁ ବ୍ୟକ୍ତିକୈନ୍ଦ୍ରିକ ହୋଇପଡ଼ିଛି । ନିଜର ସୁଖସୁବିଧାକୁ ଅଧିକ ଗୁରୁତ୍ୱଦେଇ ସମାଜର ଭଲମନ୍ଦରେ ମୁଣ୍ଡଖେଳାଇବାକୁ ଉଚିତ ମନେ କରୁନାହାନ୍ତି । ଏହି ଭାବକୁ ପରିହାର କରିବାପାଇଁ ବାବାସାହେବ ଡଃ ଆମ୍ବେଦକର ସମସ୍ତ ବ୍ୟକ୍ତିଙ୍କୁ ସଂଘବଦ୍ଧ ହେବାପାଇଁ ଆହ୍ୱାନ ଦେଇଥିଲେ । ଏକତ୍ରିତ ହେଲେ ବ୍ୟକ୍ତିମାନଙ୍କର ଅହଂଭାବ ଦୂର ହୋଇଯାଏ । ସେହି ଅହଂଭାବ ଦୂର ହେଲେ, ମାନବ ବୈକ୍ତିକୈନ୍ଦ୍ରିକ କ୍ଷୁଦ୍ର ପରିସରରୁ

ଉଦ୍ଧାର ପାଇ ସାମାଜିକ ମହାସାଗର, ବୃହତ୍ ପରିସରରେ ପଦାର୍ପଣ କରେ । ସେଥି ନିମିତ୍ତ ଚୌଦ୍ୱାର ପୁଷ୍କରିଣୀ ଆନ୍ଦୋଳନଠାରୁ ଆରମ୍ଭ କରି ବୌଦ୍ଧଧର୍ମ ଗ୍ରହଣ କାର୍ଯ୍ୟକ୍ରମ ପର୍ଯ୍ୟନ୍ତ ସମସ୍ତ ଆନ୍ଦୋଳନରେ ସେ ସଂଘବଦ୍ଧ ଜନତାଙ୍କୁ ହିଁ ସାଥିକରିଥିଲେ । ଏକାଠି ହେଲେ ଶକ୍ତି ବହୁଗୁଣିତ ହୁଏ ଓ ସାମାଜିକ ଉଦ୍ଦେଶ୍ୟ ସାଧିତ ହୁଏ । ଏହାହିଁ ଗଣତାନ୍ତ୍ରିକ ଚେତନାର ମୂଳ ମନ୍ତ୍ର ।

ଶିକ୍ଷିତ ଓ ସଚେତନ ବ୍ୟକ୍ତିମାନେ ସଂଘବଦ୍ଧ ହେଲେ ସମାଜର ଅଭ୍ୟୁଦୟ ହେବା ସ୍ୱାଭାବିକ । ମାତ୍ର ବହୁକ୍ଷେତ୍ରରେ ଧର୍ମାନ୍ଧତା ଓ କୁଶାସନ ସାମାଜିକ ମଙ୍ଗଳ କାର୍ଯ୍ୟକ୍ରମରେ ଅନ୍ତରାୟ ସୃଷ୍ଟିକରେ । ସେହି ସମାଜବିରୋଧି ଭାବକୁ ପ୍ରତିହତ କରିବା ନିମିତ୍ତ ଆନ୍ଦୋଳନ ଆବଶ୍ୟକ । ଅଶିକ୍ଷିତ ଓ ଅସଚେତନ ବ୍ୟକ୍ତିମାନଙ୍କର ଆନ୍ଦୋଳନରେ ହିଂସାଭାବ ସୃଷ୍ଟିହେବା ସହଜ ହୋଇଥାଏ, ମାତ୍ର ଶିକ୍ଷିତ ଓ ସଚେତନ ବ୍ୟକ୍ତିମାନେ ଅହିଂସା ମାର୍ଗରେ ଧୈର୍ଯ୍ୟର ସହ ନିଜର ଦାବୀକୁ ବଳିଷ୍ଠ ଭାବରେ ଉପସ୍ଥାପନ କରନ୍ତି ଓ କର୍ତ୍ତୃତ୍ୱଧାରୀ ଶକ୍ତି ତାହାକୁ ଗ୍ରହଣ କରିନେବାପାଇଁ ବାଧ୍ୟ ହୁଅନ୍ତି । ବାବାସାହେବ ଡଃ ଆମ୍ବେଦକର ଏହି ପ୍ରକାର ଆନ୍ଦୋଳନର ସମର୍ଥକ ଥିଲେ । ହିନ୍ଦୁ ଧର୍ମର ଅସ୍ପୃଶ୍ୟତା ଓ ଦଳିତମାନଙ୍କ ପ୍ରତି ହୀନମନ୍ୟତାକୁ ଦୂରକରିବାପାଇଁ ସେ ଆଜୀବନ ଆନ୍ଦୋଳନ କରିଥିଲେ । ୧୯୨୭ ମସିହା ମାର୍ଚ୍ଚ ମାସରେ ମାନ୍ଦ୍ରାଜଠାରେ କୋଲଙ୍ଗ ଜିଲ୍ଲା ଦଳିତ ଜାତି ସଂଘପକ୍ଷରୁ ଆୟୋଜିତ ଦଳିତ ସଭାରେ ସେ କହିଥିଲେ ଯେ, "ବଳି ଦେବାକୁ କେବଳ ଛାଗଳମାନଙ୍କର ଆବଶ୍ୟକତା ହୁଏ ସିନା, ସିଂହମାନଙ୍କୁ ବଳିଦେବାରେ ବ୍ୟବହାର କରାଯାଏ ନାହିଁ । ତେଣୁ ଅପହୃତ କ୍ଷମତାକୁ ମାଗିଲେ ମିଳେନା ବା ନିବେଦନ କଲେ ମିଳେ ନାହିଁ । ମାତ୍ର କେବଳ ସଂଗ୍ରାମ ବଳରେ ମିଳେ ।"

ବାବାସାହେବ ଡଃ ଭୀମରାଓ ଆମ୍ବେଦକର ଉପରୋକ୍ତ ଦର୍ଶନ ଯୋଗୁଁ ସମଗ୍ର ବିଶ୍ୱରେ ବିଶ୍ୱନାୟକର ମର୍ଯ୍ୟାଦା ଲାଭ କରିଛନ୍ତି । ଜଗତର ଯେକୌଣସି ଜାତିର ଆନ୍ଦୋଳନ କରିବାର କାର୍ଯ୍ୟଧାରା ନିଶ୍ଚିତ ଭାବରେ ସଫଳ ପଦକ୍ଷେପ । ଏହି ସର୍ବଯୁଗୀୟ ଦର୍ଶନ ନିମିତ୍ତ ବାବା ସାହେବ ବିଶ୍ୱଦର୍ଶନ ଇତିହାସରେ ଅମର ହୋଇ ରହିବେ ।

# ଡକ୍ଟର ଭୀମରାଓ ରାମଜୀ ଆମ୍ବେଦକର

ଗୌରଚନ୍ଦ୍ର ଖମାରୀ

ଡକ୍ଟର ବାବା ସାହେବ ଆମ୍ବେଦକରଙ୍କୁ ଆମ ଦେଶର କିଛି ଶିକ୍ଷିତ ଲୋକ ଭାରତୀୟ ସମ୍ବିଧାନର ପ୍ରଣେତା ଭାବରେ ଜାଣନ୍ତି । ସାଧାରଣତଃ ଉଚ୍ଚ ଜାତିର ଲୋକମାନେ ତାଙ୍କ ବିଷୟରେ ବିଶେଷ ଆଲୋଚନାପାଇଁ ଆଗ୍ରହ ପ୍ରକାଶ କରନ୍ତି ନାହିଁ । ସଚେତ ଦଳିତ ('ହରିଜନ' ଶବ୍ଦ ବିବାଦୀୟ ହୋଇ ପଡ଼ିଥିବାରୁ ଏହି ଲେଖାରେ ଏହା ବଦଳରେ ଦଳିତ, ଅସ୍ପୃଶ୍ୟ, ଅଛୁତ୍, ଅଁଛବ, ତଫସିଲଭୁକ୍ତ ଜାତି ଇତ୍ୟାଦି ଶବ୍ଦ ବ୍ୟବହାର କରାଯାଇଛି ।) ଲୋକମାନେ ଦଳିତ ହିସାବରେ ପ୍ରତିବର୍ଷ ତାଙ୍କର ଜୟନ୍ତି ପାଳନ କରନ୍ତି । ଗତ ୧୯୯୦ ଏପ୍ରିଲ ୧୨ ତାରିଖ ଦିନ ତତ୍କାଳୀନ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ପ୍ରତାପ ସିଂହଙ୍କଦ୍ୱାରା ଦିଲ୍ଲୀସ୍ଥ ପାର୍ଲାମେଣ୍ଟ ଭବନରେ ତାଙ୍କର ପ୍ରତିମୂର୍ତ୍ତି ଉନ୍ମୋଚନ ହୋଇଛି । ସେହି ୧୯୯୦ ଏପ୍ରିଲ ୧୪ ତାରିଖ ଦିନ ତାଙ୍କର ଜନ୍ମ ଶତବାର୍ଷିକୀ ପାଳନ ଅବସରରେ ତାଙ୍କୁ ମରଣୋତ୍ତର 'ଭାରତରତ୍ନ' ଉପାଧି ଦିଆଯାଇଛି । ଏହା ପରେ ବିଭିନ୍ନ ସ୍ଥାନରେ କେନ୍ଦ୍ର ସରକାର, ରାଜ୍ୟ ସରକାର ଓ ବିଭିନ୍ନ ରାଜନୈତିକ ଦଳମାନଙ୍କଦ୍ୱାରା ମହାଆଡ଼ମ୍ବରରେ ଆମ୍ବେଦକର ଜୟନ୍ତୀ ପାଳନ ହେଉଛି । ଗତ କିଛି ବର୍ଷ ହେଲା ସମଗ୍ର ଭାରତରେ ଦଳିତ ଚେତନା ଅତି ଉଗ୍ରରୂପ ଧାରଣ କରୁଛି । ପ୍ରାୟ ସବୁ ରାଜନୈତିକ ଦଳ ଆମ୍ବେଦକରଙ୍କର ଜୟ ଜୟକାର କରୁଛନ୍ତି । କେଉଁଠି ତାଙ୍କର ନାମ ଅନୁସାରେ ବିଶ୍ୱବିଦ୍ୟାଳୟର ନାମକରଣପାଇଁ ବହୁ ହିଂସାକାଣ୍ଡ ହେଉଛି ତ କେଉଁଠିକେଉଁଠି ସହର ମଫସଲର ଗଳିକନ୍ଦିରେ ତାଙ୍କର ପ୍ରତିମୂର୍ତ୍ତି ସ୍ଥାପନ ବେଳେ ଆଇନ ଶୃଙ୍ଖଳା ପରିସ୍ଥିତି ସୃଷ୍ଟି ହେଉଛି । ତେବେ କିଏ ସେ ମହାପୁରୁଷ ଇହଧାମ ତ୍ୟାଗ କରିବାର ବହୁ ବର୍ଷ ପରେ ଅପରଧାମରେ ଥାଇ ଆଜି ପର୍ଯ୍ୟନ୍ତ ଦେଶକୁ ଶାସନ କରି ଆସୁଥିବା ଉଚ୍ଚ ଜାତିଠାରେ ହୃତ୍କମ୍ପ ସୃଷ୍ଟି କରିଛନ୍ତି ? ଏଠାରେ ତାଙ୍କର ସଂଘର୍ଷମୟ ଜୀବନର ସଂକ୍ଷିପ୍ତ ଅବତାରଣା କରାଯାଉଛି ।

ଆମ୍ବେଦକରଙ୍କର ପୁରାନାମ ହେଉଛି ଭୀମରାଓ ରାମଜୀ ଆମ୍ବେଦକର । ସେ ୧୮୯୧ ଏପ୍ରିଲ ୧୪ ତାରିଖ ଦିନ ମଧ୍ୟ ଭାରତର ମାହୁ ନାମକ ସ୍ଥାନରେ ଏକ ଅସ୍ପୃଶ୍ୟ 'ମାହାର' ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ରାମଜୀ ସାକପାଲ ମାତାଙ୍କ ନାମ ଭୀମା ବାଈ । ପିତା ରାମଜୀ ସାକପାଲ ସୈନ୍ୟବାହିନୀରେ ଚାକିରି କରୁଥିଲେ

ଏବଂ ସୁବେଦାର-ମେଜର ପଦବୀକୁ ଉନ୍ନୀତ ହୋଇଥିଲେ । ଭୀମରାଓ ସାତରାର ଏକ ସରକାରୀ ସ୍କୁଲରେ ତାଙ୍କର ପ୍ରାଥମିକ ଶିକ୍ଷା ଲାଭ କଲେ । ଏହି ସ୍କୁଲରେ ତାଙ୍କ ନାମ ଥିଲା ଭୀବା ରାମଜୀ ଆମ୍ବାଭାଡ଼େକର । ତାଙ୍କର ପୂର୍ବ ପୁରୁଷମାନେ ମହାରାଷ୍ଟ୍ରର ରତ୍ନଗିରି ଜିଲ୍ଲାର ଖେଡ଼ ତାଲୁକାରେ ଥିବା ପୈତୃକ ଗ୍ରାମ ଆମ୍ବାଭାଡ଼େ ଅନୁସାରେ ସେମାନଙ୍କର ନାମ ପଛରେ ଆମ୍ବାଭାଡ଼େକର ଯୋଗ କରୁଥିଲେ । ସାତରା ସ୍କୁଲରେ ଆମ୍ବେଦକର ନାମରେ ଜଣେ ବ୍ରାହ୍ମଣ ଶିକ୍ଷକ ଭୀମରାଓଙ୍କୁ ବହୁତ ଭଲ ପାଉଥିଲେ । ସେ ସ୍କୁଲ ଛୁଟି ସମୟରେ ତାଙ୍କୁ ଡାକି ଖାଇବାକୁ ଦେଉଥିଲେ । ଭୀମରାଓ ଏହି ଶିକ୍ଷକଙ୍କ ପ୍ରତି କୃତଜ୍ଞତା ବଶତଃ ଏବଂ ସାରା-ଜୀବନ ତାଙ୍କୁ ସମ୍ମାନ ପ୍ରଦର୍ଶନ କରିବାପାଇଁ ନିଜ ନାମରେ 'ଆମ୍ବେଦକର' ଯୋଡ଼ିଥିଲେ ।

ପିଲା ଦିନେ ଭୀମରାଓ ଭାରି ଏକ ଜିଦିଆ ଥିଲେ । କାହାରି କଥାରେ ଦବି ଗଲା ପରି ଦୁର୍ବଳତା ତାଙ୍କର ନଥିଲା । ଥରେ ଜଣେ ସାଥି ପିଲାର ଜିଦ୍‌ରେ ସେ ବିନା ଛତାରେ ସ୍କୁଲକୁ ଚାଲିଯାଇ ପାରିବେ ବୋଲି ବାଜିମାରି ବର୍ଷାରେ ଓଦା ଜୁକୁଜୁକୁ ହୋଇ ସ୍କୁଲକୁ ଗଲେ । ପେଣ୍ଡ୍‌ସେ ନାମରେ ଜଣେ ବ୍ରାହ୍ମଣ ଶିକ୍ଷକ ତାଙ୍କୁ ଏପରି ଅବସ୍ଥାରେ ଦେଖି ଭାରି ବ୍ୟଥିତ ହେଲେ । ନିଜର ପୁଅକୁ ଡାକି ଭୀମରାଓଙ୍କୁ ଶୁଖିଲା ଲୁଗା ପିନ୍ଧିବାକୁ ଦେଇ ତାଙ୍କର ଓଦାଲୁଗା ଓ ଜାମା ଶୁଖାଇ ଦେବାକୁ କହିଲେ ।

ସ୍କୁଲ ଜୀବନରେ ହିନ୍ଦୁ ସମାଜର ଅସ୍ପୃଶ୍ୟତାକୁ ନେଇ ଭୀମରାଓଙ୍କର ଅନେକ ତିକ୍ତ ଅନୁଭୂତି ହୋଇଥିଲା । ଥରେ ଗ୍ରୀଷ୍ମ ଋତୁରେ ଭୀମରାଓ ତାଙ୍କର ବଡ଼ ଭାଇ ମାସୁର ରେଳଷ୍ଟେସନଠାରୁ ଗୋରେଗାଁ ଯାଉଥିଲେ । ବାଟରେ ସେମାନେ ଏକ ବଳଦଗାଡ଼ି ଭଡ଼ା କଲେ । ମାତ୍ର ଯେତେବେଳେ ଗାଡ଼ିବାଲା ଜାଣିଲା ଯେ ସେମାନେ ଅସ୍ପୃଶ୍ୟ ପିଲା ସେମାନଙ୍କୁ ଭିଡ଼ି ଘୋଷାଡ଼ି ରାସ୍ତାକୁ ଫିଙ୍ଗିଦେଲା । ତାର ଗାଡ଼ି ଓ ବଳଦ ମାରା କରିଦେଲେ ବୋଲି ଭୀଷଣ ଗାଳିଦେଲା । ପିଲାମାନେ ତାକୁ ବହୁତ ବୁଝାଇ ଦୁଇଗୁଣ ଭଡ଼ା ଦେଇ ତାର କ୍ରୋଧ ଶାନ୍ତ କଲେ । ତାପରେ ଭୀମଙ୍କର ବଡ଼ଭାଇ ଗାଡ଼ି ଚଳାଇଲେ ଓ ଗାଡ଼ି ବାଲା ଚାଲି ଚାଲି ଗାଡ଼ି ପଛେପଛେ ଗଲା । ସେମାନେ ଅଛୁଆଁ ହୋଇଥିବାରୁ ବାଟରେ ପାଣି ଟିକିଏ ପିଇବାକୁ ପାଇଲେ ନାହିଁ । ଏହା ଥିଲା କୋମଳମତି ବାଳକ ଭୀମ ପ୍ରତି ଅସ୍ପୃଶ୍ୟତାର ପ୍ରଥମ ଶକ୍ତ ଆଘାତ ।

ସେ ଅସ୍ପୃଶ୍ୟ ହୋଇଥିବାରୁ ତାଙ୍କୁ ଅଲଗା ସ୍କୁଲ ଘରର ଏକ କୋଣରେ ବସିବାକୁ ପଡୁଥିଲା । ଶିକ୍ଷକମାନେ ତାଙ୍କୁ ଛୁଉଁ ନଥିଲେ । ଛୁଇଁ କରି ତାଙ୍କର ନୋଟ ବା ଖାତା ଦେଖୁ ନଥିଲେ । ତାଙ୍କୁ ଶୋଷ ହେଲେ ଗ୍ଲାସରେ ପାଣି ପିଇ ପାରୁ ନଥିଲେ । ସେ ପାଟି ଆଁ କରୁଥିଲେ ଓ ଜଣେ ତାଙ୍କର ପାଟିରେ ଢାଳି ଦେଉଥିଲେ । ସବର୍ଣ୍ଣପିଲାମାନେ ସେମାନଙ୍କର

ଇଳଖିଆ ଡବା କୋଠରୀର କଳାପଟା ପଛପଟରେ ରଖୁଥିଲେ । ଥରେ ଶିକ୍ଷକ ବାଳକ ଭୀମକୁ କଳାପଟାରେ ଲେଖିବାକୁ ଡାକିଲେ । ଭୀମ କଳାପଟା ନିକଟକୁ ଯିବାକୁ ଉଦ୍ୟତ ହେବା ମାତ୍ରେ ଅନ୍ୟମାନେ ଦଉଡ଼ିଯାଇ କଳାପଟା ପଛେ ଥିବା ସେମାନଙ୍କର ଇଳଖିଆ ଡବାଗୁଡ଼ିକ ନେଇଗଲେ । କାରଣ ଭୀମ ତାହା ଛୁଇଁ ଦେଲେ ଅଶୁଦ୍ଧ ହୋଇଯିବ । ସେ ଅସ୍ପୃଶ୍ୟ ହୋଇଥିବାରୁ କୌଣସି ଭଣ୍ଡାରୀ ତାଙ୍କର ବାଳ କାଟିଲେ ନାହିଁ । ତେଣୁ ତାଙ୍କର ଭଉଣୀ ବାଳ କାଟି ଦେଉଥିଲେ । ପିଲାଦିନର ଏ ସବୁ ତିକ୍ତ ଅନୁଭୂତି ବାଳକ ଭୀମ ମନରେ ଗଭୀର ଆଲୋଡ଼ନ ସୃଷ୍ଟି କରିଥିଲା ।

ଭୀମରାଓ ହାଇସ୍କୁଲରେ ସଂସ୍କୃତ ପଢ଼ିବାକୁ ଚାହୁଁଥିଲେ । କିନ୍ତୁ ସେହି ସମୟରେ ଅସ୍ପୃଶ୍ୟମାନଙ୍କୁ ସଂସ୍କୃତ ପଢ଼ିବା ମନା ଥିଲା ତେଣୁ ସେ ବାଧ ହୋଇ ଦ୍ୱିତୀୟ ଭଷା ରୂପେ ପାରସି ପଢ଼ିଲେ ।

୧୯୦୪ ରେ ଆମ୍ବେଦକର ବମ୍ବେର ଏଲ୍‌ଫିନଷ୍ଟୋନ ହାଇସ୍କୁଲରେ ଯୋଗ ଦେଲେ । ବହୁ କଷ୍ଟ ଓ ଅସୁବିଧା ଭିତରେ ସେ ୧୯୦୭ରେ ମାଟ୍ରିକ୍ ପାସ୍ କଲେ । ମାଟ୍ରିକ୍ ପାସ କରିବା ପରେ ସେ ୧୭ ବର୍ଷ ବୟସରେ ରମାବାଈ ନାମ୍ନୀ ଏକ ଶାନ୍ତ, ସରଳ ଓ ବୁଦ୍ଧିମତୀ ଝିଅକୁ ବିବାହ କଲେ । ସେତେବେଳେ ରମାବାଈଙ୍କର ବୟସ ହେଉଥିଲା ୯ ବର୍ଷ ।

ଏହା ପରେ ବରୋଦା ମହାରାଜା ରାଓଙ୍କଠାରୁ ମାସିକ ପଚିଶ ଟଙ୍କା ବୃତ୍ତି ପାଇ ଆମ୍ବେଦକର ବମ୍ବେର ଏଲ୍‌ଫିନ୍‌ଷ୍ଟୋନ କଲେଜରେ ନାମ ଲେଖାଇଲେ । ପ୍ରଫେସର ମୂଲର ତାଙ୍କୁ ବହିପତ୍ର ଓ କପଡ଼ାଲତା ସାହଯ୍ୟ କଲେ । ଏହି କଲେଜରେ ହୋଟେଲ ପରିଚାଳକ ଜଣେ ବ୍ରାହ୍ମଣ ଥିଲେ । ସେ ଆମ୍ବେଦକରଙ୍କୁ ଚା କିମ୍ବା ପାଣି ଦେଉ ନଥିଲେ । ଏହିପରି ଅସୁବିଧା ଓ ଅପମାନଜନକ ବ୍ୟବହାରକୁ ସେ କିଛି ମନେ ନ କରି ପାଠ ପଢ଼ାରେ ମନନିବେଶ କଲେ । ଇଂରାଜୀ ଓ ପାରସି ଭାଷା ବିଷୟ ନେଇ ସେ ୧୯୧୨ରେ ବି.ଏ. ପାସ୍ କଲେ ।

ବି.ଏ. ପାସ କରିବା ପରେ ଆମ୍ବେଦକର ବରୋଦା ରାଜ୍ୟ ସେନାବାହିନୀରେ ଏକ ଅଫିସର ପଦବୀରେ ଯୋଗଦେଲେ । ସେହି ସମୟରେ ବରୋଦା ରାଜ୍ୟର ସମସ୍ତ ଉଚ୍ଚ ପଦପଦବୀ ହିନ୍ଦୁ ଉଚ୍ଚଜାତିର ରକ୍ଷଣଶୀଳ ଲୋକମାନଙ୍କଦ୍ୱାରା ଅଧିକୃତ ହୋଇଥିଲା । ଆମ୍ବେଦକର ଛୁଇଁ ଦେଲେ ସେମାନେ ଅପବିତ୍ର ହୋଇଯିବେ ଏହି ଭାବନା ଏତେ ପ୍ରବଳ ଥିଲା ଯେ ପିଅନମାନେ ମଧ୍ୟ ତାଙ୍କ ଦେହକୁ ଫାଇଲ ଫିଙ୍ଗି ଦେଉଥିଲେ । ସେ ରହିବାକୁ ଖଣ୍ଡେ ଭଲ ଘର ପାଇଲେ ନାହିଁ । ସାମାଜିକ ଅବସ୍ଥା ଅତି ପ୍ରତିକୂଳ ଓ ଅସହ୍ୟ ହେବାରୁ ମାତ୍ର ୧୫ ଦିନ ପରେ ସେ ଚାକିରି ଛାଡ଼ି ଦେଲେ । ଏହାପରେ ଜୁନ ୪, ୧୯୧୩ରେ ବରୋଦା ରାଜ୍ୟ ସରକାରଙ୍କର ଏକ ଚୁକ୍ତି ସ୍ୱାକ୍ଷର କରି ଉଚ୍ଚ ଶିକ୍ଷାପାଇଁ

ଆମେରିକା ଗଲେ । 'ପ୍ରାଚୀନ ଭାରତୀୟ ବାଣିଜ୍ୟ' ଉପରେ ନିବନ୍ଧ ଲେଖି ସେ ୧୯୧୫ରେ ଆମେରିକାର କଲମ୍ବିଆ ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ଡିଗ୍ରୀ ଲାଭ କଲେ । ୧୯୧୬ରେ ସେହି ବିଶ୍ୱବିଦ୍ୟାଳୟରୁ 'ଭାରତର ଜାତୀୟ ଲାଭ: ଏକ ଐତିହାସିକ ଓ ବିଶ୍ଳେଷଣାତ୍ମକ ଅଧ୍ୟୟନ' (National Dividend for India : A Historic and Analytical Study) ଉପରେ ଗବେଷଣା ନିବନ୍ଧ ଲେଖି ପି.ଏଚ୍.ଡି. ଡିଗ୍ରୀ ହାସଲ କଲେ । ଏହା ପରେ ୧୯୧୬ରେ ସେ କଲମ୍ବିଆ ବିଶ୍ୱବିଦ୍ୟାଳୟ ଛାଡ଼ି 'ଲଣ୍ଡନ ସ୍କୁଲ ଅଫ୍ ଇକୋନମିକ୍ସ ଏଣ୍ଡ୍ ପୋଲିଟିକେଲ ସାଇନ୍ସ୍'ରେ ଅର୍ଥଶାସ୍ତ୍ର ଅଧ୍ୟୟନ କଲେ । ଲଣ୍ଡନରେ ବର୍ଷେ ରହିବା ପରେ ତାଙ୍କର ଛାତ୍ରବୃତ୍ତି ଶେଷ ହୋଇଯିବାରୁ ସେଠି ପାଠପଢ଼ା ଅସମାପ୍ତ କରି ସ୍ୱଦେଶକୁ ଫେରି ଆସିଲେ ।

୧୯୧୭ ଜୁଲାଇ ମାସରେ ସେ ବରୋଦା ମହାରାଜାଙ୍କର ସାମରିକ ସଚିବ ନିଯୁକ୍ତି ପାଇଲେ । କିନ୍ତୁ ସେ ଅସ୍ପୃଶ୍ୟ ହୋଇଥିବାରୁ ତାଙ୍କୁ ରାଜ୍ୟରେ କେହି ଗ୍ରହଣ କଲେ ନାହିଁ । ରହିବାକୁ କେହି ଘର ବା ହୋଟେଲ ଦେଲେ ନାହିଁ । ଶେଷରେ ଜାତି ପରିଚୟ ନ ଦେଇ ଏକ ପାର୍ସି ହୋଟେଲରେ ରହିଲେ । ଅଫିସରେ କିରାଣୀ ଓ ପିଅନମାନେ ତାଙ୍କ ଟେବୁଲକୁ ଫାଇଲ ଫିଙ୍ଗି ଦେଉଥିଲେ । ଅଫିସରେ ତାଙ୍କୁ ପିଇବାକୁ ପାଣି ମିଳିଲା ନାହିଁ । ସେ ଚୌକିରୁ ଉଠି ଗଲାପରେ ତଳେ ବିଛା ଯାଇଥିବା ଦରିକୁ ମଧ୍ୟ ଧୁଆ ଯାଉଥିଲା । ପାର୍ସି ହୋଟେଲ ବାଲା ତାଙ୍କର ଜାତି ପରିଚୟ ଜାଣିବା ପରେ ତାଙ୍କୁ ହୋଟେଲରୁ ତଡ଼ିଦେଲା । ଏପରି ଅସୁବିଧା ଓ ନିର୍ଯ୍ୟାତନା ବିଷୟ ସେ ବରୋଦ ମହାରାଜାଙ୍କୁ ଜଣାଇଲେ । ମହାରାଜା ମନ୍ତ୍ରୀଙ୍କୁ କହିଲେ ତାଙ୍କର ରହିବାର ବ୍ୟବସ୍ଥା କରିବାକୁ । ମନ୍ତ୍ରୀ ନିଜର ଅସହାୟତା ପ୍ରକାଶ କଲେ । ଏପରି ଅବସ୍ଥାରେ ସେ ଭୋକ ଶୋଷରେ ବୁଲିବୁଲି ଦିନେ ଏକ ଗଛମୂଳେ ବସି ବହୁତ କାନ୍ଦିଲେ । ଏ ତ ହେଉଛି ହିନ୍ଦୁ ସମାଜରେ ଏକ ଅସ୍ପୃଶ୍ୟର ଦଶା ।

ବରୋଦାରେ ସବର୍ଣ୍ଣ ହିନ୍ଦୁମାନଙ୍କଠାରୁ ଏପରି ଅପମାନଜନକ ବ୍ୟବହାର ପାଇ ସେ ବରୋଦା ଛାଡ଼ିବାକୁ ବାଧ୍ୟ ହେଲେ । ଅର୍ଥ ନେଇ ଅତିଥି କରିବାକୁ ବରୋଦାରେ ଜଣେ ପ୍ରଫେସର ତାଙ୍କୁ ନିମନ୍ତ୍ରଣ କରିଥିଲେ । କିନ୍ତୁ ପରେ ସେ ମଧ୍ୟ ନିମନ୍ତ୍ରଣ ପ୍ରତ୍ୟାହାର କରିନେଲେ । ସେ ନଭେମ୍ବର ୧୯୧୭ ରେ ବରୋଦା ଛାଡ଼ି ବମ୍ବେ ଆସିଲେ । ବ୍ୟବସାୟ ସମ୍ବନ୍ଧରେ ପରାମର୍ଶ ଦେବାପାଇଁ ସେ ବମ୍ବେରେ ଏକ ଅଫିସ୍ ଖୋଲିଲେ । କିନ୍ତୁ ସେ ଅସ୍ପୃଶ୍ୟ ହୋଇଥିବାରୁ ଲୋକେ ତାଙ୍କ ନିକଟକୁ ପରାମର୍ଶ ନେବାକୁ ଆସିଲେ ନାହିଁ । ୧୯୧୮ ନଭେମ୍ବର ମାସରେ ସେ ବମ୍ବେର ସିଡ଼୍ହାମ୍ କଲେଜରେ ରାଜନୈତିକ ଅର୍ଥଶାସ୍ତ୍ର ପଢ଼ାଇବାପାଇଁ ଅଧ୍ୟାପକ ଭାବେ ନିଯୁକ୍ତି ପାଇଲେ । କିନ୍ତୁ ସେଠି ମଧ୍ୟ ତାଙ୍କ ପ୍ରତି ସାମାଜିକ ବ୍ୟବହାରରେ କିଛି ପରିବର୍ତ୍ତନ ହେଲା ନାହିଁ ।

ଉଚ୍ଚ ଜାତିର ଅଧ୍ୟାପକମାନେ ଅଫିସ୍‌ରେ ପାଣିପାତ୍ରରୁ ତାଙ୍କୁ ପାଣି ପିଇବାକୁ ମନା କଲେ । ମାର୍ଚ୍ଚ ୧୯୨୦ରେ ସେ ଏହି ଅଧ୍ୟାପକ ଚାକିରିରୁ ଇସ୍ତଫା ଦେଇ ଅର୍ଥଶାସ୍ତ୍ର ଓ ଆଇନ ପଢ଼ିବାପାଇଁ ଲଣ୍ଡନ ଯାତ୍ରା କଲେ । କୋହ୍ଲାପୁର ମହାରାଜା ସାହୁ ଛତ୍ରପତି ଏ ଦିଗରେ ତାଙ୍କୁ ସାହାଯ୍ୟ କଲେ । ୧୯୨୧ରେ ସେ 'ପ୍ରୋଭିନସିଏଲ ଡିସେନ୍‌ଟ୍ରାଲାଇଜେସନ ଅଫ୍ ଇମ୍‌ପେରିଏଲ ଫାଇନାନ୍‌ସ ଇନ୍ ବ୍ରିଟିଶ୍ ଇଣ୍ଡିଆ' ଉପରେ ନିବନ୍ଧ ଲେଖି 'ଲଣ୍ଡନ ସ୍କୁଲ ଅଫ୍ ଇକୋନୋମିକ୍ସ ଏଣ୍ଡ ପୋଲିଟିକେଲ ସାଇନ୍‌ସ' ରୁ ଏମ୍.ଏସ୍‌ସି. ଡିଗ୍ରୀ ଲାଭ କଲେ । ସେ ଲଣ୍ଡନରେ ଆଇନ ଶିକ୍ଷା ସମାପ୍ତ କରି ୧୯୨୩ ଏପ୍ରିଲ ମାସରେ ବମ୍ବେ ଫେରି ଆସିଲେ ।

**ସାମାଜିକ ଆନ୍ଦୋଳନ**

ଆମ୍ବେଦକର ୧୯୩୦ ଜୁନ୍ ମାସରେ ବମ୍ବେଠାରେ ଓକିଲାତି ଆରମ୍ଭ କଲେ । ସେ ଅସ୍ପୃଶ୍ୟ ହୋଇଥିବାରୁ ମହକିଲମାନେ ବେଶୀ ଆସିଲେ ନାହିଁ । ଏବେ ଆମ୍ବେଦକର ଅସ୍ପୃଶ୍ୟତା ବିରୁଦ୍ଧରେ ଆନ୍ଦୋଳନ କରିବାକୁ ପ୍ରସ୍ତୁତ ହେଲେ । ୧୯୨୪ ମାର୍ଚ୍ଚ ମାସରେ ବମ୍ବେଠାରେ ଏକ ବିରାଟ ସଭା ଡାକିଲେ । ଏହି ସଭାର ନିଷ୍ପତ୍ତି ଅନୁସାରେ 'ବହିଷ୍କୃତ ହିତକାରିଣୀ ସଭା' ନାମରେ ଏକ ଅନୁଷ୍ଠାନ ଗଢ଼ିଲେ । ଦଳିମାନଙ୍କ ମଧ୍ୟରେ ଶିକ୍ଷାର ପ୍ରସାର ଓ ସେମାନଙ୍କ ଆର୍ଥିକ ବିକାଶ ଏହି ଅନୁଷ୍ଠାନର ମୁଖ୍ୟ ଲକ୍ଷ୍ୟ ଥିଲା । ଏହାରି ମାଧ୍ୟମରେ ଛାତ୍ରାବାସ ନିର୍ମାଣ କରାଯାଇ ଅଛୁତ ଛାତ୍ରମାନଙ୍କୁ ପାଠପଢ଼ା ହେଲା ।

ଡ. ଆମ୍ବେଦକର ବମ୍ବେ ବିଧାନସଭାକୁ ମନୋନୀତ ହେଲେ । ଜଣେ ବିଧାୟକ ହିସାବରେ ଅଛୁଆମାନଙ୍କପାଇଁ ସେ ବହୁତ କଲ୍ୟାଣକର କାର୍ଯ୍ୟ କରିବାକୁ ସକ୍ଷମ ହେଲେ । ଧୀରେଧୀରେ ସେ ସାରା ଭାରତରେ ଜଣେ ଦଳିତ ନେତା ହିସାବରେ ପରିଚିତ ହେଲେ । ୧୯୨୭ ମାର୍ଚ୍ଚ ୧୯ ଓ ୨୦ ତାରିଖ ଦିନ ମାହଦଠାରେ ଅସ୍ପୃଶ୍ୟମାନଙ୍କର ଏକ ବିରାଟ ସମ୍ମିଳନୀ ଡ.ଆମ୍ବେଦକରଙ୍କର ପୌରୋହିତ୍ୟରେ ଅନୁଷ୍ଠିତ ହୋଇଥିଲା । ଏଥିରେ ପ୍ରାୟ ଦଶ ହଜାର ପ୍ରତିନିଧି ଯୋଗ ଦେଇଥିଲେ । ଉକ୍ତ ସମ୍ମିଳନୀରେ ମାହଦ ମ୍ୟୁନସିପାଲଟିର ଚୌଦ୍ୱାର ପୋଖରୀକୁ ଅସ୍ପୃଶ୍ୟମାନଙ୍କର ବ୍ୟବହାରପାଇଁ ଉନ୍ମୁକ୍ତ କରିବାକୁ ତିନିବର୍ଷ ପୂର୍ବରୁ ମ୍ୟୁନସିପାଲଟିରେ ପ୍ରସ୍ତାବ ଗୃହୀତ ହୋଇଥିଲେ ମଧ୍ୟ ସବର୍ଣ୍ଣ ଲୋକେ ତାହା କରାଇ ଦେଉ ନଥିବାରୁ କ୍ଷୋଭ ପ୍ରକାଶ କରାଗଲା । ଏଣିକି ଆନ୍ଦୋଳନ ଜରିଆରେ ଦଳିତମାନେ ତାଙ୍କର ଅଧିକାର ସାବ୍ୟସ୍ତ କରିବା ସ୍ଥିର ହେଲା । ସମ୍ମିଳନୀ ପରେ ଡଃ. ଆମ୍ବେଦକରଙ୍କର ନେତୃତ୍ୱରେ ୧୦ ହଜାର ଲୋକ ଏକ ଶୋଭାଯାତ୍ରାରେ ଚୌଦ୍ୱାର ପୋଖରୀକୁ ଗଲେ ସେଠୁ ପାଣି ପିଇବାପାଇଁ । ଡଃ. ଆମ୍ବେଦକର ପ୍ରଥମେ ପୁଷ୍କରିଣୀ ମଧ୍ୟକୁ ପ୍ରବେଶ କରି

ଆଞ୍ଜୁଳା ଭାରି ଜଳପାନ କର ନିଜର ନିର୍ଭରତାର ପରିଚୟ ଦେଲେ । ତାଙ୍କପରେ ଅନ୍ୟ ଅସ୍ପୃଶ୍ୟ ଭାଇମାନେ ପୋଖରୀରୁ ଜଳପାନ କଲେ ।

ମାହଦଠାରେ ୧୯୨୭ ଡିସେମ୍ବର ୨୫ ତାରିଖ ଦିନ ଏକ ସତ୍ୟାଗ୍ରହ ସମ୍ମିଳନୀ ହେଲା । ବମ୍ବେରୁ ୨ଶହ ପ୍ରତିନିଧି ନେଇ ଆମ୍ବେଦକର ଏହି ସମ୍ମିଳନୀରେ ଯୋଗ ଦେଲେ । ଏହି ସମ୍ମିଳିନୀରେ ଆମ୍ବେଦକର ହିନ୍ଦୁ ସମାଜର ବର୍ଣ୍ଣ ବ୍ୟବସ୍ଥାକୁ ସାମାଜିକ ବିଷମତାର ମୂଳକାରଣ ବୋଲି ବର୍ଣ୍ଣନା କଲେ । ସମତା ଓ ଜାତିବାଦର ଉଚ୍ଛେଦ ନୀତିରେ ସେ ହିନ୍ଦୁ ସମାଜକୁ ସଙ୍ଗଠିତ କରିବାକୁ ଆହ୍ୱାନ କଲେ । ତାଙ୍କ ମତରେ ମନୁସ୍ମୃତି ଅସ୍ପୃଶ୍ୟମାନଙ୍କର ସାମାଜିକ, ରାଜନୈତିକ, ଆର୍ଥିକ ଓ ଧାର୍ମିକ ଦାସତ୍ୱକୁ ଦୃଢ଼ୀଭୂତ କରୁଥିଲେ । ତେଣୁ ଏହି ସମ୍ମିଳନୀରେ ମନୁସ୍ମୃତିକୁ ପୋଡ଼ିବାପାଇଁ ଏକ ପ୍ରସ୍ତାବ ଗୃହୀତ ହେଲା । ସେହି ୧୯୨୭ ମସିହା ଡିସେମ୍ବର ୨୫ ତାରିଖ ଦିନ ରାତି ୯ଟା ବେଳେ ସଭାସ୍ଥଳରେ ଆଗରୁ ତିଆରି ହୋଇଥିବା ଏକ ବେଦୀରେ ମନୁସ୍ମୃତି ରଖି ଅସ୍ପୃଶ୍ୟ ସମାଜର କେତେଜଣ ସାଧୁଲୋକଙ୍କଦ୍ୱାରା ବିଧିପୂର୍ବକ ଏହାର ଦାହ ସଂସ୍କାର କରାଗଲା ।

ଉପରୋକ୍ତ ସମ୍ମିଳନୀରେ ଆଉ ଏକ ପ୍ରସ୍ତାବରେ ଦାବୀ କରାଗଲା ଯେ ମନ୍ଦିରରେ ପୂଜାପାଠ କରିବାପାଇଁ ଗଣତାନ୍ତ୍ରିକ ଭିତ୍ତିରେ ଯେ କୌଣସି ଜାତିର ଉଚ୍ଛୁକ ବ୍ୟକ୍ତିଙ୍କୁ ପୂଜାରୀ ହେବାର ଅଧିକାର ଦିଆଯାଉ । ଆମ୍ବେଦକର ନିଜେ ଏହି ପ୍ରସ୍ତାବ ଆଗତ କରିଥିଲେ ।

'ଭାରତ ସରକାର ୧୯୧୯ ଆଇନ'ର ସଂଶୋଧନପାଇଁ ସାର୍ ଜନ ସାଇମନ ନାମକ ଜଣେ ବିଖ୍ୟାତ ରାଜନୀତିକଙ୍କ ନେତୃତ୍ୱରେ ସାଇମନ କମିଶନ ଭାରତକୁ ଆସି ୧୯୨୮ ଫେବୃୟାରୀ ୩ ତାରିଖ ଦିନ ବମ୍ବେଠାରେ ପହଞ୍ଚିଲେ । ସାଇମନ କମିଶନରେ କୌଣସି ଭାରତୀୟ ସଦସ୍ୟ ନଥିବାରୁ କଂଗ୍ରେସ ଏହାକୁ ବିରୋଧ କରୁଥିଲା । ତେଣୁ ଲୋକ ସଙ୍ଗଠନ କରାଯାଇ 'କମିଶନ'କୁ ବମ୍ବେରେ କଳା ପତାକା ପ୍ରଦର୍ଶନ କରାଗଲା । ଏହି ସମୟରେ ଆମ୍ବେଦକର ଓକିଲାତି କରୁଥିଲେ । ଏହା ସଙ୍ଗେ ବମ୍ବେ ସରକାରୀ ଆଇନ୍ କଲେଜରେ ଅଧ୍ୟାପକ ମଧ ଥିଲେ । ସାଇମନ କମିଶନକୁ ସମର୍ଥନ କରିବାକୁ କେନ୍ଦ୍ର ସରକାର ଗୋଟିଏ କମିଟୀ ଗଠନ କରିଥାଆନ୍ତି । ପ୍ରତ୍ୟେକ ପ୍ରାଦେଶିକ ବିଧାନ ପରିଷଦ ମଧ୍ୟ ଗୋଟିଏ ଗୋଟିଏ କମିଟୀ ଗଠନ କରିଥାଆନ୍ତି । ବମ୍ବେ ବିଧାନ ପରିଷଦରୁ ଯେଉଁ କମିଟୀ ଗଠନ ହୋଇଥିଲା ସେହି କମିଟୀରେ ଡଃ. ଆମ୍ବେଦକର ଜଣେ ସଭ୍ୟ ଥିଲେ । ସାରା ଭାରତ ସାଇମନ କମିଶନକୁ ବାସନ୍ଦ କରୁଥିବା ବେଳେ ଡଃ. ଆମ୍ବେଦକର ଏହାକୁ ସହଯୋଗ କରୁଥିବାରୁ ସେ କଠୋର ଭାବେ ସମାଲୋଚିତ ହେଲେ । ଏପରିକି ଆଇନ୍

କଲେଜର ଛାତ୍ରମାନେ ତାଙ୍କର ଏହି କାମକୁ ବିରୋଧ କରି ତାଙ୍କ କ୍ଲାସ୍‌ରେ ଯୋଗ ଦେଇ ନଥିଲେ । ଆମ୍ବେଦକର ବହିଷ୍କୃତ ହିତକାରିଣୀ ସଭା ତରଫରୁ ସାଇମନ କମିଶନଠାରେ ଏକ ସ୍ମାରକ ପତ୍ର ଦାଖଲ କରିଥିଲେ । ଏଥିରେ ସଂଯୁକ୍ତ ନିର୍ବାଚନ ମଣ୍ଡଳୀ ବମ୍ବେ କାଉନ୍‌ସିଲରେ ୧୪୦ ସ୍ଥାନ ମଧ୍ୟରୁ ୨୨ଟି ସ୍ଥାନ ଦଳିତମାନଙ୍କପାଇଁ ଏବଂ କ୍ୟାବିନେଟ୍‌ରେ ମନ୍ତ୍ରୀ ଆସନ ମଧ୍ୟ ବହିଷ୍କୃତ ହିତକାରିଣୀ ସଭା ତରଫରୁ ଦାବୀ କରାଗଲା ।

ମହାତ୍ମାଗାନ୍ଧୀ ମାର୍ଚ୍ଚ ୧୨, ୧୯୩୦ ରେ ଲବଣ ସତ୍ୟାଗ୍ରହ ଆରମ୍ଭ କଲେ । ଏହାର ୧୦ ଦିନ ପୂର୍ବରୁ ଆମ୍ବେଦକର ମାର୍ଚ୍ଚ ୨ ତାରିଖ ଦିନ ନାସିକାଠାରେ ମନ୍ଦିର ପ୍ରବେଶ ସତ୍ୟାଗ୍ରହ ଆରମ୍ଭ କରିଥିଲେ । ସତ୍ୟାଗ୍ରହ କମିଟୀର ଆହ୍ୱାନରେ ଉକ୍ତଦିନ ୧୫ ହଜାର ପ୍ରତିନିଧି ନାସିକାର ଦଳିତ ବସ୍ତିରେ ନିର୍ମିତ ସଭାମଣ୍ଡପ ନିକଟରେ ପହଞ୍ଚିଲେ । ଦିବା ୧୦ଟାରେ ଆମ୍ବେଦକରଙ୍କର ସଭାପତିତ୍ୱରେ ସମ୍ମିଳନୀ ଆରମ୍ଭ ହେଲା । ଅପରାହ୍ନ ୩ଟା ରେ ପ୍ରତିନିଧିମାନେ ଚାରି ଦଳରେ ବିଭକ୍ତ ହୋଇ ନାସିକାର କାଳାରାମ ମନ୍ଦିର ପଟେ ଶୋଭାଯାତ୍ରାରେ ଚାଲିଲେ । ଶୋଭାଯାତ୍ରା ମନ୍ଦିର ପାଖରେ ପହଞ୍ଚିଲା ବେଳକୁ ଦ୍ୱାରୀମାନେ ମନ୍ଦିରର ସମସ୍ତ ଦ୍ୱାର ବନ୍ଦ କରିଦେଲେ । ଆନ୍ଦୋଳନକାରୀଙ୍କର ଏକ ସଭା ହୋଇ ସ୍ଥିର ହେଲା ଯେ ମନ୍ଦିର ଖୋଲା ନ ହେବାଯାଏ ଆନ୍ଦୋଳନ ଚାଲିବ । ମାର୍ଚ୍ଚ ୩ ତାରିଖ ସକାଳୁ ସ୍ତ୍ରୀ-ପୁରୁଷ ନେତା ସମସ୍ତେ ମନ୍ଦିର ସମ୍ମୁଖରେ ବସି ରହିଲେ । ଏକ ମାସ ଯାଏ ସତ୍ୟାଗ୍ରହ ଚାଲିଲା । ଅବଶେଷରେ ହିନ୍ଦୁମାନେ ମନ୍ଦିରକୁ ଏକ ବର୍ଷକାଳ ବନ୍ଦ କରିଦେଲେ ।

ଭାରତୀୟ ଲୋକମାନଙ୍କର ଦାବୀ ପୂରଣ ନିମନ୍ତେ ଏକ ସମ୍ବିଧାନ ପ୍ରଣୟନ କରିବାକୁ ବ୍ରିଟିଶ୍ ସରକାର ୧୯୩୦ ନଭେମ୍ବର ମାସରେ ଲଣ୍ଡନ୍‌ଠାରେ ପ୍ରଥମ ଗୋଲଟେବୁଲ୍ ବୈଠକ ଡାକିଲେ । ଭାରତୀୟ ଜାତୀୟ କଂଗ୍ରେସ ଏହି ବୈଠକରେ ଦଳିତ ଶ୍ରେଣୀର ପ୍ରତିନିଧିତ୍ୱ କଲେ । ଆଲୋଚନାରେ ଅଂଶ ଗ୍ରହଣ କରି ଆମ୍ବେଦକର କହିଲେ ଯେ ଭାରତରେ ଏକ ପଞ୍ଚମାଂଶ ଲୋକ (ଦଳିତମାନେ) କ୍ରିତଦାସ ପରି ଅଛନ୍ତି । ସେମାନଙ୍କର ଦାବୀ ହେଉଛି ବ୍ରିଟିଶ୍ ସରକାର ବଦଳରେ ଲୋକଙ୍କପାଇଁ ଲୋକଙ୍କଦ୍ୱାରା ଗଠିତ ଗୋଟିଏ ଲୋକ ସରକାର । ସେ ଦଳିତମାନଙ୍କୁ ନିର୍ବାଚନ ଉଦ୍ଦେଶ୍ୟରେ ଏକ ସ୍ୱତନ୍ତ୍ର ସଂପ୍ରଦାୟ ଧରି ନେବାକୁ ଦାବୀକଲେ । ବିଲାତରେ ଥିବାବେଳେ ଆମ୍ବେଦକର ବମ୍ବେ ବିଧାନପରିଷଦକୁ ସଭ୍ୟରୂପେ ମନୋନୀତ ହୋଇଥିବା ଖବର ପାଇଲେ । ଗୋଲଟେବୁଲ୍ ବୈଠକରୁ ଫେରି ସେ ୧୯୩୧ ଫେବୃୟାରୀ ୨୭ ତାରିଖରେ ବମ୍ବେଠାରେ ପହଞ୍ଚିଲେ । ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦିଆଗଲା ।

## ଗାନ୍ଧିଜୀଙ୍କ ସହ ବିବାଦ

୧୯୩୧ ଅଗଷ୍ଟ ୬ ତାରିଖ ଦିନ ଗାନ୍ଧିଜୀ ଡକ୍ଟର ଆମ୍ବେଦକରଙ୍କୁ ଚିଠି ଲେଖିଲେ ତାଙ୍କ ସହିତ ସାକ୍ଷାତ କରିବାକୁ । ସେ ସମୟ ଦେଇପାରିବେ କି ବୋଲି ଗାନ୍ଧିଜୀ ଚିଠିରେ ପଚାରିଥିଲେ । ସେଥିରେ ଗାନ୍ଧିଜୀ ମଧ୍ୟ ଉଲ୍ଲେଖ କରିଥିଲେ ଯେ ଯଦି ତାଙ୍କୁ (ଆମ୍ବେଦକରଙ୍କୁ) ଆସିବାରେ ଅସୁବିଧା ଥାଏ ଜଣାଇଲେ ଗାନ୍ଧିଜୀ ନିଜେ ସେ ଦିନ ସନ୍ଧ୍ୟା ୮ଟାରେ ଯାଇ ତାଙ୍କୁ ସାକ୍ଷାତ କରିବେ । କିନ୍ତୁ ତାଙ୍କର ଜ୍ୱର ବଢ଼ିଯିବାରୁ ସେଦିନ ସାକ୍ଷାତ ହୋଇ ପାରିଲାନାହିଁ । ଅଗଷ୍ଟ ୧୪ ତାରିଖ ଦିନ ଦିବା ୨ ଘଣ୍ଟା ସମୟରେ ଆମ୍ବେଦକର ବମ୍ବେର ମାଲବାର ପାହାଡ଼ରେ ଥିବା ମନି ଭବନକୁ ଯାଇ ଗାନ୍ଧିଜୀଙ୍କୁ ସାକ୍ଷାତ କଲେ । ଏହା ଗାନ୍ଧୀ ଆମ୍ବେଦକରଙ୍କର ପ୍ରଥମ ସାକ୍ଷାତ ଥିଲା । ଗାନ୍ଧିଜୀ କିପରି ତାଙ୍କର ପିଲାଦିନରୁ ଅସ୍ପୃଶ୍ୟମାନଙ୍କ ବିଷୟରେ ଚିନ୍ତା କରୁଛନ୍ତି, କେତେ କଷ୍ଟରେ ସେମାନଙ୍କର ସମସ୍ୟା କଂଗ୍ରେସ କାର୍ଯ୍ୟକ୍ରମରେ ପୁରାଇଛନ୍ତି, ଅସ୍ପୃଶ୍ୟମାନଙ୍କର ଉନ୍ନତିପାଇଁ କଂଗ୍ରେସ କଣ ସବୁ କରିଛି ଇତ୍ୟାଦି କହିଲେ । ଏହାରି ଉତ୍ତରରେ ଆମ୍ବେଦକର କହିଲେ ଯେ ଅସ୍ପୃଶ୍ୟମାନଙ୍କ ଉନ୍ନତି ପାଇଁ କଂଗ୍ରେସର ଆନ୍ତରିକତା ନାହିଁ । ଯଦି ଆନ୍ତରିକତା ଥାଆନ୍ତା ତେବେ କଂଗ୍ରେସ ସଭ୍ୟ ହେବା ପାଇଁ ଖଦୀ ପିନ୍ଧିବା ପରି ଅସ୍ପୃଶ୍ୟତା ନିବାରଣ ଏକ ସର୍ତ୍ତ ହୋଇଥାଆନ୍ତା । କୌଣସି ବ୍ୟକ୍ତି ଯିଏ ଅସ୍ପୃଶ୍ୟ ଛାତ୍ରଙ୍କୁ ସାହାଯ୍ୟ କରି ନ ଥିବେ କିମ୍ବା ଅସ୍ପୃଶ୍ୟ ବ୍ୟକ୍ତି ଘରେ ସପ୍ତାହକ ଅନ୍ତତଃ ଥରେ ଖାଉ ନ ଥିବେ ସେମାନେ କଂଗ୍ରେସର ସଭ୍ୟ ହୋଇ ପାରୁ ନଥାଆନ୍ତେ । ଆମ୍ବେଦକର କହିଲେ ଯେ କଂଗ୍ରେସବାଲା ତାଙ୍କ ଆନ୍ଦୋଳନକୁ ବିରୋଧ କରି ତାଙ୍କୁ ବିଶ୍ୱାସଘାତକ ବୋଲି କହୁଛନ୍ତି । ସେ ଉତ୍ତେଜିତ ହୋଇ କହିଲେ, "ଗାନ୍ଧିଜୀ! ମୋର ନିଜ ଦେଶ ନାହିଁ ।" ଗାନ୍ଧିଜୀ କହିଲେ "ନା ନା, ତୁମର ନିଜ ଦେଶ ଅଛି । ଗୋଲଟେବୁଲ୍ ବୈଠକରେ ତୁମେ ଯାହା କହିଲ ସେଥିରୁ ଜଣାପଡ଼ିଲା ଯେ ତୁମେ ଜଣେ ଦେଶ ପ୍ରେମୀ ।" ଆମ୍ବେଦକର କହିଲେ, "ମୁଁ ପୁଣି ଥରେ କହୁଛି ମୋର ଦେଶ ନାହିଁ ।

ମୁଁ କିପରି ଏହି ଦେଶକୁ ନିଜର ଦେଶ କହିବି- "ଯେଉଁଠାରେ ଆମ୍ଭଙ୍କୁ ବିରାଡ଼ି ଓ କୁକୁର ଠାରୁ ବି ହୀନ ଦୃଷ୍ଟିରେ ଦେଖାଯାଏ । ଯେଉଁଠାରେ ଆମକୁ ପାଣି ଟିକିଏ ପିଇବାକୁ ମିଳେ ନାହିଁ ? ଆତ୍ମମର୍ଯ୍ୟଦା ଥିବା କୌଣସି ଅଛୁତ ଏ ଦେଶପାଇଁ ଗର୍ବ ଅନୁଭବ କରି ପାରିବ ନାହିଁ ।" ଆମ୍ବେଦକର କହିଲେ ସମସ୍ତେ ଜାଣନ୍ତି ମୁସଲମାନ ଓ ଶିଖମାନେ ଅଛୁତମାନଙ୍କଠାରୁ ସାମାଜିକ, ରାଜନୈତିକ ଓ ଆର୍ଥିକ ଦୃଷ୍ଟିରୁ ବେଶ୍ ଆଗୁଆ । ପ୍ରଥମ ଗୋଲଟେବୁଲ୍ ବୈଠକରେ ମୁସଲମାନମାନଙ୍କୁ ରାଜନୈତିକ ସ୍ୱୀକୃତି ଦିଆଗଲା । କଂଗ୍ରେସ ସେମାନଙ୍କର ଦାବୀକୁ ସ୍ୱୀକାର କରୁଛି । ଅଛୁତମାନଙ୍କୁ ମଧ୍ୟ ରାଜନୈତିକ ଅଧିକାର ଏହି

ବୈଠକ ସ୍ୱୀକୃତି ଦେଇଛି । ତାହା ଆମପାଇଁ ମଙ୍ଗଳକର । ଏଥିରେ ଗାନ୍ଧୀଙ୍କର ମତ କଣ ବୋଲି ଆମ୍ବେଦକର ପ୍ରଶ୍ନ କଲେ । ଗାନ୍ଧିଜୀ କହିଲେ ଯେ ରାଜନୈତିକ ଭାବରେ ସେ ଅସ୍ପୃଶ୍ୟମାନଙ୍କୁ ହିନ୍ଦୁମାନଙ୍କଠାରୁ ଅଲଗା କରିବାକୁ ବିରୋଧ କରନ୍ତି । ଆମ୍ବେଦକର ଗାନ୍ଧିଜୀଙ୍କର ଏହି ରୋକ୍‌ଠୋକ୍ ମତ ପାଇଁ ଧନ୍ୟବାଦ ଦେଇ ସେହି ସ୍ଥାନ ଛାଡ଼ି ଚାଲିଗଲେ ।

ଡଃ. ଆମ୍ବେଦକର ଗାନ୍ଧିଜୀଙ୍କଠାରୁ ଫେରି ଦ୍ୱିତୀୟ ଗୋଲଟେବୁଲ୍ ବୈଠକରେ ଯୋଗଦାନପାଇଁ ବିଲାତ ଯିବା ପୂର୍ବରୁ ଦଳିତମାନଙ୍କର ଏକ ବିଦାୟକାଳୀନ ସଭାରେ କହିଲେ- 'ଗୋଲଟେବୁଲ୍ ବୈଠକରେ ୧୨୫ ଜଣ ସଭ୍ୟଙ୍କ ଭିତରେ ଆମେ ମାତ୍ର ୨ ଜଣ, ମାତ୍ର ନିଶ୍ଚିତ ରୁହ ଯେ ତୁମର ମଙ୍ଗଳପାଇଁ ଆମେ ସେଠାରେ ଝଡ଼ଝଞ୍ଜା ସୃଷ୍ଟି କରିଦେଇ ପାରିବୁ ।' ୧୯୩୧ ମସିହା ଅଗଷ୍ଟ ୧୫ ତାରିଖ ଦିନ ସେ ବିଲାତ ଯାତ୍ରା କଲେ । ଦ୍ୱିତୀୟ ଗୋଲଟେବୁଲ୍ ବୈଠକ ୧୯୩୧ ମସିହା ସେପ୍ଟେମ୍ବର ୭ ତାରିଖରେ ଆରମ୍ଭ ହେଲା । ଏହି ବୈଠକରେ ସେପ୍ଟେମ୍ବର ୧୫ ତାରିଖ ଦିନ ମହାତ୍ମାଗାନ୍ଧୀ ପ୍ରଥମ ଭାଷଣ ଦେଲେ । ସେ ତାଙ୍କର ଭାଷଣରେ କଂଗ୍ରେସ କିପରି ହୁନ୍ଦୁ, ମୁସଲମାନ, ଶିଖ୍, ଦଳିତ, ମହିଳା ଇତ୍ୟାଦି ସମସ୍ତ ଶ୍ରେଣୀର ପ୍ରତିନିଧିତ୍ୱ କରୁଛି, ଯୋର୍ ଦେଇ କହିଲେ । ଅସ୍ପୃଶ୍ୟମାନେ ହିନ୍ଦୁସମାଜର ଅନ୍ତର୍ଗତ ହୋଇଥିବାରୁ ସେମାନଙ୍କର ସ୍ୱତନ୍ତ୍ର ପ୍ରତିନିଧିତ୍ୱ କଥା ବିଚାର କରିବା ଠିକ୍ ହେବ ନାହିଁ ବୋଲି ସେ ମତ ଦେଲେ । ଏହା ଦଳିତମାନଙ୍କ ବିରୁଦ୍ଧରେ ଗାନ୍ଧିଜୀ ଓ କଂଗ୍ରେସର ଯୁଦ୍ଧ ଘୋଷଣା ବୋଲି ଡଃ. ଆମ୍ବେଦକର କହିଲେ । ଦଳିତମାନଙ୍କପାଇଁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ସେ ଦାବୀ କଲେ । ସେପ୍ଟେମ୍ବର ୨୮ ତାରିଖ ଦିନ ସଂଖ୍ୟାନ୍ୟୁନ କମିଟୀ ବୈଠକ ଥିଲା । ଏହି ବୈଠକର ଅବ୍ୟବହିତ ପୂର୍ବରୁ ଗାନ୍ଧିଜୀଙ୍କର ପୁଅ ଦେବଦାସ ଗାନ୍ଧୀ ଆମ୍ବେଦକରଙ୍କୁ ଭେଟି ଗାନ୍ଧୀ ଓ ଆମ୍ବେଦକରଙ୍କର ମଧ୍ୟରେ ଆଲୋଚନାର ବ୍ୟବସ୍ଥା କଲେ । ଉଭୟଙ୍କର କଥାବାର୍ତ୍ତା ହେଲା, ମାତ୍ର ଫଳ କିଛି ହେଲାନାହିଁ । ଦ୍ୱିତୀୟ ଗୋଲଟେବୁଲ୍ ବୈଠକରେ ସାଂପ୍ରଦାୟିକ ପ୍ରଶ୍ନ ନେଇ ବିଭିନ୍ନ ଶ୍ରେଣୀର ନେତୃବୃନ୍ଦଙ୍କ ମଧ୍ୟରେ ସହମତି ପ୍ରକାଶ ନ ପାଇବାରୁ ଏହି ସମସ୍ୟାର ସମାଧାନ ଦାୟିତ୍ୱ ବ୍ରିଟିଶ ପ୍ରଧାନମନ୍ତ୍ରୀ ରାମସେ ମେକ୍ ଡୋନାଲଡ୍‌ଙ୍କୁ ଦିଆଗଲା । ସେ ୧୯୩୨ ଅଗଷ୍ଟ ୧୭ ତାରିଖ ଦିନ ତାଙ୍କର ସାଂପ୍ରଦାୟିକ ନିଷ୍ପତ୍ତି (Communal Award) ଘୋଷଣା କଲେ । ଏହି ନିଷ୍ପତ୍ତିରେ ଦଳିତ ଶ୍ରେଣୀକୁ ଏକ ସଂଖ୍ୟାନ୍ୟୁନ ସଂପ୍ରଦାୟ ଭାବେ ସ୍ୱୀକୃତି ଦେବା ସଙ୍ଗେସଙ୍ଗେ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ଅଧିକାର ଦିଆଗଲା । ହିନ୍ଦୁମାନଙ୍କ ମଧ୍ୟରେ 'ଦଳିତ ସଂପ୍ରଦାୟ' ବା 'ତଫସିଲଭୁକ୍ତ ଜାତି' ନାମରେ ଏକ ସ୍ୱତନ୍ତ୍ର ସଂପ୍ରଦାୟ ସୃଷ୍ଟି କରି କୁଳିନ ହିନ୍ଦୁମାନଙ୍କ ଠାରୁ ସେମାନଙ୍କୁ ବିଚ୍ଛିନ୍ନ କରିଦେବାପାଇଁ ଉଦ୍ୟମ କରାଗଲା । ଗାନ୍ଧିଜୀ ଏହି ନିଷ୍ପତ୍ତିର ତୀବ୍ର ବିରୋଧ କଲେ । ଏହାର ପ୍ରତ୍ୟାହାର ଦାବୀ କରି ୧୯୩୨

ସେପ୍ଟେମ୍ବର ୨୦ ତାରିଖରୁ ଯାରବାଡ଼ା ଜେଲରେ ଆମରଣ ଅନଶନ ଆରମ୍ଭ କଲେ । ବ୍ରିଟିଶ୍ ପ୍ରଧାନମନ୍ତ୍ରୀଙ୍କର ସାଂପ୍ରଦାୟିକ ନିଷ୍ପତ୍ତିରେ ତାଙ୍କର ବିଜୟ ହୋଇଛି ବୋଲି ଆମ୍ବେଦକର ଖୁସୀ ଥିଲେ । ସେ ମହାତ୍ମା ଗାନ୍ଧୀଙ୍କର ଏହି ଅନଶନକୁ ଏକ 'ରାଜନୈତିକ ପ୍ରହସନ' (Political Stunt) ବୋଲି ଅଭିହିତ କଲେ । ଆମ୍ବେଦକରଙ୍କ ଏତାଦୃଶ କାର୍ଯ୍ୟକଳାପ ଯୋଗୁଁ କେହି କେହି ତାଙ୍କୁ ବର୍ବର, ଅମଣିଷ ତ କେହିକେହି ରାକ୍ଷସ, ଦେଶଦ୍ରୋହୀ ବୋଲି ଗାଳି ଦେଲେ । ମାତ୍ର ସେ ଏଥିରେ ବିଚଳିତ ନହୋଇ ନିଜ ନିଷ୍ପତ୍ତିରେ ଅଟଳ ରହିଲେ ।

ଗାନ୍ଧିଜୀଙ୍କର ଅନଶନ ଯୋଗୁଁ ସାରା ଦେଶରେ ହୁଲସ୍ଥୁଲ ସୃଷ୍ଟି ହେଲା । କଂଗ୍ରେସର ତୁଙ୍ଗ ନେତୃବୃନ୍ଦ ବାରମ୍ବାର ଆମ୍ବେଦକରଙ୍କୁ ଭେଟି ଏକ ଆପୋଷ ସମାଧାନର ଉଦ୍ୟମ କଲେ । ଗାନ୍ଧୀ ଓ ଆମ୍ବେଦକରଙ୍କ ମଧ୍ୟରେ ଘନଘନ ଆଲୋଚନା ହେଲା । ଶେଷରେ ସେପ୍ଟେମ୍ବର ୨୪, ୧୯୩୨ ଦିନ ପୁନାଠାରେ ଏକ ଚୁକ୍ତି ସ୍ୱାକ୍ଷରିତ ହେଲା । ଏଥିରେ ଦଳିତ ଶ୍ରେଣୀ ତରଫରୁ ଆମ୍ବେଦକର ଓ କଂଗ୍ରେସ ତରଫରୁ ଗାନ୍ଧୀଜୀଙ୍କ ବ୍ୟତୀତ ଉପସ୍ଥିତ ସମସ୍ତ ମୁଖ୍ୟ ନେତା ସ୍ୱାକ୍ଷର କଲେ । ଏହାକୁ 'ପୁନା ଚୁକ୍ତି' କୁହାଯାଏ । ଏହି ଚୁକ୍ତି ଅନୁସାରେ ଦଳିତମାନଙ୍କପାଇଁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ବ୍ୟବସ୍ଥା ଉଠାଇ ସ୍ୱତନ୍ତ୍ର ସ୍ଥାନ ସଂରକ୍ଷଣ ବ୍ୟବସ୍ଥା ରଖାଗଲା । ସରକାରୀ ନିଷ୍ପତ୍ତିରେ ପ୍ରାଦେଶିକ ଏସେମ୍ବ୍ଲିପାଇଁ ଦଳିତମାନଙ୍କୁ ଦିଆଯାଇଥିବା ୭୧ଟି ସ୍ଥାନ ବଦଳରେ ୧୪୮ଟି ସ୍ଥାନ ଦିଆଗଲା । ଦୁଇଟି ପର୍ଯ୍ୟାୟରେ ନିର୍ବାଚନ ହେବା ସ୍ଥିର ହେଲା । ପ୍ରତ୍ୟେକ ତଫସିଲଭୁକ୍ତ ନିର୍ବାଚନ ମଣ୍ଡଳୀପାଇଁ ସେହି ସଂପ୍ରଦାୟର ଲୋକେ ପ୍ରଥମେ ପ୍ରାରମ୍ଭିକ ନିର୍ବାଚନରେ ଚାରି ଜଣ ସଦସ୍ୟଙ୍କୁ ବାଛିବେ ଏବଂ ତାପରେ ଏହି ଚାରି ଜଣ ସଦସ୍ୟ ସାଧାରଣ ନିର୍ବାଚନରେ ପ୍ରତିଦ୍ୱନ୍ଦିତା କରିବେ । ଏତଦ୍ ବ୍ୟତୀତ କେନ୍ଦ୍ରୀୟ ଏସେମ୍ବ୍ଲିରେ ବ୍ରିଟିଶ ଭାରତ ହିନ୍ଦୁମାନଙ୍କପାଇଁ ଥିବା ଆସନ ମଧ୍ୟରୁ ଶତକଡ଼ା ୧୦ ଭାଗ ଦଳିତମାନଙ୍କୁ ଦିଆଯିବ । ସେପ୍ଟେମ୍ବର ୨୬ ତାରିଖ ଦିନ ବ୍ରିଟିଶ୍ ସରକାର ସାଂପ୍ରଦାୟିକ ନିଷ୍ପତ୍ତିକୁ ରଦ୍ଦ କରି 'ପୁନା ଚୁକ୍ତି'କୁ ଗ୍ରହଣ କରିନେଲେ । ଏହି ସେପ୍ଟେମ୍ବର ୨୬ ତାରିଖ ଦିନ ଗାନ୍ଧୀଜୀ ମଧ୍ୟ ଅନଶନ ଭଙ୍ଗ କଲେ । ଏହାପରେ ଗାନ୍ଧିଜୀ ଅସ୍ପୃଶ୍ୟତା ନିବାରଣ ଦିଗରେ ବିଶେଷ ଉଦ୍ୟମ କରିବାପାଇଁ ତାଙ୍କର ସହକର୍ମୀମାନଙ୍କୁ ନିର୍ଦ୍ଦେଶଦେଲେ ଓ ନିଜେ ଏହାର ନେତୃତ୍ୱ ନେଲେ । ଅସ୍ପୃଶ୍ୟମାନଙ୍କର ମନ୍ଦିର ପ୍ରବେଶ, ସହଭୋଜନ ଇତ୍ୟାଦି କାର୍ଯ୍ୟକ୍ରମ ଜୋରସୋରରେ ଚାଲିଲା । କିନ୍ତୁ ଆମ୍ବେଦକର ଏଥିରେ ଖୁସି ହୋଇ ପାରିଲେ ନାହିଁ । ଯଦିଓ ଏହା ପୂର୍ବରୁ ସେ ନିଜେ ମନ୍ଦିର ପ୍ରବେଶ ସତ୍ୟାଗ୍ରହର ନେତୃତ୍ୱ ନେଉଥିଲେ । ସେ ୧୯୩୨ ସେପ୍ଟେମ୍ବର ୨୮ ତାରିଖ ଦିନ ବମ୍ବେଠାରେ ଦଳିତମାନଙ୍କର ଏକ

ସଭାରେ ଭାଷଣ ଦେଇ କହିଲେ, "ମନ୍ଦିର ପ୍ରବେଶରେ ତୁମ୍ଭମାନଙ୍କର ଉଦ୍ଧାର କରାଯିବ ନାହିଁ । ବରଂ ଆମ ଜୀବନର ସୁଖ ସୁବିଧାପାଇଁ ଆମେ ଆମ ରାଜନୈତିକ ଅଧିକାର ସାବ୍ୟସ୍ତ କରିବା ଦରକାର ।" ଗାନ୍ଧିଜୀ 'ଅସ୍ପୃଶ୍ୟ' ଶବ୍ଦ ବଦଳରେ 'ହରିଜନ' ଶବ୍ଦ ପ୍ରଚଳନ କଲେ । ଏବେବି ଅସ୍ପୃଶ୍ୟତା ନିବାରଣକୁ ତାଙ୍କ କାର୍ଯ୍ୟକ୍ରମରେ ଏକ ମୁଖ୍ୟ ସ୍ଥାନ ଦେବାପାଇଁ ୧୯୩୩ ଫେବୃୟାରୀ ୧୧ ତାରିଖରୁ ଇଂରାଜୀରେ 'ହରିଜନ' ନାମରେ ଏକ ସାପ୍ତାହିକ ପତ୍ରିକା ଆରମ୍ଭ କଲେ । ଏହାର ପ୍ରଥମ ସଂଖ୍ୟାକୁ ଆମ୍ବେଦକର ବାର୍ତ୍ତା ଦେଇ ଲେଖିଲେ 'ଜାତିପ୍ରଥାରୁ ଅସ୍ପୃଶ୍ୟତାର ସୃଷ୍ଟି' ଏହାର ଉତ୍ତରରେ ଗାନ୍ଧିଜୀ ଲେଖିଲେ 'ଅସ୍ପୃଶ୍ୟତା ଜାତିପ୍ରଥାର ସୃଷ୍ଟ ନୁହେଁ ବରଂ ହିନ୍ଦୁ ସମାଜରେ ଥିବା ଉଚ୍ଚନୀଚ ଭେଦଭାବ ବିରୁଦ୍ଧରେ ଲଢ଼େଇ ।' ଆମ୍ବେଦକର ଚାହୁଁଥିଲେ ଜାତିପ୍ରଥାର ମୂଳୋତ୍ପାଟନ, ଗାନ୍ଧୀ ଚାହୁଁଥିଲେ ଅସ୍ପୃଶ୍ୟତା ହଟାଇ ଚାରିବର୍ଣ୍ଣ ବ୍ୟବସ୍ଥାକୁ ପ୍ରତ୍ୟାବର୍ତ୍ତନ ।

ତୃତୀୟ ଗୋଲଟେବୁଲ୍ ବୈଠକରେ ଯୋଗଦାନପାଇଁ ୧୯୩୨ ନେଭେମ୍ବର ୭ ତାରିଖ ଦିନ ଆମ୍ବେଦକର ଇଂଲଣ୍ଡ ଯାତ୍ରାକଲେ । ଏହି ବୈଠକ ନଭେମ୍ବର ୧୭ ତାରିଖରୁ ଡିସେମ୍ବର ୨୪ ତାରିଖ ଯାଏ ଚାଲିଲା । ଏଥିରେ ଭାରତୀୟ କଂଗ୍ରେସ ଓ ଇଂଲଣ୍ଡର ଶ୍ରମିକ ଦଳର ପ୍ରତିନିଧିତ୍ୱ ନଥିଲେ । ମୁସଲିମଲିଗ'ର ସଭ୍ୟମାନେ ସେମାନଙ୍କ ୧୪ ଦଫା ସମ୍ମିଳିତ ସ୍ମାରକପତ୍ରର ପ୍ରାୟ ସମସ୍ତ ଦାବୀ ପୂରଣ ହୋଇ ଥିଲେ ମଧ୍ୟ ଅନ୍ୟ ଭାରତୀୟ ସଭ୍ୟମାନଙ୍କ ସହ ସହଯୋଗ କରୁ ନଥିବାରୁ ଆମ୍ବେଦକର ସେଥିରେ ବ୍ୟଥିତ ହେଲେ ।

୧୯୨୭ ମହଦ ସତ୍ୟାଗ୍ରହ ପରେ ଦଳିତମାନଙ୍କର ସାମାଜିକ ଓ ଧାର୍ମିକ ଆନ୍ଦୋଳନ ପୁରାପୁରି ଭିନ୍ନ ମୋଡ଼ ନେଇଥିଲା । ଏହି ଘଟଣା ପରେ ପ୍ରତ୍ୟେକ ଦଳିତ ସମ୍ମିଳନୀରେ ଦଳିତମାନେ ହିନ୍ଦୁ ଧର୍ମ ତ୍ୟାଗ କରିବାକୁ ପ୍ରସ୍ତାବ ଗୃହୀତ ହେଉଥିଲା । ୧୯୩୫ ଅକ୍ଟୋବର ୧୩ ତାରିଖ ଦିନ ମହାରାଷ୍ଟ୍ରର ନାସିକ ଜିଲ୍ଲାର ଏୟୋଲା ଠାରେ ଅନୁଷ୍ଠିତ ଏକ ସମ୍ମିଳନୀରେ ଆମ୍ବେଦକର ନିଜେ ଘୋଷଣା କଲେ ଯେ ସେ ହିନ୍ଦୁ ଭାବରେ ମରିବେ ନାହିଁ । ଏହାର ପ୍ରତିକ୍ରିୟାରେ ଗାନ୍ଧୀଜୀ କହିଲେ ଯେ ଧର୍ମ ଅଦଳ ବଦଳର ଏକ ବସ୍ତୁ ନୁହେଁ ।

ଭାରତ ସରକାରଙ୍କର ୧୯୩୫ ଆଇନ ଅନୁସାରେ ପ୍ରଦେଶମାନଙ୍କୁ ସ୍ୱାୟତ୍ତ ଶାସନ ଦିଆଗଲା । ଏଥିପାଇଁ ୧୯୩୭ରେ ସାଧାରଣ ନିର୍ବାଚନପାଇଁ ହେବା ନିର୍ଦ୍ଧିଷ୍ଟ ହେଲା । ତଦନୁସାରେ ବିଭିନ୍ନ ରାଜନୈତିକ ଦଳ ନିର୍ବାଚନପାଇଁ ପ୍ରସ୍ତୁତ ହେଲେ । ଡଃ. ଆମ୍ବେଦକର ତାଙ୍କର ସହକର୍ମୀମାନଙ୍କ ସହ ଆଲୋଚନା କରି ୧୯୩୬ ମସିହା ଅଗଷ୍ଟ ମାସରେ 'ସ୍ୱାଧୀନ ଶ୍ରମିକ ଦଳ' ନାମରେ ଏକ ନୂତନ ଦଳ ଗଠନ କଲେ । ପୁରୁଣା ବମ୍ବେ ପ୍ରଦେଶରେ ଏହା ଲଢ଼ି ଦଳିତମାନଙ୍କ ସଂରକ୍ଷିତ ୧୫ଟି ଆସନରୁ ୧୩ଟି ଆସନ

ଲାଭ କଲା । ଏତଦ୍ ବ୍ୟତୀତ ୨ଟି ସାଧାରଣ ଆସନ ମଧ୍ୟ ଅଧିକାର କଲା । ଆମ୍ବେଦକର ନିଜେ କଂଗ୍ରେସ ତରଫରୁ ଲଢୁଥିବା ବି.ବାଲୁ ନାମକ ଜଣେ ବିଖ୍ୟାତ କ୍ରିକେଟ୍ ଖେଳାଳୀଙ୍କୁ ପରାସ୍ତ କରି ପ୍ରାଦେଶିକ ସଭାକୁ ନିର୍ବାଚିତ ହୋଇଥିଲେ । ଏହି ସଭାର ସଭ୍ୟ ହିସାବରେ ସେ କୃଷକ, ଶ୍ରମିକ ଓ ଦଳିତମାନଙ୍କର ହିତ ଉଦ୍ଦେଶ୍ୟରେ ଅନେକ ପ୍ରସ୍ତାବ ଆଣିଥିଲେ । ସେ ଏହି ଆସେମ୍ବ୍ଲିର ସଭ୍ୟ ଥିବାବେଳେ ଲୋକାଲ୍ ବାର୍ଡ଼ ଆଇନ ସଂଶୋଧନପାଇଁ ଏକ ବିଲ୍ ଆସିଥିଲା । ସେଥିରେ 'ଅସ୍ପୃଶ୍ୟ'ମାନଙ୍କୁ 'ହରିଜନ' ନାମ ଦେବାପାଇଁ ବ୍ୟାଖ୍ୟା କରାଯାଇଥିଲା । ମାତ୍ର ଡଃ. ଆମ୍ବେଦକର ତାହାର ବିରୋଧ କରି କହିଲେ ଯେ ଯଦି ହରିଜନ ଶବ୍ଦ ସବର୍ଣ୍ଣ ଓ ଅସ୍ପୃଶ୍ୟ ଉଭୟଙ୍କୁ ବୁଝାଏ ତେବେ ଆପତ୍ତି ନାହିଁ । ଅବଶେଷରେ ହରିଜନ ଶବ୍ଦ ଗ୍ରହଣ କରାଗଲା । ତେଣୁ ତାହାର ବିରୋଧ କରି ଆମ୍ବେଦକର ଓ ତାଙ୍କ ଦଳ କକ୍ଷତ୍ୟାଗ କଲେ ।

୧୯୩୯ ସେପ୍ଟେମ୍ବର ମାସରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେଲା । କଂଗ୍ରେସ ଇଂରେଜ ସରକାରଙ୍କୁ ଯୁଦ୍ଧରେ ସାହଯ୍ୟ ଓ ସମର୍ଥନ ନ କରିବାକୁ ନିଷ୍ପତ୍ତି କଲା । ଫଳରେ ପ୍ରାଦେଶିକ କଂଗ୍ରେସ ସରକାରମାନେ ଇସ୍ତଫା ଦେଲେ । ମୁସଲିମ ଲିଗ୍ ତରଫରୁ ଜିନ୍ନା କଂଗ୍ରେସର ଇସ୍ତଫା ପ୍ରଦାନକୁ ସ୍ୱାଗତ କଲେ ଏବଂ ସେହି ଅବସରରେ ଏକ 'ମୁକ୍ତି ଦିବସ' ପାଳନ କରିବାପାଇଁ ଦେଶର ମୁସଲମାନମାନଙ୍କୁ ନିର୍ଦ୍ଦେଶ ଦେଲେ । ଆମ୍ବେଦକର ଜିନ୍ନାଙ୍କୁ ସମର୍ଥନ କଲେ । କାରଣ ତାହା କଂଗ୍ରେସ ବିରୋଧୀ କାର୍ଯ୍ୟକ୍ରମ ଥିଲା ।

୧୯୪୦ ଅକ୍ଟୋବର ମାସରେ ଗାନ୍ଧୀ ବ୍ରିଟିଶ ସରକାରଙ୍କ ବିରୋଧରେ ବ୍ୟକ୍ତିଗତ ସତ୍ୟାଗ୍ରହପାଇଁ ଆହ୍ୱାନ କଲେ । ଏହାର ଲକ୍ଷ୍ୟ ଥିଲା ଯୁଦ୍ଧକୁ ସାହାଯ୍ୟ ଦିଆଯିବ ନାହିଁ । ଆମ୍ବେଦକର ଗାନ୍ଧିଜୀଙ୍କର ଏହି ପଦକ୍ଷେପକୁ ନାପସନ୍ଦ କରି ବିବୃତି ଦେଲେ ।

୧୯୪୨ ଜୁନ ମାସରେ ଭାଇସରୟଙ୍କ କାର୍ଯ୍ୟନିର୍ବାହି ମନ୍ତ୍ରୀ ସଭାରେ ଡଃ. ଆମ୍ବେଦକରଙ୍କୁ ଏକ ସଭ୍ୟ ହିସାବରେ ନେବାର ଘୋଷଣା କରାଗଲା । ତାଙ୍କୁ ଶ୍ରମ ବିଭାଗ ଦାୟିତ୍ୱ ଦିଆଯିବାରୁ ଚାରିଆଡୁ ତାଙ୍କ ନିକଟକୁ ଅଭିନନ୍ଦନ ପତ୍ର ଆସିଲ । ସେ ସବୁବେଳେ କଂଗ୍ରେସ ବିରୋଧି ହେଲେ ମଧ୍ୟ କଂଗ୍ରେସ ସମାଜବାଦୀ କାଗଜ ଏହା ଫଳରେ ଆଶା ପ୍ରକାଶ କଲେ ଯେ ଏହା ଶ୍ରମିକମାନଙ୍କ ପକ୍ଷରେ ମଙ୍ଗଳକର ହେବ । ସେ ୧୯୪୨ ଜୁଲାଇ ୨୦ ତାରିଖ ଦିନ ଶ୍ରମମନ୍ତ୍ରୀ ଦାୟିତ୍ୱ ଗ୍ରହଣ କଲେ ।

୧୯୪୨ ଅଗଷ୍ଟ ୮ ତାରିଖ କଂଗ୍ରେସ ତରଫରୁ 'ଭାରତ ଛାଡ଼' ଆନ୍ଦୋଳନ ଆରମ୍ଭ ହେଲା । ଗାନ୍ଧିଜୀ 'କର ବା ମର' ଆହ୍ୱାନ ଦେଲେ । ଆମ୍ବେଦକର ଗାନ୍ଧିଜୀଙ୍କର ଏହି ପଦକ୍ଷେପକୁ ସମାଲୋଚନା କରି ଏହା ତାଙ୍କର 'ଦାୟିତ୍ୱହୀନତା ଓ ପାଗଳାମୀ' ବୋଲି

ବର୍ଣ୍ଣନା କଲେ । ଅନ୍ୟ ପକ୍ଷରେ କଂଗ୍ରେସ କାଗଜରେ ଆମ୍ବେଦକରଙ୍କୁ କଟୁ ସମାଲୋଚନା କରି ସେ ପାଇଥିବା ଶ୍ରମ ମନ୍ତ୍ରୀତ୍ୱର ଉପହାର ବଦଳରେ ବ୍ରିଟିଶ୍ ସରକାରଙ୍କ ଯଥାର୍ଥତା ପ୍ରତିପାଦନ କରୁଛନ୍ତି ବୋଲି ଲେଖିଲେ । କଂଗ୍ରେସ ଆନ୍ଦୋଳନ ଘୋଷଣାରେ 'ଭାଇସରାୟ ମନ୍ତ୍ରୀ ସଭା' ବସି ଏହାର ଦୃଢ଼ ମୁକାବିଲାପାଇଁ ନିଷ୍ପତ୍ତି କଲେ । କଂଗ୍ରେସ ଉପରେ ସରକାରୀ ଦମନଲୀଳା ଓ ମିଥ୍ୟା ଇସ୍ତାହାରର ପ୍ରତିବାଦ କରି ଗାନ୍ଧିଜୀ ୧୯୩୪ ଫେବୃୟାରୀ ୧୦ ତାରିଖ ଦିନ ଏକ ୨୧ ଦିନିଆ ଅନଶନ ଆରମ୍ଭ କଲେ । ଏହି ଅନଶନର ଊପରେ ଭାଇସ୍‌ରାୟ ମନ୍ତ୍ରୀ ପରିଷଦରୁ ଏମ୍.ଏସ୍.ଆନେ, ଏଚ୍.ପି. ମୋଦି ଓ ଏନ୍.ଆର.ସରକାର ତିନି ଜଣ ସଭ୍ୟ ଇସ୍ତଫା ଦେଲେ । କିନ୍ତୁ ଆମ୍ବେଦକର ଓ ଆଇ.ପି. ଶ୍ରୀବାସ୍ତବ ଅଟଳ ରହି ବ୍ରିଟିଶ୍ ସରକାରଙ୍କ କାର୍ଯ୍ୟକଳାପକୁ ସମର୍ଥନ କଲେ ।

### ସମ୍ବିଧାନ ପ୍ରଣେତା ଓ ଆଇନମନ୍ତ୍ରୀ

୧୯୪୬ କ୍ୟାବିନେଟ ମିଶନ ପ୍ଲାନ ଅନୁସାରେ ଶାସନ ବିଧାୟକ ସଭାକୁ ପ୍ରତ୍ୟେକ ରାଜ୍ୟ ବିଧାନସଭାରୁ ସଭ୍ୟ ନିର୍ବାଚିତ ହେଲେ । ବମ୍ବେ ବିଧାନ ସଭାରେ ଡଃ. ଆମ୍ବେଦକରଙ୍କର କେହି ସମର୍ଥକ ନଥିବାରୁ ବଙ୍ଗଳା ବିଧାନସଭାରୁ ମୁସଲିମ୍ ଲିଗ୍‌ର ସମର୍ଥନରେ ଶାସନ ବିଧାୟକ ସଭାକୁ ନିର୍ବାଚିତ ହୋଇ ଆସିଲେ । ୧୯୪୬ ଡିସେମ୍ବର ୯ ତାରିଖ ଶାସନ ବିଧାୟକ ସଭାର ଅଧିବେଶନ ବସିଲା । ଡଃ. ରାଜେନ୍ଦ୍ର ପ୍ରସାଦ ଏହାର ସଭାପତି ହେଲେ । ଆମ୍ବେଦକର ସମ୍ବିଧାନ ଚିଠା କମିଟୀକୁ ନିର୍ବାଚିତ ହେଲେ । ସେ ସବୁବେଳେ କଂଗ୍ରେସର ଜଣେ କଟୁ ଓ ଆପୋଷହୀନ ସମାଲୋଚକ ଥିଲେ । ସେ ଶାସନ ବିଧାୟକ ସଭାକୁ ଆସିଥିଲେ ଦଳିତମାନଙ୍କର ସ୍ୱାର୍ଥକୁ ଜଗିବାପାଇଁ । ବିଧାୟକ ସଭାର ପ୍ରଥମ ଅଧିବେଶନରେ ଜବାହରଲାଲ ନେହେରୁଙ୍କଦ୍ୱାରା ଆଗତ ସମ୍ବିଧାନର ଲକ୍ଷ୍ୟ ପ୍ରସ୍ତାବକୁ ବିରୋଧ କରିଥିବା ଖୁବ୍ ଅଳ୍ପ ଲୋକମାନଙ୍କ ମଧ୍ୟରୁ ସେ ଜଣେ ଥିଲେ । କିନ୍ତୁ ପରେ ସେ ଦେଶର ବାସ୍ତବ ରାଜନୈତିକ ସ୍ଥିତିକୁ ଉପଲବ୍ଧି କରି କଂଗ୍ରେସ ସଭ୍ୟମାନଙ୍କ ପ୍ରତି ନରମ ମନୋଭାବ ପୋଷଣ କଲେ । କଂଗ୍ରେସ ଲୋକମାନେ ମଧ୍ୟ ତାଙ୍କର ଗତିବିଧିକୁ ଉଦାର ଭାବେ ଗ୍ରହଣ କରିନେଇ ତାଙ୍କୁ ଚିଠା କମିଟୀର ସଭାପତି ନିର୍ବାଚନ କଲେ । ଆମ୍ବେଦକର ନିଜେ ଏଥିରେ ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ଶାସନ ବିଧାୟକ ସଭାରେ ସେ ଶିଳ୍ପ ଓ ଜମିର ଜାତୀୟକରଣ ଉପରେ ଗୁରୁତ୍ୱ ଦେଲେ । ସମସ୍ତ ଅଧିକାର ମଧ୍ୟରେ ସମସ୍ତ ନାଗରିକଙ୍କୁ ସମାନ ସୁଯୋଗ ଦେବା ଉପରେ ବେଶୀ ଯୋର ଦେଲେ । ସାମ୍ବିଧାନିକ ପ୍ରତିକାର ବ୍ୟବସ୍ଥାକୁ ସମ୍ବିଧାନର ହୃଦୟ ଓ ଆତ୍ମା ବୋଲି ଅବିହିତ କଲେ । ସାମାଜିକ ଓ ଅର୍ଥନୈତିକ ଗଣତନ୍ତ୍ର ହାସଲପାଇଁ ନିର୍ଦ୍ଦେଶାତ୍ମକ ରାଷ୍ଟ୍ରନିତି ଉଦ୍ଦିଷ୍ଟ ଏବଂ ଏଗୁଡ଼ିକ ମୌଳିକ ଅଧିକାରଠାରୁ ମଧ୍ୟ ବେଶୀ ଗୁରୁତ୍ୱପୂର୍ଣ୍ଣ । ରାଷ୍ଟ୍ରପତି ପ୍ରଧାନ

ଶାସନ ଅପେକ୍ଷା କେବିନେଟ୍ ପ୍ରଧାନ ଶାସନ ଭାରତପାଇଁ ବେଶୀ ଉପଯୁକ୍ତ ବୋଲି ମତ ଦେଲେ । ୧୯୪୮ ଫେବୃୟାରୀ ଶେଷ ସପ୍ତାହରେ ଡଃ. ଆମ୍ବେଦକର ସମ୍ବିଧାନ ଚିଠା ପ୍ରସ୍ତୁତ କାମ ଶେଷ କରି ବିଧାୟକ ସଭାର ସଭାପତିଙ୍କଠାରେ ଆଗତ କଲେ । ସଭାପତି ତାକୁ ମତାମତପାଇଁ ଦେଶ ଆଗରେ ଉପସ୍ଥାପିତ କଲେ ।

ସମ୍ବିଧାନ ପ୍ରଣୟନ କାର୍ଯ୍ୟ ସମାପ୍ତ ପରେ ଆମ୍ବେଦକର ଖୁବ୍ ଅସୁସ୍ଥ ହେବାରୁ ବମ୍ବେର ଏକ ହସପିଟାଲରେ ଚିକିତ୍ସିତ ହେଲେ । ଏହି ହସପିଟାଲରେ ସେ ଡଃ ମିସ୍ ଶାରଦା କବୀରଙ୍କର ସଂସ୍ପର୍ଶରେ ଆସିଲେ । ସେହି ଡାକ୍ତରାଣୀଙ୍କୁ ବିବାହ କରିବାକୁ ଚିନ୍ତା କରି ତାଙ୍କ ସହକର୍ମୀ ଚିତ୍ରେ ଓ ଭାଇ ରାଓ ଗାଇକୱାଡ୍‌ଙ୍କୁ ପରାମର୍ଶ କଲେ । ୧୯୩୫ ମସିହାରେ ତାଙ୍କର ପତ୍ନୀ ବିୟୋଗ ପରେ ସେ ଆଉ ବିବାହ କରିବେ ନାହିଁ ବୋଲି ସ୍ଥିର କରିଥିଲେ । କିନ୍ତୁ ଏହି ବିୟସରେ ତାଙ୍କର ନିଜର ହୋଇ ସହାନୁଭୂତିର ସହିତ ରୋଗ ଶଯ୍ୟାରେ ଦେଖାଶୁଣାପାଇଁ କେହି ନ ଥିବାରୁ ସେ ଗଭୀର ଭାବରେ ଏହା ଅନୁଭବ କରି ବିବାହ କରିବାକୁ ସ୍ଥିର କଲେ । ଉପରୋକ୍ତ ଶାରଦା କବୀର ନାମ୍ନୀ ସାରସ୍ୱତ ବ୍ରାହ୍ମଣ କନ୍ୟାଙ୍କୁ ୧୯୪୮ ମସିହା ଏପ୍ରିଲ ୧୫ ତାରିଖରେ ନୂଆଦିଲ୍ଲୀସ୍ଥ ତାଙ୍କ ବାସଭବନରେ ବିବାହ କଲେ ।

୧୯୪୭ ଜୁଲାଇ ୧୫ ତାରିଖ ଦିନ ବ୍ରିଟିଶ ପାର୍ଲିଆମେଣ୍ଟରେ ଭାରତ ସ୍ୱାଧିନତା ଆଇନ ଗୃହୀତ ହେଲା । ଅଗଷ୍ଟ ୩ ତାରିଖ ଦିନ କେବିନେଟ ମନ୍ତ୍ରୀ ତାଲିକା ଘୋଷଣା ହେଲା । ସ୍ୱାଧିନ ଭାରତର ପ୍ରଥମ କେବିନେଟ୍‌ରେ ଆମ୍ବେଦକର ଆଇନ ମନ୍ତ୍ରୀ ଭାବେ ସ୍ଥାନ ପାଇଲେ । ଆଇନ ମନ୍ତ୍ରୀ ଭାବରେ ହିନ୍ଦୁକୋଡ଼୍ ବିଲ୍‌ର ପ୍ରସ୍ତୁତି ଓ ଉପସ୍ଥାପନା ହେଉଛି ଆମ୍ବେଦକରଙ୍କ ଜୀବନର ଏକ ଉଲ୍ଲେଖନୀୟ ଘଟଣା । ହିନ୍ଦୁ କୋଡ଼୍ ବିଲର ପ୍ରଚଳିତ ଆଇନରେ ଚାରୋଟି ନୂଆ ବିଷୟ ଯୋଗ କରୁଥିଲା । ସମ୍ପତ୍ତିରେ ପୂର୍ଣ୍ଣ ଅଧିକାର (୧) ଜନ୍ମଗତ ଅଧିକାର ସିଦ୍ଧାନ୍ତର ଉଚ୍ଛେଦ (୨) ନାରୀମାନଙ୍କର ସମ୍ପତ୍ତିରେ ପୂର୍ଣ୍ଣ ଅଧିକାର (୩) ଝିଅକୁ ଏକ ଭାଗ ଦେବା (୪) ଛାଡ଼ପତ୍ର ବ୍ୟବସ୍ଥା । ସମସ୍ତ ହିନ୍ଦୁଙ୍କପାଇଁ ଏକ ପ୍ରକାର ହିନ୍ଦୁ ଆଇନ ନଥିଲା । ତେଣୁ ଏହାକୁ ସଂହିତାବଦ୍ଧ କରିବା ଦରକାର ହେଉଥିଲା । ଆମ୍ବେଦକର ଏହି ସଂହିତାବଦ୍ଧ କାମକୁ ଭାରତୀୟ ସମ୍ବିଧାନର ଏକ ଆନୁସଙ୍ଗିକ କାମ ବୋଲି ଧରି ନେଲେ । ହିନ୍ଦୁକୋଡ୍ ବିଲ୍ ଉପରେ ସିଲେକ୍ଟ କମିଟୀ ରିପୋର୍ଟକୁ ୧୯୪୮ ଅକ୍ଟୋବର ମାସରେ ସେ ଶାସନ ବିଧାୟକ ସଭାରେ ଉପସ୍ଥାପନ କଲେ । ହିନ୍ଦୁ ସମାଜର ଅନେକ ଗୋଷ୍ଠୀ ଏହାର ତୀବ୍ର ବିରୋଧ କଲେ । ହିନ୍ଦୁକୋଡ୍ ବିଲ୍ ପାର୍ଲାମେଣ୍ଟରେ ଗୃହୀତ ନ ହେଲେ ସରକାର ଇସ୍ତଫା ଦେବେ ବୋଲି ଜବାହରଲାଲ ନେହେରୁ ଘୋଷଣା କଲେ । ସର୍ଦ୍ଦାର ପଟେଲ ଓ ରାଜେନ୍ଦ୍ର ପ୍ରସାଦ ଏହି ବିଲ୍‌କୁ ବିରୋଧ କରୁଥିଲେ । ଏପରି

ଏକ ଝଡ଼ଝଞ୍ଜା ବାତାବରଣରେ ୧୯୫୧ ମସିହା ଫେବୃୟାରୀ ୫ ତାରିଖ ଦିନ ଆମ୍ବେଦକର ହିନ୍ଦୁକୋଡ୍ ବିଲ୍ ପାର୍ଲାମେଣ୍ଟରେ ଉପସ୍ଥାପନ କଲେ । ତୀବ୍ର ବାଦାନୁବାଦ ହୋଇ ୩ ଦିନ ଆଲୋଚନା ହେବା ପରେ ପରବର୍ତ୍ତୀ ପାର୍ଲାମେଣ୍ଟ ଅଧିବେଶନରେ ବିଚାରପାଇଁ ଏହାକୁ ସ୍ଥଗିତ ରଖାଗଲା । ସେପ୍ଟେମ୍ବର ୧୭ ତାରିଖରେ ପରବର୍ତ୍ତୀ ଅଧିବେଶନ ଆରମ୍ଭ ହେଲା । ବହୁ ବିକ୍ଷୋଭକାରୀ ହିନ୍ଦୁକୋଡ୍ ବିଲର ବିରୋଧରେ ପାର୍ଲାମେଣ୍ଟ ସାମନାରେ ବିକ୍ଷୋଭ ପ୍ରଦର୍ଶନ କରୁଥାନ୍ତି । ପାର୍ଲାମେଣ୍ଟ ସାମନାରେ ବିକ୍ଷୋଭ ପ୍ରଦର୍ଶନ କରୁଥାନ୍ତି । ପାର୍ଲାମେଣ୍ଟ ଭିତରେ ବହୁ ତର୍କବିତର୍କ ଓ ବିରୋଧ ମଧ୍ୟରେ ହିନ୍ଦୁକୋଡ଼ ବିଲର ୪ର୍ଥ ଧାରା ପର୍ଯ୍ୟନ୍ତ ଆଲୋଚନା ଶେଷ ହେଲା । ଏହା ପରେ ଏହି ବିଲ୍ ଉପରେ ଆଲୋଚନା ବନ୍ଦ କରି ଅନ୍ୟ ସବୁ ଆଲୋଚନାକୁ ନିଆଗଲା । ବିବାହ ଓ ଛାଡ଼ପତ୍ର ପ୍ରଥା ଆଲୋଚନା ହୋଇ ପାରିଲା ନାହିଁ । ହିନ୍ଦୁକୋଡ଼ ବିଲ ତାଙ୍କ ଇଚ୍ଛାନୁସାରେ ଗୃହୀତ ନହେବାରୁ ଆମ୍ବେଦକର ମର୍ମାହତ ହେଲେ । ଏପରି ଅବସ୍ଥାରେ ସେ ୧୯୫୧ ସେପ୍ଟେମ୍ବର ୨୭ ତାରିଖ ଦିନ ନେହେରୁ ମନ୍ତ୍ରୀମଣ୍ଡଳରୁ ଇସ୍ତଫା ଦେଲେ ।

ମନ୍ତ୍ରୀ ପଦରୁ ଇସ୍ତଫା ଦେଇ ଆମ୍ବେଦକର ଲୋକସଭାରେ ବିରୋଧିଦଳ ଆସନରେ ବସିଲେ । ୧୯୫୨ ଜାନୁୟାରୀ ମାସରେ ସାଧାରଣ ନିର୍ବାଚନରେ ଆମ୍ବେଦକର ଲୋକସଭା ସଦସ୍ୟପାଇଁ ପ୍ରତିଦ୍ୱନ୍ଦିତା କରି କଂଗ୍ରେସ ପ୍ରାର୍ଥୀ ଏନ.ଏସ.କାଜରୋଲକରଙ୍କ ଠାରୁ ପରାଜିତ ହେଲେ । ପାକିସ୍ଥାନର ବିଭାଜନ ସପକ୍ଷରେ ମତ ଦେବା, ମୁସଲମାନମାନଙ୍କପାଇଁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ଦାବୀ କରିବା, କଂଗ୍ରେସକୁ କେବଳ ସମାଲୋଚନା କରିବା ବେଳେ ନିଜର କିଛି ସକାରାତ୍ମକ ବିକଳ୍ପ କାର୍ଯ୍ୟକ୍ରମ ନଥିବା ଏବଂ ସର୍ବୋପରି ସାଙ୍ଗଠାନିକ ଦୁର୍ବଳତା ତାଙ୍କର ପରାଜୟର ପ୍ରଧାନ କାରଣ ଥିଲା । ତାଙ୍କ ଦଳ ତରଫରୁ ଲୋକସଭାକୁ ମାତ୍ର ଜଣେ ଓ ବମ୍ବେ ଆସେମ୍ବ୍ଲିକୁ ମାତ୍ର ଜଣେ ନିର୍ବାଚିତ ହେଲେ । ଆମ୍ବେଦକର ନିଜେ ନିର୍ବାଚନରେ ହରିଗଲେ ମଧ୍ୟ ରାଜନୀତିରୁ ଅଲଗା ରହି ପାରିଲେ ନାହିଁ । ସେ ୧୯୫୨ ମାର୍ଚ୍ଚ ମାସରେ ବମ୍ବେ ଆସେମ୍ବ୍ଲି ସଭ୍ୟମାନଙ୍କ ସମର୍ଥନରେ ରାଜ୍ୟସଭାକୁ ହେଲେ । ୧୯୫୪ ମେ ମାସରେ ଏକ ଉପନିର୍ବାଚନରେ ସେ ପୁଣି ଥରେ ଚେଷ୍ଟା କଲେ ଲୋକସଭାକୁ ଯିବାପାଇଁ । କିନ୍ତୁ ଏଥର ମଧ୍ୟ ସେ ପରାସ୍ତ ହେଲେ । ଏବେ ସେ ଅନୁଭବ କଲେ ଯେ ଯେଉଁ ଦଳର ଗ୍ରାମାଞ୍ଚଳରେ ସମର୍ଥନ ନାହିଁ ତାର ଭବିଷ୍ୟତ ନାହିଁ ।

୧୯୫୪ ମସିହା ଡିସେମ୍ବର ମାସରେ ରେଙ୍ଗୁନଠାରେ ଅନୁଷ୍ଠିତ ହେଉଥିବା ବିଶ୍ୱବୌଦ୍ଧ ସମ୍ମିଳନୀରେ ଡଃ.ଆମ୍ବେକର ସସ୍ତ୍ରୀକ ଯୋଗଦେଲେ । ସମ୍ମିଳନୀରେ ଭାଷଣ ଦେବା ବେଳକୁ ତାଙ୍କର ବାକ୍‌ରୁଦ୍ଧ ହୋଇ ଆସିଲା । ସେ ତାଙ୍କର ଆବେଗମୟ ଭାଷଣରେ ଭାରତରେ ବୌଦ୍ଧ ଧର୍ମର ପ୍ରଚାର ଦାୟିତ୍ୱ ନେବେ ବୋଲି ଘୋଷଣା କଲେ । ୧୯୫୬

ମସିହା ମେ ୨୪ ତାରିଖ ଦିନ ସେ ବମ୍ବେର ନାରେ ପାର୍କ ଠାରେ ବୌଦ୍ଧ ଜୟନ୍ତୀ ପାଳନ ଅବସରରେ ସେ ସେହି ବର୍ଷ ଅକ୍ଟୋବର ମାସରେ ବୌଦ୍ଧଧର୍ମ ଗ୍ରହଣ କରିବେ ବୋଲି ଘୋଷଣା କଲେ । ୧୯୫୬ ମସିହା ଅକ୍ଟୋବର ୧୪ ତାରିଖ ଦଶହରା ଦିନ ସେ ନାଗପୁରଠାରେ ତିନି ଲକ୍ଷ ଲୋକଙ୍କର ଏକ ବିରାଟ ସମାବେଶରେ ବୌଦ୍ଧ ଧର୍ମର ଦୀକ୍ଷା ଗ୍ରହଣ କଲେ । ତାଙ୍କ ସହ ତାଙ୍କର ଅନୁଗତ ୩ ଲକ୍ଷ ଲୋକ ମଧ୍ୟ ବୌଦ୍ଧ ଧର୍ମ ଗ୍ରହଣ କଲେ । ସେ ୨୦ ବର୍ଷ ପୂର୍ବେ ହିନ୍ଦୁଧର୍ମ ତ୍ୟାଗ କରିବାକୁ ଘୋଷଣା କରିଥିଲେ ମଧ୍ୟ ସୁଚିନ୍ତିତ ଭାବେ ବୁଦ୍ଧଙ୍କର ୨୫୦୦ ତମ ଜୟନ୍ତି ବର୍ଷ (୧୯୫୬) କୁ ଅପେକ୍ଷା କରିଥିଲେ ବୋଲି କୁହାଯାଏ । ସେ ହିନ୍ଦୁ ଧର୍ମ ଛାଡ଼ି କାହିଁକି ବୌଦ୍ଧ ଧର୍ମ ଗ୍ରହଣ କଲେ ଏହି ପ୍ରସଙ୍ଗରେ କହିଲେ ଯେ ମହାତ୍ମାଗାନ୍ଧୀଙ୍କ ସହ ଆଲୋଚନା ବେଳେ ସେ ତାଙ୍କୁ କହିଥିଲେ, 'ମୁଁ ଦେଶରେ ସବୁଠାରୁ କମ୍ କ୍ଷତିକାରକ ଏକ ପଥ ଅନୁସରଣ କରିବି । ମୁଁ ବୌଦ୍ଧ ଧର୍ମ ଗ୍ରହଣ କରିବା ଭାରତୀୟ ସଂସ୍କୃତିର ଏକ ଅଂଶ ବିଶେଷ । ମୁଁ ସଚେତନ ଯେ ମୁଁ ଧର୍ମ ପରିବର୍ତ୍ତନ କଲେ ମଧ୍ୟ ତାହା ଭାରତୀୟ ସଂସ୍କୃତୀ ଓ ଇତିହାସରେ କୌଣସି ଆଘାତ ପହଞ୍ଚାଇ ପାରିବ ନାହିଁ ।'

କ୍ରମଶଃ ଆମ୍ବେଦକରଙ୍କର ସ୍ୱାସ୍ଥ୍ୟ ବେଶୀ ଖରାପ ହେଉଥିଲା । ତାଙ୍କ ଶରୀରରେ ଜୀର୍ଣ୍ଣଶୀର୍ଣ୍ଣତା ପ୍ରକାଶ ପାଉଥିଲେ ମଧ୍ୟ ଧର୍ମାନ୍ତର ପରେ ତାଙ୍କ ଦେହରେ ନୂତନ ବଳ ଓ ମନରେ ନୂତନ ଉତ୍ସାହ ସେ ଅନୁଭବ କରି ପାରୁଥିଲେ । ହେଲେ ତାଙ୍କର ଆଖିକୁ ଆଉ ଭଲ ଦିଶୁ ନଥିଲା । ତେଣୁ ଲେଖାପଢ଼ା ଇତ୍ୟାଦି କାର୍ଯ୍ୟ ଭଲ କରି ପାରୁ ନଥିଲେ । ଭଗ୍ନ ସ୍ୱାସ୍ଥ୍ୟରେ ମଧ୍ୟ ସେ ୧୯୫୬ ନଭେମ୍ବର ୧୫ ତାରିଖ ନେପାଳର କାଠମାଣ୍ଡୁଠାରେ ଅନୁଷ୍ଠିତ ବିଶ୍ୱ ବୌଦ୍ଧ ସମ୍ମିଳନୀରେ ଯୋଗ ଦେଲେ । ଡିସେମ୍ବର ୪ ତାରିଖ ଦିନ ଆମ୍ବେଦକର କିଛି ସମୟପାଇଁ ରାଜ୍ୟ ସଭା ବୈଠକରେ ଯୋଗ ଦେଲେ । ଏହାହିଁ ହିଁ ଥିଲା ରାଜ୍ୟସଭାରେ ତାଙ୍କର ଶେଷ ଦିନ । ଡିସେମ୍ବର ୫ ତାରିଖ ରାତିରେ ସେ ତାଙ୍କ 'ବୁଦ୍ଧ ଓ ତାଙ୍କ ଧର୍ମ' ବହିର ଟାଇପ ହୋଇଥିବା ମୁଖବନ୍ଧ ଓ କେତୋଟି ଚିଠି ମଗାଇଲେ ସେହି ରାତିରେ ସେଗୁଡ଼ିକ ଦେଖିବା ପାଇଁ । ଡିସେମ୍ବର ୬ ତାରିଖ ଦିନ ସକାଳେ ଉଠି ପତ୍ନୀ ଡଃ. ସାରଦା ଆମ୍ବେଦକର ଦେଖନ୍ତି ଯେ ବାବା ସାହେବ ଆଉ ନାହାନ୍ତି । ଶୋଇଥିବା ଅବସ୍ଥାରେ ତାଙ୍କର ପ୍ରାଣବାୟୁ ଉଡ଼ିଯାଇଛି । ଏକ ଜଳନ୍ତ ସୂର୍ଯ୍ୟ ଚିରଦିନପାଇଁ ଅସ୍ତ ହୋଇ ଯାଇଛି ।

ସୌଜନ୍ୟ : ଗୌରଚନ୍ଦ୍ର ଖମାରୀ, *ବିକଳ୍ପ ବିଚାର (ଦଳିତ ସମସ୍ୟା)*, ୧୯୯୪, ସପ୍ତମ ସଂଖ୍ୟା ।

# ଆମ୍ବେଦକର ଜୟନ୍ତୀର ଅନୁଚିନ୍ତା

ପୂର୍ଣ୍ଣଚନ୍ଦ୍ର ମଲ୍ଲିକ

ଗତ ଏପ୍ରିଲ ୧୪ ତାରିଖରେ ଭାରତୀୟ ସମ୍ବିଧାନର ଜନକ ତଥା ଦଳିତ ଜାତିର ଅବିସମ୍ବାଦିତ ନେତା ଡକ୍ଟର ଭୀମାରାଓ ରାମ୍‌ଜୀ ଆମ୍ବେଦକରଙ୍କର ୧୦୮ ତମ ଜୟନ୍ତୀ ଦେଶସାରା ଶ୍ରଦ୍ଧା ଓ ସମ୍ମାନର ସହିତ ପାଳିତ ହୋଇଛି । ଏହି ଉପଲକ୍ଷେ ଓଡ଼ିଶାର 'ହରିଜନ ଆଦିବାସୀ ବିଧାୟକ ପରିଷଦ' ତରଫରୁ ଭୁବନେଶ୍ୱରସ୍ଥିତ ଏ.ଜି. ଛକଠାରେ ତାଙ୍କର ଏକ ପୂର୍ଣ୍ଣାଙ୍ଗ ବ୍ରୋଞ୍ଜ ପ୍ରତିକୃତି ଉନ୍ମୋଚିତ ହୋଇଛି । କିନ୍ତୁ ଏଭଳି ଐତିହାସିକ ପଦକ୍ଷେପ ସହିତ ତାଙ୍କର ଆଦର୍ଶ ଓ ଦର୍ଶନର ପ୍ରଚାର ଓ ପ୍ରସାରର ମଧ୍ୟ ଆବଶ୍ୟକତା ରହିଛି । କାରଣ ନିଜ ଜୀବନକାଳ ମଧ୍ୟରେ ଏହି ମହାନ ନେତା ସମଗ୍ର ଭାରତ ବର୍ଷରେ ସମ୍ଭବତଃ ସବୁଠାରୁ ବେଶୀ ବିବାଦମାନ ବ୍ୟକ୍ତିତ୍ୱ ଥିଲେ ଏବଂ ମୃତ୍ୟୁ ପରେ ମଧ୍ୟ ଆହୁରି ବିବାଦମାନ ହୋଇ ପଡ଼ିଛନ୍ତି । ମୃତ୍ୟୁପରେ ତାଙ୍କ ପ୍ରଦତ୍ତ/ରଚିତ୍ ବକ୍ତୃତା ସମୂହର ସଂକଳନ ଯେପରି ମହାରାଷ୍ଟ୍ର ସରକାରଙ୍କ ତରଫରୁ ପ୍ରକାଶିତ ହେବାବେଳେ ତା ଉପରେ କଟକଣା ଜାରି ହୋଇଛି ସେହିଭଳି ତାଙ୍କ ନାମରେ ମଧ୍ୟ ବିଶ୍ୱବିଦ୍ୟାଳୟ ନାମିତ ହୋଇଛି । ଯେଉଁମାନେ ତାଙ୍କର ସବୁଠାରୁ ବଳି ବଡ଼ ସମାଲୋଚକ ଥିଲେ ମୃତ୍ୟୁପରେ ସେହି ନେତାମାନଙ୍କର ବୈଠକଖାନାରେ ଆମ୍ବେଦକରଙ୍କ ପ୍ରତିକୃତି ଶୋଭାବର୍ଦ୍ଧନ କରିଛି । ରାଜନୀତିର କାର୍ପେଟଦାରମାନଙ୍କ ପାଖରେ ଜାତିଆଣବାଦୀ ରାଜନୀତିର ପ୍ରସାର ଭିତରେ ସେ ଦିନକୁ ଦିନ ଅଧିକରୁ ଅଧିକ ଆବଶ୍ୟକ ହୋଇ ପଡୁଛନ୍ତି । କିନ୍ତୁ ଦୁଃଖର ସହିତ କହିବାକୁ ପଡୁଛି ଯେ, ଯେପରି ମହାତ୍ମା ଗାନ୍ଧୀଙ୍କ ମୃତ୍ୟୁପରେ ଦେଶ ତାଙ୍କ ଆଦର୍ଶଠାରୁ ଦୂରେଇ ଯାଇଛି, ସେଇଭଳି ଆମ୍ବେଦକରଙ୍କ ମୃତ୍ୟୁପରେ ଆମ୍ବେଦକର ଆଦର୍ଶ ଓ ଦର୍ଶନକୁ ଅତି ଚତୁରତାର ସହିତ ଉପେକ୍ଷା କରାଯାଇ କେବଳ ଭୋଟ ହାସଲ ଓ ନେତୃତ୍ୱ ଜାହିର କରିବାକୁ ଓ ଦଳିତମାନଙ୍କର ଭାବ ପ୍ରବଣତାକୁ ପ୍ରଭାବିତ କରି ସେମାନଙ୍କର ସମର୍ଥନ ହାସଲପାଇଁ ଆମ୍ବେଦକରଙ୍କ ନାମରେ ବିଭିନ୍ନ କାର୍ଯ୍ୟକ୍ରମ ଗ୍ରହଣ କରାଯଉଛି । ସବୁଠାରୁ ବେଶି ପରିମାଣରେ ଦଳିତ ଜାତିର ନେତାମାନେ ହିଁ ଆମ୍ବେଦକରଙ୍କ ପ୍ରଦର୍ଶିତ ମାର୍ଗଠାରୁ ଦୂରେଇ ଯାଇଛନ୍ତି । ଆମ୍ବଦକର କହିଥିଲେ, 'ଆମପାଇଁ ଆମକୁ ସଂଗ୍ରାମ କରିବାକୁ ହେବ ।' ଏହି ନେତାମାନେ ଜାଣି ତ କୌଣସି ସଂଗ୍ରାମ କରୁନାହାନ୍ତି, କିନ୍ତୁ ଆମ୍ବେକରଙ୍କ ନାମରେ ଦଳିତ ଜାତିର ନେତାଭାବେ ନିଜକୁ ପ୍ରତିପାଦିତ କରି କ୍ଷମତା ଲଢ଼େଇରେ

ନିଜ ଦର ବଢେଇବାପାଇଁ ପ୍ରୟାସ କରୁଛନ୍ତି । ଏ କଥା ବିସ୍ମୃତ ହେବାର ନୁହେଁ ଯେ ଆମ୍ବେଦକର ଭାରତୀୟ ଜାତିବାଦ ବିରୋଧରେ ସଂଗ୍ରାମ କରିଥିଲେ । 'ସଂରକ୍ଷଣ' 'ସାମାଜିକ ନ୍ୟାୟ' ପ୍ରତିଷ୍ଠା ନିମନ୍ତେ ଏକ ସ୍ୱଳ୍ପମିଆଦୀ ବ୍ୟବସ୍ଥା ଥିଲା ମାତ୍ର । ଆଜି ଭାରତୀୟ ହିନ୍ଦୁସମାଜରେ ଜାତିବାଦ ପ୍ରାୟତଃ ଗ୍ରାମାଞ୍ଚଳରେ ସେହିଭଳି ଅପରିବର୍ତ୍ତିତ ରହିଥିବାବେଳେ ସେ ବିଷୟରେ କେହି ସଂଗ୍ରାମ କରୁନାହାନ୍ତି, ବରଂ ନିଯୁକ୍ତି ଓ ରାଜନୈତିକ ସଂରକ୍ଷଣ ଲାଭପାଇଁ ଦଳିତ ବୁଦ୍ଧିଜୀବୀ ଓ ରାଜନୈତିକ ନେତାମାନେ ବେଶି ବ୍ୟାକୁଳତା ପ୍ରକାଶ କରୁଛନ୍ତି । ତେଣୁ ଆମ୍ବେଦକରଙ୍କ ଦର୍ଶନର ପ୍ରସାର ଓ ଅସମ୍ପୂର୍ଣ୍ଣ ସଂଗ୍ରାମକୁ ଆଗେଇ ନେବା ହିଁ ତାଙ୍କ ପ୍ରତି ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ହେବ ।

ଏହି ଦଳିତ ବର୍ଗର ନେତାମାନେ କାହିଁକି ନିଜର ବ୍ୟକ୍ତିଗତ ସ୍ୱାର୍ଥ ଓ କ୍ଷମତା ଲାଳସା ଚରିତାର୍ଥ କରିବା ଭିନ୍ନ ଆଉ କିଛି ଅଧିକ କରିପାରୁ ନାହାନ୍ତି ? କାରଣ ଏହି ନେତାମାନଙ୍କର ଦଳିତ ଜାତିପାଇଁ କାର୍ଯ୍ୟ କରିବା, ଆଗ୍ରହର ଅଭାବ କିମ୍ବା ସେମାନଙ୍କର ଦୁର୍ବଳ ବ୍ୟକ୍ତିତ୍ୱ ନୁହେଁ । ଏମାନଙ୍କ ଭିତରୁ ଅଧିକାଂଶ ଦଳିତମାନଙ୍କ ବିକାଶପାଇଁ କାର୍ଯ୍ୟ କରିବା ନିମନ୍ତେ ପ୍ରତିଶ୍ରୁତିବଦ୍ଧ ଏବଂ ଦେଶ ବା ରାଷ୍ଟ୍ରକୁ ନେତୃତ୍ୱ ଦେବା ଭଳି ସମସ୍ତ ପ୍ରକାର ଦକ୍ଷତା ଏମାନଙ୍କର ରହିଛି । ଏସବୁ ସତ୍ତ୍ୱେ ମଧ୍ୟ ସେମାନେ ପ୍ରଚଳିତ ସାମ୍ବିଧାନିକ ବିଧି ବ୍ୟବସ୍ଥା ଭିତରେ କିଛି କରିବାକୁ ସମର୍ଥ ହେଉନାହାନ୍ତି । ଏହାର ପ୍ରମୁଖ କାରଣ ହେଲା ଆମ୍ବେଦକରଙ୍କ ପ୍ରଣୀତ ସମ୍ବିଧାନର 'ରାଜନୈତିକ ସଂରକ୍ଷଣ' ବ୍ୟବସ୍ଥାର ମୌଳିକ ଢାଞ୍ଚାକୁ ପରିବର୍ତ୍ତନ କରି ଏହି ବ୍ୟବସ୍ଥାକୁ ପଙ୍ଗୁ କରି ଦିଆଯାଇଛି । ଜେନୈକ ଦଳିତ କେନ୍ଦ୍ରମନ୍ତ୍ରୀଙ୍କ ସହିତ ଆଲୋଚନା କଲାରେ ଏହି ପ୍ରାବନ୍ଧିକ କେନ୍ଦ୍ରମନ୍ତ୍ରୀ ମହୋଦୟ ରାଜ୍ୟରେ ଦଳିତମାନଙ୍କର ବିଭିନ୍ନ ସାମାଜିକ ସମସ୍ୟା ବିରୁଦ୍ଧରେ କାହିଁକି କୌଣସି ଆନ୍ଦୋଳନର ନେତୃତ୍ୱ ନେଉନାହାନ୍ତି ବୋଲି ଅଭିଯୋଗ କରିବାରୁ ଉତ୍ତର ଦେଇ ସେ ନିଜ ଦଳର ନେତା ଓ ନିଜ ନିର୍ବାଚନମଣ୍ଡଳୀର ସଂଖ୍ୟାଗରିଷ୍ଠ ଅଣ ତଫସିଲଭୁକ୍ତ ଜାତିର ଭୋଟରମାନଙ୍କ ସ୍ୱାର୍ଥରକ୍ଷା ବିରୁଦ୍ଧରେ ଯାଇ ପାରିବେ ନାହିଁ ବୋଲି ମନ୍ତବ୍ୟ ଦେଇଥିଲେ । ଏଠାରେ ସ୍ମରଣ କରାଇ ଦିଆଯାଇ ପାରେ ଯେ ଆମ୍ବେଦକରଙ୍କ 'ରାଜନୈତିକ ସଂରକ୍ଷଣ'ଯେଉଁ ଡି.ଏମ୍.ସି. (ଡବଲ ମେମ୍ବର କନ୍‌ଷ୍ଟିଚ୍ୟୁଏନ୍‌ସି) ବ୍ୟବସ୍ଥା ଉପରେ ଗଢ଼ି ଉଠିଥିଲା ୧୯୬୧ ରେ କଂଗ୍ରେସ ଦଳ ତାର ଉଚ୍ଛେଦ କଲାବେଳେ ପାର୍ଲିଆମେଣ୍ଟରେ ଅନୁରୂପ ଆଶଙ୍କା ପ୍ରକାଶ କରାଯାଇଥିଲା । ପ୍ରସଙ୍ଗକ୍ରମେ ଏଠାରେ ଡି.ଏମ୍.ସି. (ଡବଲ ମେମ୍ବର କନ୍‌ଷ୍ଟିଚ୍ୟୁଏନ୍‌ସି) ବ୍ୟବସ୍ଥା ସମ୍ପର୍କରେ ସାମାନ୍ୟ ସୂଚନା ଦେବା ଉଚିତ ହେବ । ଆମ୍ବେଦକର ଓ ଗାନ୍ଧୀଙ୍କର ପୁନା ରାଜିନାମା ଅନୁଯାୟୀ ତଫସିଲଭୁକ୍ତ ଜାତି ଉପଜାତି ପ୍ରାର୍ଥୀମାନଙ୍କପାଇଁ ଆଜି ପରି ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ବ୍ୟବସ୍ଥା ନଥିଲା । ଇଂରେଜମାନେ

କମ୍ୟୁନାଲ ଆୱାର୍ଡ ଜରିଆରେ ଏପରି ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ସୃଷ୍ଟ କରିବାକୁ ଚାହିଁଥିଲେ । ଗାନ୍ଧୀ ଏପରି ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ବିଚ୍ଛିନତାବାଦକୁ ପ୍ରୋତ୍ସାହିତ କରିବ ଓ ଜାତୀୟ ସଂହତିର ବାଧକ ହେବ ବୋଲି କହୁଥିଲେ । ତେଣୁ ଭାରତୀୟ ସମ୍ବିଧାନରେ ଡି.ଏମ୍.ସି. (ଡବଲ ମେମ୍ବର କନ୍‌ଷ୍ଟିଚ୍ୟୁଏନ୍‌ସି)ର ବ୍ୟବସ୍ଥା କରାଯାଇଥିଲା । ଦଳିତ ଭୋଟରମାନେ ବା ଉପଜାତିର ଭୋଟରମାନେ ଦୁଇଟି ଭୋଟ ଦେବାର ଅଧିକାର ପାଇଥିଲେ । ନିର୍ବାଚନ ମଣ୍ଡଳୀ ସବୁ ବର୍ଗପାଇଁ ଉନ୍ମୁକ୍ତ ଥିଲା । ପ୍ରାୟତଃ ସାଧାରଣ ବର୍ଗର ପ୍ରାର୍ଥୀମାନେ ଏଥିପାଇଁ ଲଢୁଥିଲେ । ଡି.ଏମ୍.ସି. ବ୍ୟବସ୍ଥା ଅନୁଯାୟୀ ଜାତି / ଉପଜାତିର ଭୋଟରମାନେ ନିଜ ନିର୍ବାଚନ ମଣ୍ଡଳୀର ସାଧାରଣ ବର୍ଗର ପ୍ରାର୍ଥୀଙ୍କୁ ଗୋଟିଏ ଭୋଟ ଦେଲାବେଳେ ୩୪ଟି ନିର୍ବାଚନ ମଣ୍ଡଳୀକୁ ନେଇ ଗଠିତ ଏକ ସଂରକ୍ଷିତ ଆସନପାଇଁ ନିଜ ବର୍ଗର ଜଣେ ପ୍ରାର୍ଥୀଙ୍କୁ ବାଛୁଥିଲେ; ଯିଏ ତାଙ୍କର ସୁଖଦୁଃଖ ବୁଝୁଥିଲେ ଓ ତାଙ୍କ ପାଖରେ ଉତ୍ତରଦାୟୀ ହୋଇ ରହୁଥିଲେ । ତାଙ୍କ କାର୍ଯ୍ୟ ନକଲେ ପରବର୍ତ୍ତୀ ନିର୍ବାଚନରେ ସେଭଳି ପ୍ରାର୍ଥୀଙ୍କୁ ଭୋଟରମାନେ ବଦଳାଇ ପାରୁଥିଲେ । ପୁନା ରାଜିନାମା ପରେ ୧୯୩୭ରେ ଯେଉଁ ନିର୍ବାଚନ କରାଗଲା ୧୫୧ଟି ସାଧାରଣ ବର୍ଗ ନିମନ୍ତେ ଉଦ୍ଦିଷ୍ଟ ଥିବାବେଳେ ୧୨୪ଟି ନିର୍ବାଚନମଣ୍ଡଳୀ ଡି.ଏମ୍.ସି. ଅନ୍ତର୍ଭୁକ୍ତ ହୋଇ ପାରିଥିଲା । କିନ୍ତୁ ୧୯୫୯ରେ ଆନ୍ଧ୍ରର ପାର୍ବତୀପୁରମ ଲୋକସଭା ନିର୍ବାଚନମଣ୍ଡଳୀ ଯାହାକି ସାଧାରଣ ବର୍ଗ ନିମନ୍ତେ ଉଦ୍ଦିଷ୍ଟ ଥିଲା, ସେଥିରୁ ଶ୍ରୀ ଭି.ଭି. ଗିରି ଜନୈକ ତଫସିଲଭୁକ୍ତ ଜନଜାତିର ପ୍ରାର୍ଥୀ ଶ୍ରୀ ଦୋରାଙ୍କଠାରୁ ହାରିଯିବା ପରେ ଏହି ଡି.ଏମ୍.ସି ବ୍ୟବସ୍ଥାକୁ ଉଚ୍ଛେଦ କରାଗଲା । (କାରଣ ଶ୍ରୀ ଦୋରା ଏହି ବ୍ୟବସ୍ଥା ଯୋଗୁଁ ତଫସିଲଭୁକ୍ତ ଜାତି/ଜନଜାତି ଭୋଟରମାନଙ୍କୁ ପ୍ରଭାବିତ କରିପାରିଥିଲେ) କଂଗ୍ରେସର ୫୫୫ ଜଣିଆ ସି.ପି.ପି. ମଧ୍ୟରୁ ମାତ୍ର ୨୨୯ ଜଣଙ୍କ ଉପସ୍ଥିତିରେ ଡି.ଏମ୍.ସି. ବ୍ୟବସ୍ଥା ଉଚ୍ଛେଦ କରାଯିବା ପ୍ରସ୍ତାବ ଆଲୋଚିତ ହୋଇ ମାତ୍ର ୧୨୪ ଜଣଙ୍କ ସମର୍ଥନ କ୍ରମେ ଗୃହୀତ ହୋଇଗଲା ଏବଂ ୧୯୬୧ ଫେବୃଆରୀରେ ଲୋକସଭାରେ ଏହି ବିଲ୍ ଆଗତ କରାଗଲା । ଅବଶ୍ୟ ୧୯୬୦ରେ ନୂତନ ନିର୍ବାଚନ ଆୟୋଗ ଡି.ଏମ୍.ସି. ବ୍ୟବସ୍ଥାକୁ ଉଚ୍ଛେଦ କରିବାକୁ ପ୍ରସ୍ତାବ ରଖିଥିଲେ । ତେଣୁ ସେହି ଭିତ୍ତିରେ ଡି.ଏମ୍.ସି. ବ୍ୟବସ୍ଥାକୁ ଗୋଳମାଳିଆ ଏବଂ ୩/୪ ଟି ନିର୍ବାଚନମଣ୍ଡଳୀ ଭିତରେ ସଂରକ୍ଷିତ ଆନସନଟି ରହୁଥିବାରୁ ସବୁ ଭୋଟରଙ୍କ ପାଖରେ ପହଞ୍ଚିବା ପ୍ରାର୍ଥୀଙ୍କ ପକ୍ଷେ ସୁବିଧା ଜନକ ହେଉ ନଥିବାର ଆଳ କରି ଏହି ବିଲ୍ ଅଣାଯାଇଛି ବୋଲି ଦର୍ଶାଗଲା । ଶ୍ରୀ ମହାବୀର ତ୍ୟାଗୀ ବିତର୍କରେ ଭାଗ ନେଇ ଏହା "ଉଚ୍ଚବର୍ଗର ହିନ୍ଦୁମାନଙ୍କର ତଫସିଲଭୁକ୍ତ ଜାତିର ଯଥାର୍ଥ ପ୍ରତିନିଧିତ୍ୱକୁ ଧ୍ୱଂସ କରି ଦେବାର ଏକ କୌଶଳ" ବୋଲି କହିଥିଲେ । ସେ ଆହୁରି ମଧ୍ୟ କହିଥିଲେ ଯେ,

"ଏହାଦ୍ୱାରା ତଫସିଲଭୁକ୍ତ ଜାତି/ଜନଜାତିର ପ୍ରତିନିଧିତ୍ୱ ଉତ୍କର୍ଷର ଅବକ୍ଷୟ ଘଟିବ ଏବଂ ସଂସଦରେ ପ୍ରତିନିଧିତ୍ୱ କ୍ଷମତାର ବିଲୟ ଘଟିଲେ ପ୍ରାର୍ଥୀଙ୍କର କେଉଁ ବର୍ଗରେ ଜନ୍ମ ତାହା ଅବାଂଛିତ ହୋଇପଡ଼ିବ ।" (ଲୋକସଭା ବିତର୍କ, ୧୬ ଫେବୃୟାରୀ, ୧୯୬୧, ସ୍ତମ୍ଭ-୩୫୬) । ଶ୍ରୀ କାମ୍ବଲୀ' ଏହା ପୁନା ରାଜିନାମାର ବିରୋଧୀ' ବୋଲି କହିଥିବାବେଳେ ଶ୍ରୀ ଖାଦିଲକର ଏହି ସମ୍ବିଧାନ ସଂଶୋଧନକୁ 'ସଂରକ୍ଷଣ ବ୍ୟବସ୍ଥାର ଏକ ଯୁକ୍ତିସଙ୍ଗତ ପରିସମାପ୍ତି' ବୋଲି ଅଭିହିତ କରିଥିଲେ । (ଲୋକସଭା ବିତର୍କ, ସ୍ତମ୍ଭ-୩୬୦) ଆଗରୁ ମଧ୍ୟ, ୧୯୫୯ରେ 'ରାଜନୈତିକ ସଂରକ୍ଷଣ' ମିଆଦକୁ ୧୦ ବର୍ଷ ବୃଦ୍ଧି କରାଗଲେ ଡି.ଏମ୍.ସି. ବ୍ୟବସ୍ଥା ବଳବତ୍ତର ରହୁ ବୋଲି ମତଦେଇ "ଏହାଦ୍ୱାରା ଜଣେ ତଫସିଲଭୁକ୍ତ ଜାତି/ ଜନଜାତିର ପ୍ରାର୍ଥୀ ପ୍ରକୃତରେ ସେହି ବର୍ଗର ପ୍ରତିନିଧି ବୋଲି ଅନୁଭବ କରି ପାରିବେ" ବୋଲି କହିଥିଲେ । (ଲୋକସଭା ବିତର୍କ, ୩୦-୧୧-୫୯, ସ୍ତମ୍ଭ-୨୫୨୩) ଏପରି ରାଜନୈତିକ ସଂରକ୍ଷଣରେ ଯେଉଁ ସଫସିଲଭୁକ୍ତ ଜାତି/ଜନଜାତିର ନେତାମାନେ ଭବିଷ୍ୟତରେ ସୃଷ୍ଟି ହେବେ ସେମାନଙ୍କ ସମ୍ପର୍କରେ ଆମ୍ବେଦକରଙ୍କ ପ୍ରତିଷ୍ଠିତ ରିପବ୍ଲିକାନ ପାର୍ଟିର ସଦସ୍ୟମାନେ ସଂସଦୀୟ ବିତର୍କରେ ଅଂଶଗ୍ରହଣ କରି କହିଥିଲେ, 'ଯଦିଓ ଭାରତୀୟ ସମାଜ ବ୍ୟବସ୍ଥାରେ ସେଭଳି ଆଖିଦୃଶିଆ ପରିବର୍ତ୍ତନ ହୋଇନାହିଁ, ଏବେ ଦଳିତମାନଙ୍କ ଭିତରେ ନବଜାଗରଣ ଦେଖାଦେଇଛି । ସେମାନେ ନିଜ ସ୍ଥିତି ସମ୍ପର୍କରେ ସଚେତନ ହୋଇଛନ୍ତି । ତେଣୁ ଏହି ରାଜନୈତିକ ସଂରକ୍ଷଣର ଏକ ନକରାତ୍ମକ ପ୍ରଭାବ ତଫସିଲବର୍ଗର ନେତାମାନଙ୍କୁ ଯଥାର୍ଥରେ କୌଣସି ରାଜନୈତିକ କ୍ଷମତା ପ୍ରଦାନ କରୁନାହିଁ ବରଂ ଏହା ଏକ ରାଜନୈତିକ ଅନୁକମ୍ପାରେ ପରିଣତ ହୋଇଛି । ତଫସିଲବର୍ଗର ଲୋକମାନେ ଏହା ଫଳରେ ଅଧିକ ଭାବେ ପ୍ରଭାବଶାଳୀ ଗୋଷ୍ଠୀ ଉପରେ ନିର୍ଭରଶୀଳ ହୋଇଛନ୍ତି । ଏହି ସଂରକ୍ଷଣ ବ୍ୟବସ୍ଥା ତଫସିଲବର୍ଗର ସଦସ୍ୟମାନଙ୍କୁ ଏଭଳି ଏକ ଅଦ୍ଭୁତ ରାଜନୈତିକ କ୍ଷମତା ଦେଇଛି ଯେଉଁ କ୍ଷମତା ପଦହୀନ, ବାକ୍‌ଶକ୍ତି ବିହୀନ ଓ ଶୁଣିବା ଶକ୍ତି ରହିତ । ଏହା କିଛି କହିପାରିବ ନାହିଁ କିମ୍ବା କରିପାରିବ ନାହିଁ ।" (ଶ୍ରୀ କାଭି ଲୋକସଭା ବିତର୍କ, ୩୦-୧୧-୧୯୫୯, ସ୍ତମ୍ଭ-୨୨୬୭) ଆମର ଏସବୁ ଏଠାରେ ଅବତାରଣା କରିବାର ଉଦ୍ଦେଶ୍ୟ ହେଲା ସମ୍ବିଧାନକୁ ପୁନଃ ସଂଶୋଧିତ କରି 'ରାଜନୈତିକ ସଂରକ୍ଷଣ' ର ୧୯୬୧ ପୂର୍ବର ସ୍ଥିତାବସ୍ଥା ଫେରାଇ ଆଣି ପାରିଲେ ହିଁ ଆମ୍ବେଦକରଙ୍କର ସ୍ୱପ୍ନ ସାକାର ହୋଇପାରିବ ଏବଂ ଏକ ନିର୍ଦ୍ଦିଷ୍ଟ ସମୟସୀମା ଭିତରେ ତଫସିଲ ବର୍ଗ ତଥା ଅନ୍ୟାନ୍ୟ ସଂଖ୍ୟାଲଘୁମାନଙ୍କୁ ସାମାଜିକ ନ୍ୟାୟ ପ୍ରଦାନ ପୂର୍ବକ ଏକ ଜ୍ଞାନ ସ୍ତରକୁ ଆଣି ଏହି ସଂରକ୍ଷଣ ବ୍ୟବସ୍ଥାର ଯେତେଶୀଘ୍ର ସମ୍ଭବ ପରିସମାପ୍ତି ଘଟାଇବା ସମ୍ଭବ ହୋଇ ପାରିବ । ନହେଲେ ଯେଉଁ ଢଙ୍ଗରେ ଏହି ରାଜନୈତିକ ସଂରକ୍ଷଣ ବ୍ୟବସ୍ଥା

କାର୍ଯ୍ୟ କରୁଛି ସେଥିରେ ଏହି ରାଜନୈତିକ ତଥା ନିଯୁକ୍ତ କ୍ଷେତ୍ରରେ ଥିବା ସଂରକ୍ଷଣ ଅନିର୍ଦ୍ଦିଷ୍ଟ କାଳଯାଏ ଚାଲିବ । ଏହାଦ୍ୱାରା କେବଳ ରାଜନୀତି ସହିତ ସମ୍ପୃକ୍ତ କେତେକ ନେତା ଓ ଏହି ବର୍ଗର ବୁଦ୍ଧିଜୀବୀ ଗୋଷ୍ଠୀର କିଛି ଲୋକ କ୍ରମାଗତ ଭାବେ ଉପକୃତ ହୋଇ ଚାଲିଥିବେ ସିନା ଗ୍ରାମାଞ୍ଚଳରେ ଥିବା ଏହି ବର୍ଗର ଲୋକମାନେ ଯେଉଁ ତିମିରେକୁ ସେହି ତିମିରେ ରହିଯିବେ ଏବଂ ହିନ୍ଦୁସମାଜର ଜାତିପ୍ରଥା ଆଦୌ ଲୋପ ପାଇବ୍ ନାହିଁ । ଏହି ଅବସ୍ଥାକୁ ଲକ୍ଷ୍ୟକରି ୧୯୬୯ରେ ଯେତେବେଳେ ଲୋକସଭାରେ 'ରାଜନୈତିକ ସଂରକ୍ଷଣ'କୁ ଆହୁରି ୧୦ ବର୍ଷ ବଢ଼ାଇବାକୁ ସମ୍ବିଧାନ ସଂଶୋଧନ ପ୍ରସ୍ତାବ ଆସିଲା ତା' ଉପରେ ବିତର୍କରେ ଅଂଶଗ୍ରହଣ କରି ଜନୈକ ମାନ୍ୟବର ସଭ୍ୟ ଏହା ଆଗାମୀ ୧୦୬ ବର୍ଷ ପର୍ଯ୍ୟନ୍ତ ଓ ଅନ୍ୟଜଣେ ୩୨୯ ବର୍ଷ ପର୍ଯ୍ୟନ୍ତ ବଳବତ୍ତର ରହିବ ବୋଲି ଯାହା କହିଥିଲେ ଏ କଥା ଭୁଲିଯିବାର ନୁହେଁ । (ଲୋକସଭା ବତର୍କ, ୨୧୨.୬୯, ସ୍ତମ୍ଭ-୨୫୧) ଆମ୍ବେଦକରଙ୍କ ସଂଗ୍ରାମ କେବଳ ଭାରତୀୟ ଦଳିତମାନଙ୍କପାଇଁ ଉଦ୍ଦିଷ୍ଟ ଥିଲା ବୋଲି କହିବା ଠିକ୍ ହେବନାହିଁ । ତାଙ୍କର ଦର୍ଶନ ସମଗ୍ର ବିଶ୍ୱର ଯେକୌଣସି ଦଳିତ, ଅତ୍ୟାଚାରିତ ବା ବାଂଛିତ ମଣିଷ ସମାଜପାଇଁ ଅଭିପ୍ରେତ । ଗୋଟିଏ ବାକ୍ୟରେ ସେ ମୁକ୍ତିକାମୀ ମଣିଷ ଉଦ୍ଦେଶ୍ୟରେ ତାଙ୍କ ବାର୍ତ୍ତା ଦେଇଯାଇଛନ୍ତି, 'ଶିକ୍ଷିତ ହୁଅ, ସଂଗଠିତ ହୁଅ ଓ ସଂଗ୍ରାମ କର ।' ଶିକ୍ଷା ହିଁ ମଣିଷର ସ୍ଥିତି ସମ୍ପର୍କରେ ତାକୁ ସଚେତନ କରିପାରିବ । ଯଦି ଏହି ସ୍ଥିତି ବିପନ୍ନ ବୋଲି ସେ ବିଚାର କରୁଥାଏ ତେବେ ତାକୁ ସେହିପରି ସମଦଶା ଭୋଗୁଥିବା ମଣିଷମାନଙ୍କୁ ଏକାଠି କରି ସଂଗଠନ ସୃଷ୍ଟି କରିବାକୁ ହେବ । ବ୍ୟପକ ସଂଗଠନ ମାଧ୍ୟମରେ ହିଁ ଯେକୌଣସି ସାମାଜିକ ପରିବର୍ତ୍ତନପାଇଁ ସଂଗ୍ରାମ କରାଯାଇ ପାରିବ । ଏହି ସତ୍ୟକୁ ପୃଥିବୀର ଯେକୌଣସି ପ୍ରାନ୍ତରେ ବାସ କରୁଥିବା ଅତ୍ୟାଚାରିତ ମଣିଷର ମୁକ୍ତପାଇଁ ପ୍ରୟୋଗ କରାଯାଇ ପାରିବ । ସମ୍ବିଧାନ ପ୍ରଣୟନ ସଭାରେ ୨୫ ନଭେମ୍ବର ୧୯୪୯ରେ ସେ କହିଥିଲେ, 'ଆମ ଭିତରେ ବହୁ ଜାତି ଓ ଧର୍ମ ବିଶ୍ୱାସକୁ ନେଇ ନାନାପ୍ରକାର ମତାନ୍ତର ରହିଛି, ପୁଣି ଏବେ ଆମେ ପରସ୍ପର ବିରୋଧୀ ଓ ଭିନ୍ନଭିନ୍ନ ଆଦର୍ଶବାଦରେ ବିଶ୍ୱାସୀ ବହୁ ରାଜନୈତିକ ଦଳକୁ ନେଇ କାର୍ଯ୍ୟ କରିବାକୁ ଯାଉଛେ । ଭାରତୀୟମାନେ ଦେଶକୁ ଧର୍ମବିଶ୍ୱାସର ଊର୍ଦ୍ଧ୍ୱରେ ରଖିବେ ନା ନିଜ ଧର୍ମ ବିଶ୍ୱାସକୁ ଦେଶଠାରୁ ବେଶୀ ସମ୍ମାନ ଦେବେ, ଆମେ ଜାଣୁନାହିଁ । କିନ୍ତୁ ଏହା ନିଶ୍ଚିତ ଯେ ଯଦି ରାଜନୈତିକ ଦଳମାନେ ସେମାନଙ୍କ ଧର୍ମବିଶ୍ୱାସକୁ ରାଷ୍ଟ୍ରଠାରୁ ଅଧିକ ଗୁରୁତ୍ୱ ଦେବେ ତେବେ ଆମର ସ୍ୱାଧୀନତା ଦ୍ୱିତୀୟଥରପାଇଁ ସଙ୍କଟାପନ୍ନ ହେବ ଏବଂ ହୁଏତ ଆମେ ସବୁଦିନପାଇଁ ଏହାକୁ ହରାଇ ବସିବା ।'

ଆମ୍ବେଦକର ବୀରପୂଜାର ବିରୋଧୀ ଥିଲେ । ତାଙ୍କ ମତରେ 'ବୀରପୂଜା' ପ୍ରଥା ହିଁ ଭାରତୀୟମାନଙ୍କୁ ବହୁକ୍ଷେତ୍ରରେ ଦୁର୍ବଳ କରି ଦେଇଛି । ତେଣୁ ଆମ୍ବେଦକର ଆଜି ଆମଠାରୁ ସେଇଭଳି 'ବୀରପୂଜା' ଚାହାନ୍ତି ନାହିଁ । ବରଂ ତାଙ୍କ ଆଦର୍ଶକୁ ସଠିକ୍ ଭାବେ ରୂପାୟନ କରାଯାଇ ପାରିଲେ ତାହା ତାଙ୍କ ପ୍ରତି ଯଥାର୍ଥ ଶ୍ରଦ୍ଧାଞ୍ଜଳି ହେବ । ସେ ଜଣେ ହେତୁବାଦୀ ଥିଲେ । ଯୁକ୍ତି, ପ୍ରମାଣ ଓ ସତ୍ୟକୁ ନେଇ ସେ ଏକ ସିଦ୍ଧାନ୍ତରେ ପହଞ୍ଚୁଥିଲେ । ରାଜନୀତିରେ ମଧ୍ୟ ସେ ତାହାହିଁ କରିବାକୁ ଚାହିଁଥିଲେ । କିନ୍ତୁ ଦୁଃଖର ବିଷୟ ଯେ ଆଜିର ରାଜନୈତିକ ନେତାମାନେ ପ୍ରଥମେ ନିଜ ସୁବିଧା ଅନୁସାରେ ଏକ ସିଦ୍ଧାନ୍ତରେ ଉପନୀତ ହୁଅନ୍ତି ଓ ତାକୁ ଅନ୍ୟମାନେ ଗ୍ରହଣ କରିବାପାଇଁ ଆବଶ୍ୟକ ଯୁକ୍ତି, ପ୍ରମାଣ ଓ ବହୁ ତଥାକଥିତ ସତ୍ୟକୁ ତା' ଉପରେ ଆରୋପିତ କରି ଦିଅନ୍ତି । ଆମ୍ବେଦକର ଦର୍ଶନ ଆଜିର ନେତାମାନଙ୍କୁ ଅନୁପ୍ରାଣିତ କରୁ- ସତ୍ୟ ଓ ନ୍ୟାୟର ପ୍ରତିଷ୍ଠାପାଇଁ ସମସ୍ତେ ସଂକଳ୍ପବଦ୍ଧ ହୁଅନ୍ତୁ, ଏହାହିଁ ଆଜିର କାମନା ।

ସୌଜନ୍ୟ : ପୂର୍ଣ୍ଣଚନ୍ଦ୍ର ମଲିକ, *ସମ୍ବାଦ*, ୧୯୯୮ (୧୬ ଏପ୍ରିଲ) ।

# ସାମାଜିକ ନ୍ୟାୟର ପ୍ରତୀକ ଆମ୍ବେଦକର

ମାନସ ବେହେରା

ବର୍ଣ୍ଣବୈଷମ୍ୟବାଦ ପରି ଭାରତରେ ଜାତିପ୍ରଥା ଏକ ଘୃଣ୍ୟ ବ୍ୟବସ୍ଥା । କିନ୍ତୁ ଦୁର୍ଭାଗ୍ୟର ବିଷୟ ହେଉଛି ଯେ, ଏକବିଂଶ ଶତାବ୍ଦୀରେ ମଧ୍ୟ ଆମେ ଏଥିରୁ ମୁକ୍ତି ପାଇପାରିନାହାନ୍ତି । ଆହୁରି ଦୁର୍ଭାଗ୍ୟ ଯେ, ସମାଜ ବିଜ୍ଞାନରେ ଏବେ ବି ଜାତିପ୍ରଥାର ଉପକାର ସମ୍ବନ୍ଧରେ ଛାତ୍ରମାନଙ୍କୁ ଶିକ୍ଷା ପ୍ରଦାନ କରାଯାଉଛି । ଏ କ୍ଷେତ୍ରରେ ଡଃ ଭୀମରାଓ ଆମ୍ବେଦକରଙ୍କ ଅବଦାନ ପ୍ରଣିଧାନଯୋଗ୍ୟ । ଆମ୍ବେଦକର ଜୀବନବ୍ୟାପୀ ଅସମାନ ଘୃଣ୍ୟ, ଅପମାନଜନକ ସାମାଜିକ ଓ ସାଂସ୍କୃତିକ ବ୍ୟବସ୍ଥା ବିରୋଧରେ ନିରବଚ୍ଛିନ୍ନ ସାଲିସହୀନ ସଂଗ୍ରାମ କରି ଭାରତ ବର୍ଷରେ ଦଳିତ ଆନ୍ଦୋଳନକୁ ଆଦର୍ଶଗତ ଓ ସାଂଗଠନିକ ଦିଗଦର୍ଶନ ଦେଇଛନ୍ତି । ଆଜି ଦଳିତ ଆନ୍ଦୋଳନ, ମୁକ୍ତିର ବାର୍ତ୍ତା ଓ ଚେତନା ବ୍ୟାପକ ହୋଇଛି ତଥା ପରିଚୟ ଭିତ୍ତିରେ ରାଜନୈତିକ ସଂଗଠନ ଓ ଶକ୍ତିର ଅଭ୍ୟୁଦୟ ହୋଇଛି । କେବଳ ରାଜ୍ୟରେ ନୁହେଁ ଦେଶରେ ମଧ୍ୟ ଏକ ହସ୍ତକ୍ଷେପକାରୀ ଶକ୍ତିରେ ଏହା ପରିଣତ ହୋଇଛି । ଏହାପଛରେ ଆମ୍ବେଦକରଙ୍କ ଅବଦାନ ସର୍ବାଗ୍ରେ ରହିଛି । କିନ୍ତୁ ଏସବୁ ସତ୍ୟ ବି ଆମ୍ବେଦକରଙ୍କ ସ୍ୱପ୍ନର ସାମାଜିକ ନ୍ୟାୟ ଏବେ ବି ଅଗଣିତ ସାଧାରଣ ଦଳିତମାନଙ୍କପାଇଁ ସ୍ୱପ୍ନ ବରାବର ରହିଛି । ଏକ ସମୃଦ୍ଧି, ଶିକ୍ଷୋନ୍ନତି, ଶକ୍ତିଶାଳୀ ରାଷ୍ଟ୍ରର ସ୍ୱପ୍ନ ବିଦ୍ୟାଳୟରେ ସର୍ବତ୍ରମାନଙ୍କ ସହ ମିଶି ପାଣି ପିଇପାରୁ ନାହିଁ । ଜାତିପାଇଁ ଶିକ୍ଷକର ବେତ୍ରାଘାତର ପାଇଥିବା ସରକାରୀ କର୍ମଚାରୀଙ୍କୁ ଅଫିସରେ ଅପମାନ ଓ ଲାଞ୍ଛନାର ଶୀକାର ହେବାକୁ ପଡୁଛି । ତଥାକଥିତ ବ୍ରାହ୍ମଣବାଦୀମାପଦଣ୍ଡ 'ମେଧା' ର ଶୀକାରରେ ଦଳିତମାନେ ଭୟରେ ହୀନମନ୍ୟତାର ଶୀକାର ହେଉଛନ୍ତି । ଏ ପରିପ୍ରେକ୍ଷୀରେ ଆମ୍ବେଦକରଙ୍କ ସଂଗ୍ରାମ ସ୍ମରଣୀୟ ।

ଆମ୍ବେଦକରଙ୍କ ପୂର୍ବରୁ ବହୁ ମନିଷୀ ଜାତିପ୍ରଥା ବିରୋଧରେ ସ୍ୱର ଉତ୍ତୋଳନ କରିଆସିଛନ୍ତି । କିନ୍ତୁ ଏ କ୍ଷେତ୍ରରେ ଆମ୍ବେଦକରଙ୍କର ସ୍ଥାନ ସ୍ୱତନ୍ତ୍ର କାରଣ ସାମାଜିକ ନ୍ୟାୟ ପ୍ରତିଷ୍ଠାପାଇଁ ତଥା ଦଳିତ ମୁକ୍ତିପାଇଁ ଯେ ଯେଉଁ ରଣକୌଶଳ ଓ ମାର୍ଗ ଦର୍ଶାଇଛନ୍ତି ସେଥିରେ ତାଙ୍କର ସୃଜନଶୀଳତା ଓ ମୌଳିକତା ରହିଛି । ଭାରତ ବର୍ଷର ସ୍ୱାଧୀନତା ଆନ୍ଦୋଳନରେ ଘୃଣ୍ୟ ଜାତିପ୍ରଥାର ବିଲୋପପାଇଁ କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ନଥିଲେ । ଆମ୍ବେଦକର ଏହି ଅଭାବକୁ ପୂରଣ କରିବାକୁ ଚେଷ୍ଟା କରିଥିଲେ । ମହାତ୍ମାଗାନ୍ଧୀ ଜାତି ପ୍ରଥାର ବିଲୋପପାଇଁ ହିନ୍ଦୁ ଧର୍ମର ସଂସ୍କାର ଉପରେ ଗୁରୁତ୍ୱାରୋପ କରିଥିଲେ । କିନ୍ତୁ ଆମ୍ବେଦକର ସଠିକ୍ ଭାବରେ ଅନୁଭବ କରିଥିଲେ ଯେ, ଏହା ସମ୍ଭବ ନୁହେଁ ।

ଜାତିପ୍ରଥା ହିନ୍ଦୁଧର୍ମର ଏକ ଅନ୍ତର୍ନିହିତ ଅଂଶ । ଗାନ୍ଧୀଙ୍କ ବିଚାରରେ ପୈତୃକ ଦୟାଭାବ ପ୍ରତିଫଳିତ । ଏହାକୁ ଆମ୍ବେଦକର ପ୍ରତ୍ୟାଖ୍ୟାନ କରିଥିଲେ । ଆତ୍ମ ମର୍ଯ୍ୟାଦା ଭିତ୍ତିରେ ଦଳିତ ମୁକ୍ତି ସେ ଚାହୁଁଥିଲେ । ଏହିପରି ଭବିଷ୍ୟତର ଦଳିତ ମୁକ୍ତି ଆନ୍ଦୋଳନର ଭିତ୍ତି ପକାଇଥିଲେ । ହିନ୍ଦୁଧର୍ମ ପ୍ରତି ଆମ୍ବେଦକରଙ୍କ ସମସ୍ତ ମୋହ ତୁଟି ଯାଇଥିଲା । ସେ ଏହା ବିରୋଧରେ ପ୍ରତିବାଦ କରି ବୌଦ୍ଧଧର୍ମ ଗ୍ରହଣ କରିଥିଲେ । ଏହା ଏକ ନୂତନ ପରିଚୟର ପ୍ରତୀକ ଥିଲା ।

ଆଜି ଦଳିତମାନଙ୍କ ମଧ୍ୟରେ ଏକ ନବ୍ୟଧନୀକ ଶ୍ରେଣୀ ସୃଷ୍ଟି ହୋଇଛି । ଏମାନେ ଅସମାନ ବ୍ୟବସ୍ଥା ବିରୋଧରେ ପ୍ରତିବାଦ କରିବା ପରିବର୍ତ୍ତେ ଏହି ବ୍ୟବସ୍ଥାର କନିଷ୍ଠ ଭାଗିଦାରୀରେ ସନ୍ତୁଷ୍ଟ । କ୍ରମବର୍ଦ୍ଧିଷ୍ଣୁ ଦଳିତ ଆନ୍ଦୋଳନ ଓ ଚେତନାର ଠିକାଦାରଭାବରେ ଦଳିତନେତାମାନେ କ୍ଷମତାର ନିକଟବର୍ତ୍ତୀ ହୋଇ ଦଳିତ ଆନ୍ଦୋଳନର ସ୍ୱାଧୀନ ଓ ସ୍ୱତନ୍ତ୍ର ଭିତ୍ତିକୁ ଦୁର୍ବଳ କରୁଛନ୍ତି । ଏହା ଏକ ନବ୍ୟ-ମଧ୍ୟମ ବର୍ଗର ଶ୍ରେଣୀ ଚରିତ୍ର । ଏଥିରେ ଦଳିତମାନଙ୍କର ସାର୍ବଜନୀନ ମୁକ୍ତି ସମ୍ଭବ ନୁହେଁ । ଆମ୍ବେଦକର ସଂରକ୍ଷଣର ସୀମିତତାକୁ ସଠିକ୍‌ଭାବେ ବୁଝିଥିଲେ । ଏଣୁ ଆମ୍ବେଦକରଙ୍କ ସ୍ୱପ୍ନର ସାମାଜିକ ନ୍ୟାୟ ପ୍ରତିଷ୍ଠାପାଇଁ ତଥା ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ଶୋଷଣର ଶୀକାର ହେଉଥିବା ସାଧାରଣ ଦଳିତର ମୁକ୍ତିପାଇଁ ଦଳିତମାନଙ୍କର ତଥାକଥିତ କ୍ଷମତାପ୍ରାପ୍ତ ଲୋକମାନେ ଏକ ଶ୍ରେଣୀଭିତ୍ତିକ, ସ୍ୱାଧୀନ ସ୍ୱତନ୍ତ୍ର ମଞ୍ଚରୁ ସଂଗ୍ରାମ ଆରମ୍ଭ କରିବା ଆବଶ୍ୟକ । ଉଚ୍ଚବର୍ଗ ଓ ଶ୍ରେଣୀ ନିୟନ୍ତ୍ରିତ ରାଜନୈତିକ ଶକ୍ତିର ପଛଗୋଡ଼ାଣିଆ ନହୋଇ ସାମାଜିକ ଓ ଅର୍ଥନୈତିକ ନ୍ୟାୟ ପ୍ରତିଷ୍ଠାପାଇଁ ଏହାର ଐତିହାସିକ ଆବଶ୍ୟକତା ରହିଛି । ଅତଏବ ଆମ୍ବେଦକରଙ୍କ ନିର୍ଦ୍ଦେଶିତ ମାର୍ଗ ହିଁ ଏହାର ପଥପ୍ରଦର୍ଶକ ବୋଲି ହୃଦୟଙ୍ଗମ କରିବା ଉଚିତ ।

# ଆଧୁନିକ ଭାରତର ଗୌତମ ବୁଦ୍ଧ, ଭୀମରାଓ ଆମ୍ବେଦକର: ଜଣେ ଦୂରଦୃଷ୍ଟି ସମ୍ପନ୍ନ ଦେଶ ନିର୍ମାତା

ପ୍ରଶାନ୍ତକୁମାର ପ୍ରଧାନ

ଗୌତମବୁଦ୍ଧ ଭାରତୀୟ ସଂସ୍କୃତିର ତାର୍କିକ ପରମ୍ପରାର ଜଣେ ମହାନ ଧରୋହର ଥିଲେ । ଏହି ତର୍କ ପରମ୍ପରା କାହିଁ କେଉଁ ଯୁଗରୁ ଭାରତର ବୌଦ୍ଧିକ ଜୀବନକୁ ଗୁଦ୍ଧିମନ୍ତ କରି ଆସିଛି । ଭାରତୀୟ ସର୍ବପୁରାତନ ବନବାସୀ ସଂସ୍କୃତିରେ ମଧ୍ୟ ତର୍କ ଜୀବନର ପ୍ରାଧାନ୍ୟ ଥିଲା ଯାହା ସିନ୍ଧୁଘାଟିର ପଶୁପତିଙ୍କ ଯୋଗାସନ ମାଧ୍ୟମରେ ସମୃଦ୍ଧହୋଇ ଆର୍ଯ୍ୟଯୁଗର ଉପନିଷଦମାନଙ୍କରେ ଥିବା ଅବ୍ରାହ୍ମଣମାନଙ୍କର ଜୀବନର ମୌଳିକତାକୁ ନେଇ ପ୍ରଶ୍ନାବଳୀ ପରିପୁଷ୍ଟ ହୋଇଥିଲା । କେବଳ ଏତିକି ନୁହେଁ, ଏହି ତର୍କ ମନୋବୃତ୍ତି ବୁଦ୍ଧଙ୍କ ଯୁଗରେ ବଳଶାଳୀ ହୋଇ ରୂଢ଼ୀବାଦୀ ଧର୍ମାନ୍ଧତାକୁ ଆହ୍ୱାନ ଦେଇ ଦେଇ ଆଜି ପର୍ଯ୍ୟନ୍ତ ମଧ୍ୟ, ସମସ୍ତ ଉପେକ୍ଷା ଓ ସମାଲୋଚନା ସତ୍ତ୍ୱେ, ସାଧାରଣ ମଣିଷର ସତ୍ତା ମଧ୍ୟରେ ଜୀଇଁ ରହିଛି । ଭାରତୀୟ ପ୍ରତିବାଦୀ ତର୍କ ପରମ୍ପରାର ଯେଉଁ ସମୃଦ୍ଧ କ୍ଷେତ୍ର ସମାନ୍ତବାଦୀ ରାଜତନ୍ତ୍ରର ସକଳ ଚେଷ୍ଟା ସତ୍ତ୍ୱେ ଲୋପପାଇ ନଥିଲା । ତା'ର ଗୋଟିଏ ଉନ୍ନତ ସଂସ୍କରଣ ମୁଣ୍ଡ ଟେକି ଏକ ଶକ୍ତିଶାଳୀ ବୌଦ୍ଧିକ ଧାରାରେ ରୂପାନ୍ତରିତ ହୋଇଥିଲା ଆଧୁନିକ ଭାରତର ଜଣେ ଯୋଗଜନ୍ମା ଓ ତୀକ୍ଷଣବୁଦ୍ଧି ସମ୍ପନ୍ନ ଦେଶ ନିର୍ମାତା ବାବା ସାହେବ ଭୀମରାଓ ଆମ୍ବେଦକରଙ୍କ ବ୍ୟକ୍ତିତ୍ୱରେ । ବୁଦ୍ଧଙ୍କ ଭଳି ଆମ୍ବେଦକର ସମାଜରେ ରହିଥିବା ସମସ୍ତ ଅନୀତି ଓ ଅତ୍ୟାଚର ବିରୁଦ୍ଧରେ ସାଲିସହୀନ ସଂଗ୍ରାମ କରିଥିଲେ । ସମସ୍ତ ଉପେକ୍ଷା ଓ ଅଣଦେଖା ସତ୍ତ୍ୱେ ତାଙ୍କ ବ୍ୟକ୍ତିତ୍ୱର ପ୍ରଚଣ୍ଡତା ଓ ସର୍ବୋପରି ସାଧାରଣ ମଣିଷ ପ୍ରତି ତାଙ୍କର ପ୍ରଚୁର ପ୍ରେମ ତାଙ୍କୁ ମହାନ ଜନନାୟକରେ ପରିଣତ କରିଥିଲା । ଗାନ୍ଧୀଙ୍କ ଯୁଗରେ ଜନ୍ମ ହୋଇଥିବା ବହୁ ପ୍ରଚଣ୍ଡ ପ୍ରତିଭାଧର ଭାରତୀୟ ଜନନାୟକ ଯେତେବେଳେ ଗାନ୍ଧୀଙ୍କ ଔଜ୍ଜଲ୍ୟ ଯୋଗୁ ବହୁମାତ୍ରାରେ ନିଷ୍ପ୍ରଭ ହୋଇଯାଇଥିଲେ, ସେତିକି ବେଳେ ମହାତ୍ମାଙ୍କୁ ସାମ୍ନାସାମ୍ନି ଆହ୍ୱାନ ଦେଇ ତାଙ୍କ କାର୍ଯ୍ୟକ୍ରମଗୁଡ଼ିକରେ ବି ଭୁଲ ଥାଇ ପାରେ ବୋଲି ସମାଲୋଚନା କରି ବାବା ସାହେବ ଆମ୍ବେଦକର କେବଳ ଯେ ନିଜର ବ୍ୟକ୍ତିତ୍ୱକୁ ସ୍ୱଚ୍ଛ ଭାବରେ ଗାନ୍ଧୀ ଯୁଗର ପ୍ରଚଣ୍ଡ ପ୍ରଭାବରୁ ମୁକ୍ତ ରଖି ପାରିଥିଲେ ତା ନୁହେଁ, ତା ସହିତ ନିଜର ଆଦର୍ଶ ଓ ମୂଲ୍ୟବୋଧ ଗୁଡ଼ିକର ଉଚ୍ଚମାନର ତାତ୍ତ୍ୱିକ ଆଲୋଚନା କରି ଉଭୟ ଜ୍ଞାନ ଓ କର୍ମ ମାଧ୍ୟମରେ ସେଗୁଡ଼ିକୁ ଆଧୁନିକଯୁଗର ମହିମାନ୍ୱିତ ଆଦର୍ଶ ବୋଲି ପ୍ରମାଣିତ କରିବାରେ ସଫଳ ହୋଇଥିଲେ ।

ଭାରତୀୟ ସମାଜର ରକ୍ଷଣଶୀଳ ହିନ୍ଦୁମାନେ ବାବା ସାହେବଙ୍କୁ ଶତ୍ରୁ ରୂପରେ ଦେଖନ୍ତି । କାରଣ ସେ ଥିଲେ ବେସାଲିସ କର୍ମବୀର ଓ ଯୁକ୍ତିନିଷ୍ଠ । ଉଭୟ ଜ୍ଞାନ ଓ କର୍ମ କ୍ଷେତ୍ରରେ ସେ ଥିଲେ ପାରଙ୍ଗମ । ତେଣୁ ରୁଢ଼ୀବାଦୀମାନେ ତାଙ୍କୁ ସହ୍ୟ କରିପାରୁ ନଥିଲେ । ମାତ୍ର ଗୋଟିଏ ନିଛକ କଥା ଏହା ଯେ ହିନ୍ଦୁଧର୍ମ ଓ ତାର ସମାଜରେ ପ୍ରଚଳିତ ବିଭିନ୍ନ କୁସଂସ୍କାର ବିରୁଦ୍ଧରେ ଅହରହ ଯୁଦ୍ଧ କରିକରି ବାବା ସାହେବ ପ୍ରକାରାନ୍ତରେ ଏହି ଧର୍ମରେ ବହୁ ସଂସ୍କାର ଆଣିବାରେ ସାହାଯ୍ୟ କରିଥିଲେ । ଗୋଟିଏ ଅତିପୁରାତନ ଧର୍ମ କିଭଳି ଆଧୁନିକ ମଣିଷପାଇଁ ଉପଯୋଗୀ ହୋଇ ପାରିବ ସେକଥା ଆମ୍ବେଦକର ନିଜର ଦୃଢ଼ ତର୍କଶକ୍ତି ଓ ବିଦ୍‌ବତ୍ତା ସାହାଯ୍ୟରେ ହିନ୍ଦୁଧର୍ମର ସଂରକ୍ଷକମାନଙ୍କୁ ଜଣାଇ ଦେଇଥିଲେ । ଆଧୁନିକ ଯୁଗରେ ଏକ ଗଣ ତାନ୍ତ୍ରିକ ଦେଶରେ ସାମାଜିକ ଶ୍ରେଣୀବିଭାଗ ଓ ଜାତିପ୍ରଥା ଯେ ଆଉ ଗୌରବର କଥା ନୁହେଁ ବରଂ ଲଜ୍ଜାର ପ୍ରସଙ୍ଗ ତାହା ସେ ସେମାନଙ୍କୁ ଜଣାଇ ଦିଆଯାଇଥିଲା ଯେ ସେମାନେ ଆଉ ଆଗପରି ପ୍ରତିରୋଧ ବିହୀନ ନୁହଁନ୍ତି, ମୁକ୍ତ ନୁହଁନ୍ତି, ତାଙ୍କୁ ବର୍ତ୍ତମାନ ଗୋଟିଏ ଆଧୁନିକଯୁଗର ସଚେତନ ଗୋଷ୍ଠୀମାନଙ୍କର ପ୍ରତିରୋଧର ସାମନା କରିବାକୁ ପଡ଼ିବ ।

ହିନ୍ଦୁଧର୍ମକୁ ବଦଳାଇବାକୁ ଯାଇ ଡଃ.ଆମ୍ବେଦକର ଶେଷ ପର୍ଯ୍ୟନ୍ତ ପ୍ରୟାସ କଲେ ମଧ ବିଫଳ ହୋଇ ଶେଷରେ ହିନ୍ଦୁ ଧର୍ମକୁ ପରିତ୍ୟାଗ କରି ବୌଦ୍ଧଧର୍ମ ଗ୍ରହଣ କରିଥିଲେ । ବୌଦ୍ଧଧର୍ମର ମହାନତାକୁ ବ୍ୟାଖ୍ୟା କରିବାକୁ ଯାଇ ଡଃ.ଆମ୍ବେଦକର କହିଥିଲେ ଯେ ଯେପରି ବୌଦ୍ଧଧର୍ମରେ ତପସ୍ୟା, ସଂସ୍କାର-ନିବୃତ୍ତତା ଓ ସଂଘୀୟ ଜୀବନକୁ ମୌଳିକ ଆଧାର ବୋଲି ଗ୍ରହଣ କରାଯାଇଥାଏ, ସେହିପରି ସାମାଜିକ ଓ ରାଜନୈତିକ କ୍ଷେତ୍ରରେ ଥିବା କୁସଂସ୍କାର ଓ ଭେଦଭାବ ବିରୁଦ୍ଧରେ ଏହାର ଏକ ଶକ୍ତିଶାଳୀ ପ୍ରତିରୋଧ ମନୋବୃତ୍ତି ମଧ ଏହି ଧର୍ମର ମୂଳ ଆଧାର ଅଟେ । ଖ୍ରୀ.ପୂ. ୬ଷ୍ଠ ଶତାବ୍ଦୀରେ ମହାତ୍ମା ବୁଦ୍ଧଙ୍କ ଭଳି ବାବା ସାହେବ ବିଂଶ ଶତାବ୍ଦୀରେ ପୁଣି ଥରେ ଏକ ଲୋକପ୍ରିୟ ଓ ଶକ୍ତିଶାଳୀ ସାମାଜିକ ଓ ବୌଦ୍ଧିକ ବିପ୍ଳବର ସୂତ୍ରପାତ କରିବାରେ ସଫଳ ହୋଇଥିଲେ ।

ସମସ୍ତେ ଜାଣନ୍ତି ଯେ, ଡ଼ଃ.ଭୀମରାଓ ଆମ୍ବେଦକର ମୋଃ (MHOW) (ମଧ ପ୍ରଦେଶ) ଠାରେ ଗୋଟିଏ ଆର୍ମି କ୍ୟାଣ୍ଟିନମେଣ୍ଟରେ ଏକ ତଥାକଥିତ ଅସ୍ପୃଶ୍ୟ ମାହାର ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ଜନ୍ମ ୧୮୯୧ ମସିହା ଏପ୍ରିଲ ମାସ ୧୪ ତାରିଖରେ ହୋଇଥିଲା । ସେ ତାଙ୍କ ଜୀବନରେ ପ୍ରତିଟି କ୍ଷେତ୍ରରେ ଉଚ୍ଚବର୍ଣ୍ଣର ତିରସ୍କାର, ଉପେକ୍ଷା ଓ ଘୃଣା ଦେଖି ଆସିଥିଲେ, ଯଦିଓ ଜୀବନର ବହୁ କ୍ଷେତ୍ରରେ ତାଙ୍କର ସଫଳତାକୁ ପାଇବାପାଇଁ ବହୁ ଉଚ୍ଚବର୍ଣ୍ଣର ଲୋକ ବ୍ୟାକୁଳ ଥିଲେ । ଜଣେ ବିଜ୍ଞ ଅର୍ଥ ଶାସ୍ତ୍ରୀ ଓ

ସମାଜଶାସ୍ତ୍ରୀ ଥିଲେ ଡଃ.ଆମ୍ବେଦକର ଯିଏ ଇଂଲଣ୍ଡ ଓ ଆମେରିକାର ବହୁତ ସମ୍ମାନୀୟ ବିଶ୍ୱପ୍ରସିଦ୍ଧ ଲଣ୍ଡନ ଓ କଲମ୍ବିଆ ବିଶ୍ୱବିଦ୍ୟାଳୟରୁ ସର୍ବୋଚ୍ଚ ଡ଼ିଗ୍ରୀ ପ୍ରାପ୍ତ ହୋଇଥିଲେ । ତଥାପି ତାଙ୍କର ଜନ୍ମ ତଥାକଥିତ ଅସ୍ପୃଶ୍ୟ ଜାତିରେ ହୋଇଥିବାରୁ ତତ୍‌କାଳୀନ ଉଚ୍ଚବର୍ଗ-ଅଧ୍ୟୁଷିତ ବୌଦ୍ଧିକ ଜଗତର ଘୃଣା ଓ ହେୟ ଜ୍ଞାନର ଶିକାର ହୋଇଥିଲେ । ଅହଂରେଚୂର ଉଚ୍ଚବର୍ଗର ତଥା କଥିତ ଶାସ୍ତ୍ରୀମାନେ ଗ୍ରହଣ କରିପାରୁ ନ ଥିଲେ ବା କିପରି ଏକ ଅସାମଞ୍ଜସ୍ୟରେ ରହିଯାଇଥିଲେ ଯେ ତଥାକଥିତ ତଳବର୍ଗର ଜଣେ ମଣିଷ ଏତେ ଜ୍ଞାନୀ, ତତ୍ତ୍ୱବିଦ୍ ଓ ଯୁକ୍ତିନିଷ୍ଠ ହୋଇପାରେ ! ଜାତିପ୍ରଥା ହିନ୍ଦୁ ସମାଜର ସମସ୍ତ ଦୁର୍ଦ୍ଦଶାର ମୂଳ କାରଣ ବୋଲି ଆମ୍ବେଦକର ହୃଦୟଙ୍ଗମ କରି ତାହାକୁ କଠୋର ଭାଷାରେ ସମାଲୋଚନା କରିଥିଲେ । ସେତେବେଳର ଉଚ୍ଚବର୍ଗର ସଂସ୍କାରକମାନଙ୍କର ଦ୍ୱୈତ ମନୋବୃତ୍ତି ତାଙ୍କୁ ଯନ୍ତ୍ରଣା ଦେଇଥିଲା । ସେ ଶେଷକୁ ଅନୁଭବ କଲେ ଯେ ହିନ୍ଦୁଧର୍ମ ବୋଇଲେ ହିଁ ଜାତିପ୍ରଥା ଓ ଅସ୍ପୃଶ୍ୟତା ବା ଜାତିପ୍ରଥା ହିଁ ହିନ୍ଦୁଧର୍ମ । ତେଣୁ ଯେ ପର୍ଯ୍ୟନ୍ତ ଜାତି ପ୍ରଥା ଓ ବର୍ଣ୍ଣ ବ୍ୟବସ୍ଥା ରହିଥିବ ସେପର୍ଯ୍ୟନ୍ତ ହିନ୍ଦୁ ଧର୍ମରୁ ଅସ୍ପୃଶ୍ୟତା ଲୋପ ପାଇବ ନାହିଁ । ସେ ସିଦ୍ଧାନ୍ତରେ ପହଞ୍ଚିଥିଲେ ଯେ ହିନ୍ଦୁଧର୍ମ ଜାତିପ୍ରଥା ବିନା ତିଷ୍ଠି ପାରିବ ନାହିଁ । ସେ କହିଥିଲେ ଯେ ହିନ୍ଦୁମାନଙ୍କ ଭିତରେ ରହି ଅସ୍ପୃଶ୍ୟମାନେ କଦାପି ଜୀବନର ଉଚ୍ଚତର ସୋପାନରେ ପହଞ୍ଚି ପାରିବେ ନାହିଁ ।

ଡଃ. ଆମ୍ବେଦକର ଅସ୍ପୃଶ୍ୟମାନଙ୍କୁ ହିନ୍ଦୁ ମନ୍ଦିର ଗୁଡ଼ିକରେ ପ୍ରବେଶପାଇଁ ଆନ୍ଦୋଳନମାନ ଆୟୋଜନ କରିଥିଲେ । ସେ ଅସ୍ପୃଶ୍ୟମାନଙ୍କୁ ସାଧାରଣ କୂଅ ବା ପୋଖରୀର ପାଣି ବ୍ୟବହାର କରିବା ପାଇଁ ପ୍ରସିଦ୍ଧ ଚଉଦାର (ମହାଦ) ଆନ୍ଦୋଳନ ୧୯୨୭ ଚଳାଇଥିଲେ । ମାତ୍ର ଶେଷ ବେଳକୁ ନିରୂପାୟ ହୋଇ ସେ ପ୍ରତିଜ୍ଞା କରିଥିଲେ ଯେ ସେ ହିନ୍ଦୁ ହୋଇ ଜନ୍ମ ହୋଇଥାଇ ପାରନ୍ତି ମାତ୍ର ଜଣେ ହିନ୍ଦୁ ଭାବରେ ନିଶ୍ଚୟ ମୃତ୍ୟୁବରଣ କରିବେ ନାହିଁ । ଏହା ଘଟିଥିଲା ୧୯୩୫ ମସିହାରେ ଯେତେବେଳେ ବାବା ସାହେବ ୟେଓଲା ସମ୍ମିଳନୀରେ ଉଦ୍‌ବୋଧନ ଦେଇଥିଲେ । ଆମ୍ବେଦକର ବିଶ୍ୱାସ କରୁଥିଲେ ଯେ ଧର୍ମ ମଣିଷର ଜୀବନର ଏକ ମହାର୍ଘ୍ୟ ଆଧାର । ମାତ୍ର ଧର୍ମ ନାମରେ ଭ୍ରଷ୍ଟାଚାରକୁ ସେ ଘୃଣା କରୁଥିଲେ । ତାଙ୍କ ମତରେ ଧର୍ମ ମନୁଷ୍ୟକୁ ଚରିତ୍ରବାନ କରାଏ, ଶୁଦ୍ଧ ଓ ବିଚାରବନ୍ତ କରାଏ । ସ୍ୱେଚ୍ଛାଚାରୀ ବା ଶୋଷଣକାରୀ କେବେ ବି କରେନାହିଁ । ହିନ୍ଦୁ ସାମାଜିକ ଜୀବନ ଓ ପ୍ରଥାଗୁଡ଼ିକ କେବଳ ମନୁସ୍ମୃତି ଦ୍ୱାରା ନିୟନ୍ତ୍ରିତ ହେବା ଠିକ୍ ନୁହେଁ ବୋଲି ତାଙ୍କର ମତ ଥିଲା । ଆମ୍ବେଦକର ମନୁସ୍ମୃତିର ଅସ୍ତିତ୍ୱକୁ ଓ ତା ପ୍ରତି ହିନ୍ଦୁ ଦ୍ୱିଜ ସମାଜର ନିଷ୍ଠାକୁ ପ୍ରଶ୍ନ କରିଥିଲେ । ସେ ଯୁକ୍ତିଦ୍ୱାରା ସିଦ୍ଧି କରିଥିଲେ ଯେ ହିନ୍ଦୁ

ସାମାଜିକ ଜୀବନ ଓ ଚଳଣିଗୁଡ଼ିକ କେବଳ ମାତ୍ର ମନୁସ୍ମୃତିଦ୍ୱାରା ସର୍ବଦା ନିୟନ୍ତ୍ରିତ ନୁହେଁ, ବରଂ ବହୁ ଅନ୍ୟାନ୍ୟ ଶାଶ୍ୱତ ପୁସ୍ତକ ଗୁଡ଼ିକର ମଧ୍ୟ ଏଥିରେ ଅବଦାନ ରହିଛି । ଯେତେବେଳେ ସେ ନିଜେ ହିନ୍ଦୁଧର୍ମ ତ୍ୟାଗ କରି ବୌଦ୍ଧଧର୍ମ ଗ୍ରହଣ କରିଥିଲେ ତାଙ୍କର ଲକ୍ଷଲକ୍ଷ ଅନୁଗାମୀମାନଙ୍କୁ କହିଥିଲେ-

ଯଦି ତୁମେ ନିଜପାଇଁ ଆତ୍ମମର୍ଯ୍ୟାଦା ଓ ଆତ୍ମ ସମ୍ମାନ ଚାହଁ, ଧର୍ମ ପରିବର୍ତ୍ତନ କର ।
ଯଦି ତୁମେ ପ୍ରକୃତ ଅର୍ଥରେ ଗୋଟିଏ ଭାଗିଦାରୀ ସମାଜ ତିଆରି କରିବାକୁ ଚାହଁ, ଧର୍ମ ପରିବର୍ତ୍ତନ କର ।
ଯଦି ତୁମେ କ୍ଷମତା ଚାହଁ, ଧର୍ମ ପରିବର୍ତ୍ତନ କର ।
ଯଦି ତୁମେ ସମାନତା ଚାହଁ, ଧର୍ମ ପରିବର୍ତ୍ତନ କର ।
ଯଦି ତୁମେ ସ୍ୱାଧୀନତା ଚାହଁ, ଧର୍ମ ପରିବର୍ତ୍ତନ କର ।
ଯଦି ତୁମେ ରହୁଥିବା ପୃଥିବୀକୁ ସୁନ୍ଦର କରିବାକୁ ଚାହଁ, ଧର୍ମ ପରିବର୍ତ୍ତନ କର ।

ଡ଼ଃ. ଆମ୍ବେଦକର ଜାଣିଥିଲେ ଯେ ଭାରତୀୟ ହିନ୍ଦୁ ସମାଜର ଅର୍ଥ ହେଉଛି ଏହା ବିଭିନ୍ନ ଜାତିର ସମାହାର - ଯେଉଁଠି ଉଚ୍ଚକୁଉଚ୍ଚକୁ ଥିବା ଶ୍ରେଣୀଗୁଡ଼ିକ ସମ୍ମାନସ୍ପଦ ଥିବାବେଳେ ତଳକୁତଳକୁ ଥିବା ମଣିଷମାନେ ସେଇ ଅନୁପାତରେ ଘୃଣିତ ଅଟନ୍ତି । ଏ ସମସ୍ତ ଅବ୍ୟବସ୍ଥାପାଇଁ ସେ ମୁକ୍ତ ଭାବରେ ବ୍ରାହ୍ମଣ ସମ୍ପ୍ରଦାୟକୁ ଦାୟୀ କରୁଥିଲେ, ଯେଉଁମାନେ ନିଜର ମିଥ୍ୟା ପ୍ରତିଷ୍ଠା, ପ୍ରତିପତ୍ତି ଓ ପ୍ରାଧାନ୍ୟକୁ ବଂଚାଇ ରଖିବାପାଇଁ ଏ ଶ୍ରେଣୀ ବିଭାଗ ଓ ଜଟିଳ ପବିତ୍ରତା ଓ ଅପବିତ୍ରତାର ସ୍କେଲ ତିଆରି କରିଛନ୍ତି । ନିଜର ପ୍ରସିଦ୍ଧ ପୁସ୍ତକ "ଜାତିପ୍ରଥାର ବିନାଶ" (୧୯୩୬) ରେ ସେ ବର୍ଣ୍ଣନା କରିଛନ୍ତି, "ହିନ୍ଦୁଧର୍ମ ହେଉଛି ବିଭିନ୍ନ ଅନୁଶାସନର ଧର୍ମ, ଅସଂଖ୍ୟ ପୂଜା-ପଦ୍ଧତିର ଗୋଟିଏ ଗନ୍ତାଘର, ଯେଉଁଗୁଡ଼ିକ ଜାତିପ୍ରଥା ଓ ଅସ୍ପୃଶ୍ୟତାର ତର୍କଗୁଡ଼ିକ ସହ ସଂପର୍କୀତ ।" ତାଙ୍କ ମତରେ ଜାତି ବ୍ୟବସ୍ଥା ହେଉଛି ହିନ୍ଦୁ ଧର୍ମର ମୂଳ ଆଧାର ଓ ଅସ୍ପୃଶ୍ୟତା ହେଉଛି ଏସବୁ ଅସଂଖ୍ୟ ଜାତି ସ୍ଥିତିକୁ ବ୍ୟାଖ୍ୟା କରୁଥିବା ଏକତରଫା ବକ୍ତବ୍ୟ । ଜୀବନର ଶେଷ ସମୟକୁ ଡଃ. ଆମ୍ବେଦକର ୧୯୫୬ ମସିହାରେ ହିନ୍ଦୁଧର୍ମ ତ୍ୟାଗକରି ବୌଦ୍ଧଧର୍ମ ଆପଣେଇ ଥିଲେ । ଅବଶ୍ୟ ତାଙ୍କୁ ଖୁବ୍ ଅଧିକ ବୟସ ହୋଇ ନଥିଲା । ରୋଗଗ୍ରସ୍ତ ହୋଇ ବର୍ଷକପରେ ତାଙ୍କର ମୃତ୍ୟୁ ହୋଇଥିଲା । କିନ୍ତୁ ଡ଼ଃ ଆମ୍ବେଦକର ଆଉ ବହୁବର୍ଷ ବଂଚିଥାନ୍ତେ ତେବେ ବୋଧହୁଏ ତାଙ୍କର ପ୍ରଚଣ୍ଡ ବ୍ୟକ୍ତିତ୍ୱଦ୍ୱାରା ସେ ଭାରତ ଓ ଭାରତ ବାହାରେ ମଧ୍ୟ ବୌଦ୍ଧଧର୍ମକୁ ପୁଣି ଏକ ମୁଖ୍ୟ ଧର୍ମରେ ପରିଣତ କରି ପାରିଥାନ୍ତେ ।

ଯଦିଓ ବାବାସାହେବ ବୌଦ୍ଧଧର୍ମ ଗ୍ରହଣ କରିଥିଲେ ସେ ଏହି ଧର୍ମରେ ପ୍ରଚଳିତ କର୍ମବାଦ ଓ ପୂନର୍ଜନ୍ମ ବିଶ୍ୱାସକୁ ଗ୍ରହଣ କରି ନଥିଲେ । ତାଙ୍କର ମତ ଥିଲା ଯେ ଏଗୁଡ଼ିକ

ମହାତ୍ମା ବୁଦ୍ଧଙ୍କର ମୌଳିକ ତତ୍ତ୍ୱ ନୁହଁନ୍ତି । ଏଗୁଡ଼ିକ ହିନ୍ଦୁ ମୌଳବାଦୀ ଆଦର୍ଶ, ଯେଉଁଗୁଡ଼ିକ ବୌଦ୍ଧଧର୍ମକୁ ପରେ ପ୍ରବେଶ କରି ଆସିଥିଲା । ଏହି କର୍ମବାଦ ଓ ଜନ୍ମଜନ୍ମାନ୍ତର ବିଶ୍ୱାସ ମଣିଷକୁ ମୁକ୍ତି ପ୍ରଦାନପାଇଁ ନୁହେଁ, ବରଂ ତାକୁ ଆହୁରିଆହୁରି ଶୋଷଣର ପଙ୍କ ଆଡ଼କୁ ଟାଣି ନେଇଯିବାର ପଥସବୁ । ଏମାନେ ମଣିଷକୁ ନିଜ ଧର୍ମ ଭିତରେ ବନ୍ଦୀ କରାଇବାରେ ସାହାଯ୍ୟ କରିଥାନ୍ତି । ଏପରିକି ଆମ୍ବେଦକର ବିଶ୍ୱାସ କରିବାକୁ ପ୍ରସ୍ତୁତ ନ ଥିଲେ ଯେ ମାହତ୍ମା ବୁଦ୍ଧଙ୍କ ଭଳି ଜଣେ ତୀକ୍ଷଣ ବୁଦ୍ଧି ସମ୍ପନ୍ନ ପ୍ରତିବାଦୀ କର୍ମବାଦ ଓ ପୁନର୍ଜନ୍ମ ପ୍ରଥାକୁ ଗ୍ରହଣ ଓ ପ୍ରଚାର କରିଥିଲେ । ଡ଼ଃ ଆମ୍ବେଦକର କହିଥିଲେ ଯେ ବୌଦ୍ଧଧର୍ମ ହେଉଛି ଗଣତାନ୍ତିକ ଜୀବନର ମୁକ୍ତକ୍ଷେତ୍ର । ତାଙ୍କପାଇଁ ଏହି ବର୍ତ୍ତମାନର ଜନ୍ମ ହେଉଛି ସତ୍ୟ ଓ ପ୍ରଧାନ । ପୂର୍ବଜନ୍ମର ପାପ ବା ପୂଣ୍ୟ ଏ ଜବନରେ ଭୋଗିବା କଥା ବା ହିସାବନିକାଶକୁ ସେ ବିଚକ୍ଷଣ ଧର୍ମାଧୀଶମାନଙ୍କର ଚାଲ ବୋଲି କହୁଥିଲେ । ସେ ଅତିମାନବୀୟ ବା ଅତିଅଦ୍ଭୁତ ଗୁଣବିଶିଷ୍ଟ ଏକ ଭଗବାନଙ୍କ ସ୍ଥିତିକୁ ସନ୍ଦେହ କରୁଥିଲେ ଓ ଏହା କୌଣସି ମୌଳିକ ମାନବବାଦୀ ଧର୍ମ ଧାରାର ଆଧାର ନହୋଇପାରେ ବୋଲି ଦାବୀ କରୁଥିଲେ ।

ଏହା ନୁହେଁ ଯେ ଡଃ ଭୀମରାଓ ଆମ୍ବେଦକର ରାତି ଅଧିଆ ବୌଦ୍ଧ ଧର୍ମ ଗ୍ରହଣ କରିନେଇଥିଲେ । ବୌଦ୍ଧଧର୍ମ ଗ୍ରହଣ କରିବା ପୂର୍ବରୁ ସେ ବିଭିନ୍ନ ଧର୍ମ ତତ୍ତ୍ୱ, ଆଦର୍ଶ ଓ ଜୀବନଧାରା ଗୁଡ଼ିକୁ ତନ୍ନ ତନ୍ନ କରି ବିଶ୍ଳେଷଣ କରିଥିଲେ । ତାଙ୍କୁ ମଧ୍ୟ ବିଭିନ୍ନ ଧର୍ମରୁ ସେହି ଧର୍ମ ଗ୍ରହଣ କରିବାପାଇଁ ନିମନ୍ତ୍ରଣ ଆସିଥିଲା । 'ମହାବୋଧି ସମାଜ' ର ପତ୍ରିକାରେ ୧୯୫୦ ମସିହାରେ ମୁଦ୍ରିତ ତାଙ୍କର ଏକ ପ୍ରସିଦ୍ଧ ପ୍ରବନ୍ଧ "ବୁଦ୍ଧ ଓ ତାଙ୍କ ଧର୍ମର ଭବିଷ୍ୟତ" ରେ ସେ ମତବ୍ୟକ୍ତ କରିଥିଲେ ଯେ - ବୌଦ୍ଧଧର୍ମ ତାର ମୌଳିକ ଆଦର୍ଶଗୁଡ଼ିକୁ ପ୍ରାଧାନ୍ୟ ଦେଇ ଗଣତାନ୍ତିକ କ୍ଷେତ୍ର ପ୍ରସ୍ତୁତ କରିବା ଉଚିତ । ଏହି ଧର୍ମ ଯଦି ତିଷ୍ଠି ରହିବାକୁ ଚାହେଁ ତେବେ ଏହି ଆଦର୍ଶଗୁଡ଼ିକୁ ପୁଣିଥରେ ଯୁକ୍ତିଦ୍ୱାରା ସିଦ୍ଧ କରିବାକୁ ପଡ଼ିବ, ଏହା ହିଁ ହେଉଛି ଆଧୁନିକ ବିଜ୍ଞାନର ମୌଳିକତା । କେବଳ ଧର୍ମର କିଛି ଆଦର୍ଶ ରହିଥିଲେ ଯଥେଷ୍ଟ ନୁହେଁ, ଏହି ମୌଳିକ ଆଦର୍ଶଗୁଡ଼ିକ ମୁକ୍ତି, ସାମ୍ୟ ଓ ଭାତୃତା ଭଳି ଆଦର୍ଶଗୁଡ଼ିକ ସହ ମଧ୍ୟ ସଂପର୍କୀତ ହେବା ବିଧେୟ । ଧର୍ମ ସଦାସର୍ବଦା ଦାରିଦ୍ର୍ୟକୁ ଆଧାର କରି ତିଷ୍ଠି ପାରିବ ନାହିଁ । ଦାରିଦ୍ର୍ୟ ଧର୍ମପାଇଁ ଗୋଟିଏ ସଫଳତା ହେବା ଉଚିତ ନୁହେଁ ।

ହାଇଦ୍ରାବାଦର ଶାସକ ନିଜାମ ଡଃ.ଆମ୍ବେଦକରଙ୍କୁ ଇସଲାମ ଧର୍ମ ଗ୍ରହଣ କରିବାପାଇଁ ଆମନ୍ତ୍ରଣ ଜଣାଇଥିଲେ ଓ ସେଥିପାଇଁ ପ୍ରଚୁର ଅର୍ଥ ପ୍ରଦାନ କରିବାପାଇଁ ପ୍ରସ୍ତୁତ ଥିଲେ । ବମ୍ବେର ବିଶପ୍ ମଧ୍ୟ ଆମ୍ବେଦକରଙ୍କୁ ଖ୍ରୀଷ୍ଟଧର୍ମ ଆପଣେଇବାପାଇଁ ପରାମର୍ଶ ଦେଇଥିଲେ । ଅମୃତସର ସ୍ୱର୍ଣ୍ଣ ମନ୍ଦିରର ଉପ-ସଭାପତି ତାଙ୍କୁ ଶିଖଧର୍ମ ଗ୍ରହଣ କରିବାପାଇଁ

କହିଥିଲେ । ଏହି ଧର୍ମପ୍ରତି ଆମ୍ବେଦକରଙ୍କ ବହୁତ ଦୁର୍ବଳତା ଥିଲା । ମତ୍ର ଡ଼ଃ. ଆମ୍ବେଦକର ଶେଷକୁ ବୌଦ୍ଧଧର୍ମକୁ ଆପଣେଇବାପାଇଁ ସିଦ୍ଧାନ୍ତ କରି ନିଜର ସହକର୍ମୀମାନଙ୍କୁ ବିଭିନ୍ନ ବୌଦ୍ଧ ସମ୍ମିଳନୀରେ ଯୋଗଦେବାପାଇଁ ପଠାଇ ଥିଲେ । ଧର୍ମ ପରିବର୍ତ୍ତନ ବେଳେ ଆମ୍ବେଦକର ନିଜର ମତାମତକୁ ଖୁବ୍ ପ୍ରାଞ୍ଜଳ ଓ ସିଧା ଭାବରେ ଦେଇଥିଲେ । ସେ କହିଥିଲେ ଯେ ତାଙ୍କୁ ବହୁ ପଥ ଦେଖା ଯାଉଛି । ଇସଲାମ ବା ଖ୍ରୀଷ୍ଟଧର୍ମର ମୌଳିକ ସାମାଜିକତା ବିଦେଶ ମାଟିରୁ ସୃଷ୍ଟି ହୋଇଥିବାରୁ ଏହା ଭାରତୀୟ ଦଳିତମାନଙ୍କର ନିଜର ଜାତୀୟତାକୁ ନେଇ ଦ୍ୱନ୍ଦ୍ୱ ସୃଷ୍ଟି କରିବାରେ କାର୍ଯ୍ୟ କରିବ । ଯଦି ଦଳିତମାନେ ଖ୍ରୀଷ୍ଟଧର୍ମ ଗ୍ରହଣ କରନ୍ତି ତେବେ ଏହି ପ୍ରକ୍ରିୟା ଇଂଲଣ୍ଡର ଭାରତ ଉପରେ ଥିବା ଆଧିପତ୍ୟକୁ ସୁଦୃଢ଼ କରିବ । ତେଣୁ ନିଜ ଦେଶର ମଙ୍ଗଳପାଇଁ ଦଳିତମାନେ ଶିଖ ଧର୍ମ ଗ୍ରହଣ କରିବା ଉଚିତ ବୋଲି ସେ କହିଥିଲେ । ମାତ୍ର ଆମ୍ବେଦକର ଶିଖ ହୋଇ ପାରି ନ ଥିଲେ, ବୌଦ୍ଧ ହୋଇଥିଲେ । ସେ ପରିଷ୍କାର ହୃଦୟଙ୍ଗମ କରିଥିଲେ ଯେ ହିନ୍ଦୁ ସମାଜରେ ଦଳିତମାନଙ୍କୁ ମୁକ୍ତହାଓ୍ୱା ଦେବା ପାଇଁ ଓ ଉପରକୁ ଉନ୍ନୀତ ହେବାପାଇଁ କୌଣସି ସ୍ଥାନ ନାହିଁ । ଏହି ଆଶା କେବେ ଚରିତାର୍ଥ ହେବ ନାହିଁ । ଦୁର୍ଘଟଣା ଭାବରେ ଜଣେ କାହା ଘରେ ଜନ୍ମ ହୋଇ ଯିବାଦ୍ୱାରା ତାର ସମଗ୍ର ଜୀବନ ଜାତି ବ୍ୟବସ୍ଥା ତଳେ ଋପି ହୋଇ ଯିବା କଦାପି ଧାର୍ମିକ ଭାବନା ସହ ସଂପୃକ୍ତ ହୋଇ ପାରିବ ନାହିଁ । ହିନ୍ଦୁ ଧର୍ମ କତିପୟ ଉଚ୍ଚଜାତିଙ୍କର, ଉଚ୍ଚଜାତିଦ୍ୱାରା ବା ଉଚ୍ଚଜାତିଙ୍କପାଇଁ ଏକ ଚରାଭୂଇଁ ଛଡ଼ା ଆଉ କିଛି ନୁହେଁ ବୋଲି ବାବା ସାହେବ ଗ୍ରହଣ କରିଥିଲେ । ମହାତ୍ମା ବୁଦ୍ଧଙ୍କ ଐତିହାସିକ ଧାର୍ମିକ ବିଜୟକୁ ସମ୍ମାନ ଦେଇ ସେ କହିଥିଲେ ଯେ କାହିଁ କେତେ ଯୁଗତଳେ ଅତି ପୁରାତନ ଯୁଗରେ ଯେତେବେଳେ ରୂଢ଼ୀବାଦୀ ହିନ୍ଦୁଧର୍ମର ରକ୍ଷଣଶୀଳତା ତଳେ ଲୋକେ ତ୍ରାହିତ୍ରାହି ଡ଼ାକୁଥିଲେ, ସେତେବେଳେ ବି ସେ ସମୟରେ ବୁଦ୍ଧଦେବ କେବଳ ସେମାନଙ୍କୁ ମୁକ୍ତି ଦେଇ ନଥିଲେ, ବରଂ ଗୋଟିଏ ସୁସ୍ଥ ଉପାୟ ମଧ୍ୟ ବତାଇ ଦେବାରେ ସଫଳ ହୋଇଥିଲେ । ଭଗବାନଙ୍କ ସ୍ଥିତି, ଯାହା ହିନ୍ଦୁ ଧର୍ମର ମୌଳିକ ବିଶ୍ୱାସ, ତାକୁ ଆକ୍ରମଣ କରି ବୁଦ୍ଧ ଆଉ ଏକ ସୁହୃଦ୍ ତର୍କ ପରମ୍ପରା ଭାରତରେ ଆରମ୍ଭ କରିଥିଲେ, ଯାହା ଯୁଗଯୁଗ ଧରି ରକ୍ଷଣଶୀଳତା ବିରୁଦ୍ଧରେ ଏକ ସଂଗ୍ରାମ ଜାରି ରଖିଛି ।

୧୯୦୮ ମସିହାରେ ବମ୍ବେର ଜଣେ ଶିକ୍ଷକ କେ.ଏ.କେଲୁରସ୍କର ଡ଼ଃ.ଆମ୍ବେଦକରଙ୍କୁ ବୁଦ୍ଧଙ୍କ ଏକ ଜୀବନୀ ପଢ଼ିବାକୁ ଦେଇଥିଲେ । ସେତେବେଳେ ଆମ୍ବେଦକର ମାଟ୍ରିକ୍ୟୁଲେସନ୍ ପାସ୍ କରି ଥାନ୍ତି । ସେତେବେଳେ ପଣ୍ଡିତ ଜ୍ୟୋତି ଥାସ, 'ଭାରତୀୟ ବୌଦ୍ଧ ସଂଗଠନ' ଗଠନ କରିଥାନ୍ତି । ଯାହାଦ୍ୱାରା ସେ ତାମିଲନାଡୁର ଦଳିତମାନଙ୍କୁ

ଉଦ୍ଧାର କରିବାପାଇଁ କାର୍ଯ୍ୟ କରୁଥାନ୍ତି । ଆଙ୍ଗରିକ ଧର୍ମପାଳ ମଧ୍ୟ ଏହିପରି ଏକ ଆନ୍ଦୋଳନ ଆରମ୍ଭ କରି ଭାରତବର୍ଷରେ ଥିବା ବୌଦ୍ଧ ତୀର୍ଥକ୍ଷେତ୍ରଗୁଡ଼ିକୁ ଉଦ୍ଧାର କରିବା ପାଇଁ ପ୍ରୟାସ ଆରମ୍ଭ କରିଥିଲେ । ୧୮୯୧ ମସିହାରେ 'ମହୋବୋଧି ସମାଜ' ଗଠନ କରାଯାଇଥିଲା । ମାତ୍ର ଏସବୁ ପ୍ରୟାସ ବୌଦ୍ଧ ଧର୍ମର ମୌଳିକ ଗଣତାନ୍ତ୍ରିକ ଓ ଦେବୋପମ ଆଧାରଗୁଡ଼ିକୁ ପୁନରୁତ୍ଥାନ କରିବା ପାଇଁ ଯଥେଷ୍ଟ ନଥିଲା । ଏହା ସାମାଜିକ କୁସଂସ୍କାର ଓ ଅଧାର୍ମିକ ପରମ୍ପରା ଗୁଡ଼ିକୁ ନିୟନ୍ତ୍ରଣ କରିପାରୁ ନଥିଲା । ସାଧାରଣ ମଣିଷ ମନରେ ହିନ୍ଦୁ ଓ ବୌଦ୍ଧ ଧର୍ମକୁ ନେଇ ନାନା ଦ୍ୱନ୍ଦ୍ୱ ଓ ସଂସୟମାନ ରହିଥିଲା । ବୌଦ୍ଧ ଧର୍ମକୁ ହିନ୍ଦୁ ଧର୍ମର ଏକ ଅଂଗବୋଲି ଗ୍ରହଣ କରାଯାଇ ତାର ବିପ୍ଳବବାଦୀ ଓ ପରିବର୍ତ୍ତନବାଦୀ ମନୋବୃତ୍ତିକୁ ନଷ୍ଟ କରି ଦିଆଯାଇଥିଲା । ମାତ୍ର ବାବା ସାହେବ ଏହି ମହାନ ପ୍ରତିବାଦଧର୍ମୀ ବୌଦ୍ଧ ପରମ୍ପରାକୁ ବିଂଶ ଶତାବ୍ଦୀର ଲୋକମାନଙ୍କପାଇଁ ଏକମାତ୍ର ମାର୍ଗ ବୋଲି ଘୋଷଣା କରିଥିଲେ ।

ପ୍ରସିଦ୍ଧ ସମାଜ ଶାସ୍ତ୍ରୀ ପିଟର ବର୍ଗର କୁହନ୍ତି ଯେ ଆଧୁନିକ ଯୁଗ ପ୍ରତିବାଦର ଯୁଗ-ବିଶେଷ କରି ଧର୍ମ କ୍ଷେତ୍ରରେ ଥିବା ବିଭିନ୍ନ କୁସଂସ୍କାର ଓ ଅନ୍ଧ ବିଶ୍ୱାସକୁ ସମ୍ମୁଖୀନ ହୋଇ ପ୍ରଶ୍ନ କରିବାର ଯୁଗ । ଯାହାକୁ ରକ୍ଷଣଶୀଳମାନେ 'ଈଶ୍ୱରଦ୍ରୋହ' ବା 'heresy' ବୋଲି କହିଥାନ୍ତି । ମାତ୍ର ଯେତେ ଚେଷ୍ଟା କଲେ ମଧ୍ୟ ଧୀରେଧୀରେ ଏହି ପ୍ରଶ୍ନ କରିବାର ପ୍ରବୃତ୍ତି ଆଧୁନିକ ମଣିଷ ମଧ୍ୟରେ ବୃଦ୍ଧି ପାଇବା ବା ପାଇବାରେ ଲାଗିଛି । ଧର୍ମର ମୂଳ ଆଧାରକୁ ବୈଜ୍ଞାନିକ ଦୃଷ୍ଟିକୋଣ ନେଇ ବାରମ୍ବାର ବ୍ୟାଖ୍ୟା କରିବାକୁ ପଡ଼ିବ, ସେସବୁ ଯେତେ କ୍ଲିଷ୍ଟ ଓ ଅବୁଝା ବା ସ୍ୱୟଂସଂପୂର୍ଣ୍ଣ ହେଲେ ମଧ୍ୟ । ଏଥିପାଇଁ ତର୍କଶାସ୍ତ୍ରୀମାନଙ୍କର ଯେତିକି ଆବଶ୍ୟକତା ରହିଛି, ସେତିକି ଆବଶ୍ୟକତା ମଧ୍ୟ ରହିଛି ଆଧାତ୍ମିକବାଦୀମାନଙ୍କର । ଏହା କାହାର ଭୟ ବା କାହାର ଆଧିପତ୍ୟ ଚାଲିଯିବାର ଭୟ ବା ସଂସୟ ନେଇ ହେବନାହିଁ । ଆଧୁନିକ ମଣିଷପାଇଁ ଧର୍ମର ବ୍ୟାପକତା, ସାର୍ବଜନୀନତା ଓ ସମସ୍ତଙ୍କୁ ଆପଣେଇ ପାରୁଥିବା ସାମର୍ଥ୍ୟ ବେଶି ଆକର୍ଷଣୀୟ ଓ ଆଦରଣୀୟ ମଧ୍ୟ । ସବୁ ଧର୍ମର ଦୂରତ୍ୱ ନିଶ୍ଚୟ ଧୀରେଧୀରେ ଲୋପ ପାଇଯିବ । ବିଭିନ୍ନ ପାର୍ବଣ ଓ ପୂଜା ପଦ୍ଧତି ରହିପାରେ, ନୂଆ ବି ଯୋଡ଼ି ହୋଇ ଯାଇପାରେ, ମାତ୍ର ସେଗୁଡ଼ିକ ବେଶିବେଶି ସାମାଜିକ ସମ୍ବନ୍ଧକୁ ନେଇ ପରିଚାଳିତ ହେବ । ଏଥିରେ ଅହଂ ଭାବ ଅପେକ୍ଷା ପବିତ୍ରଭାବନା ଓ ସ୍ନେହ ଦୃଷ୍ଟି ଗୋଚର ହେବ ।

ଡ଼ଃ. ଆମ୍ବେଦକର ଆଧୁନିକ ଯୁଗରେ ମତବ୍ୟକ୍ତ କରିବାର ଯେଉଁ ବିଶାଳ ଓ ଶକ୍ତିଶାଳୀ ସ୍ରୋତ ତିଆରି ହୋଇଛି ତାର ଦ୍ୱାହୀ ଦେଇ କହିଥିଲେ ଯେ ମତବାଦଗୁଡ଼ିକ ପରସ୍ପର ସହିତ ମିଳିତ ହେବାଦ୍ୱାରା ସେଗୁଡ଼ିକ ସ୍ୱ ସ୍ୱ କ୍ଷେତ୍ରକୁ ସଜାଡ଼ିବାକୁ ପ୍ରୟାସ

କରିବେ ।' ବିଖ୍ୟାତ ସମାଜଶାସ୍ତ୍ରୀ ସି.ଏସ.ଗ୍ରୀନଙ୍କ ମତରେ ଆମ୍ବେଦକର ତାଙ୍କ ଜୀବନର ପ୍ରାରମ୍ଭ ଜଣେ ପୁରାତନବାଦୀ ଭାବରେ ଆରମ୍ଭ କରିଥିଲେ ମଧ୍ୟ ନିଜ ଜୀବନରେ ସତ୍ୟପାଇଁ ସଂଘର୍ଷ କରୁଥିବାବେଳେ, ସେ ପିଟର ବର୍ଗର କହିବା ପରି, ଜଣେ ଅତିଆଧୁନିକ ମଣିଷରେ ପରିଣତ ହୋଇଥିଲେ । ସେ ହିନ୍ଦୁଧର୍ମର ସାମାଜିକ ଛତ୍ରୀକୁ ପ୍ରତ୍ୟାଖ୍ୟାନ କରି ତତ୍‌କାଳୀନ ଭାରତରେ ଥିବା ସମସ୍ତ ଧାର୍ମିକ ବୌଦ୍ଧିକତାକୁ ଅଧ୍ୟୟନ କରି ସର୍ବ ଶେଷକୁ ବୌଦ୍ଧ ଧର୍ମ ଗ୍ରହଣ କରିଥିଲେ ଯାହାର ଆଦର୍ଶଗୁଡ଼ିକୁ ମନୁଷ୍ୟର ସାମାଜିକ ଅସନ୍ତୁଳନତା ଓ ସେଥିରୁ ଜାତ ସମସ୍ୟାଗୁଡ଼ିକୁ ସଜାଡ଼ିବାପାଇଁ ଅଭିପ୍ରେତ ଥିଲା । ଆମ୍ବେଦକର ଜଣେ ସଂସ୍କାରବାଦୀ ହିନ୍ଦୁରୁ ଜଣେ ନଶ୍ୱରବାଦୀ ଅନ୍ୱେଷଣକାରକୁ ପରିବର୍ତ୍ତନ ମାଧ୍ୟମରେ ଶେଷକୁ ଜଣେ ପ୍ରତିବାଦୀ ବୌଦ୍ଧରେ ପରିଣତ ହୋଇଥିଲେ । ଏହା ଏକ ତୀର୍ଥ ଯାତ୍ରା ଥିଲା ଯାହାର ମାହାତ୍ମ୍ୟ ଭାରତରେ ବାସ କରୁଥିବା ଅସ୍ପୃଶ୍ୟମାନଙ୍କ ଛଡ଼ା ମଣିଷମାନଙ୍କମଧ୍ୟରୁ ଖୁବ୍ କମ୍ ଲୋକ ବୁଝି ପାରୁଥିଲେ । ଆମ୍ବେଦକର ଜଣେ ଉତ୍ତର-ଆଧୁନିକ ମଣିଷ ହୋଇ ପାରିଥିଲେ ମାତ୍ର ସେ ପୁରାତନ ପ୍ରଥାଗୁଡ଼ିକୁ ଧ୍ୱଂସ କରିବାରେ ବିଶ୍ୱାସ କରୁ ନଥିଲେ ବରଂ ଏସବୁକୁ ପରିମାର୍ଜିତ କରି ମାନବହିତବାଦୀ କରାଇବାରେ ବହୁଅଂଶରେ ସଫଳ ପ୍ରୟାସ କରିଥିଲେ ।

ଡ଼ଃ. ଆମ୍ବେଦକର ପୁରାତନ ଶାଶ୍ୱତ ପରମ୍ପରାଗୁଡ଼ିକୁ ତର୍କମାଧ୍ୟମରେ ସଂଶୋଧନ କରିବାପାଇଁ ପ୍ରୟାସ କରିଥିଲେ ଯେଉଁଥିରେ ଆଧୁନିକତାର ମଧ୍ୟ ସୁଗନ୍ଧ ଥିଲା । ଯେଉଁଥିରେ ନିଜନିଜ ମଧ୍ୟରେ ଆପୋଷ ତର୍କ ଓ ସମାଧାନର ବହୁ ସୁଯୋଗ ରହିଥାଏ । ଆମ୍ବେଦକର ନିଜର ଜିଜ୍ଞାସୁ ମନକୁ ନେଇ ପୃଥିବୀର ବହୁଦେଶ ଭ୍ରମଣ କରି ବହୁଶାସ୍ତ୍ର ଓ ସମ୍ପ୍ରଦାୟମାନଙ୍କର ବିଶ୍ୱାସଗୁଡ଼ିକୁ ଅଧ୍ୟୟନ କରି ନିଜର ତର୍କଗୁଡ଼ିକ ପ୍ରସ୍ତୁତ କରିଥିଲେ । ସେ ପୁରାତନ ବିଶ୍ୱାସଗୁଡ଼ିକୁ ସମୂଳେ ଧ୍ୱଂସ କରିବାକୁ ଋହୁଁ ଥିବା ତଥାକଥିତ ଆଧୁନିକ ମଣିଷ ନ ଥିଲେ, ଯିଏ ପ୍ରାଚୀନ ଓ ଆଧୁନିକ ଯୁଗ ସହିତ କୌଣସି ସମ୍ବନ୍ଧ ଥିବାର ବିଶ୍ୱାସ କରୁ ନଥିଲେ । ମାତ୍ର ସେ ସାମାଜିକ ଶ୍ରେଣୀ ବିଭାଗଗୁଡ଼ିକର ଅପ୍ରାକୃତିକତାକୁ ଜାଣିପାରୁଥିଲେ, ବୋଧେ ଅନ୍ୟମାନଙ୍କଠାରୁ ଢେର ବେଶି । ସେଥିପାଇଁ ଡ଼ଃ.ଭୀମାରାଓ ଘୋଷଣା କରିଥିଲେ ଯେ ଧର୍ମ ହେଉଛି ସଦାଋର, ଯାହା ମଣିଷ ମଣିଷ ମଧ୍ୟରେ ଏକ ପ୍ରୀତିପଦ ସମ୍ବନ୍ଧ ସ୍ଥାପନ କରିବାରେ ସାହାଯ୍ୟ କରିଥାଏ । ଧର୍ମ ହେଉଛି ପ୍ରଜ୍ଞା, କରୁଣା ଓ ସମତା । ଧର୍ମ ହେଉଛି ବ୍ୟକ୍ତି କୈନ୍ଦ୍ରିକ, ଧର୍ମ ବି ସାମଗ୍ରିକ, ମାତ୍ର ତାହା ବ୍ୟଭିଋର ନୁହେଁ । ରିଲିଜିଅନ ପୂଜା-ପାର୍ବଣଦ୍ୱାରା ଆକ୍ରାନ୍ତ ମାତ୍ର ଧର୍ମ ନୁହେଁ । ରିଲିଜିଅନ କୌଣସି ଦ୍ୱିଧା ବିନା ମଣିଷର ସଂପୂର୍ଣ୍ଣ ସମର୍ପଣଭାବ ଅଟେ, ମାତ୍ର ଧର୍ମଜ୍ଞାନଦ୍ୱାରା ଆଧାରିତ ଯାହା ନିରନ୍ତର ଜିଜ୍ଞାସାଦ୍ୱାରା ଆହରିତ ହୋଇଥାଏ ।

# ସମ୍ବିଧାନ ଏବଂ ଡଃ ଆମ୍ବେଦକର

ବାଳକୃଷ୍ଣ ନାଗ

ଆମ ଦେଶର ସମ୍ବିଧାନ ପ୍ରଣୟନ ଅନେକ ଦୃଷ୍ଟିରୁ ସାରା ପୃଥିବୀପାଇଁ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛି । ଏ ସମସ୍ତ ବିଷୟପାଇଁ ଯେଉଁ ମହାପୁରୁଷଙ୍କ ଅକ୍ଳାନ୍ତ ପରିଶ୍ରମ ତଥା ଅଗାଧ ପାଣ୍ଡିତ୍ୟର ଅବଦାନ ରହିଛି ସେ ହେଉଛନ୍ତି ଡଃ ଭୀମରାଓ ରାମଜୀ ଆମ୍ବେଦକର । ଆଜି ଏ ଦେଶର ନେତୃବୃନ୍ଦ ତାଙ୍କୁ ସଂବିଧାନର ମହାନ ଶିଳ୍ପୀ ଭାବେ ଭାରତରତ୍ନ ଭଳି ସମ୍ମାନରେ ସମ୍ମାନିତ କରିଛନ୍ତି ।

ଏହା ସର୍ବ ବିଦିତ ଯେ, ଡଃ ଆମ୍ବେଦକର ଏକ ଦଳିତ ପରିବାରରେ ଜନ୍ମ ଗ୍ରହଣ କରି ଅଗାଧ ପାଣ୍ଡିତ୍ୟର ଅଧିକାରୀ ହୋଇଥିଲେ । କେବଳ ବିଦେଶ ଶିକ୍ଷାର ଆକ୍ଷରିକ ଜ୍ଞାନରେ ତାଙ୍କର ପାଣ୍ଡିତ୍ୟ ସୀମାବଦ୍ଧ ନଥିଲା । ସେ ଏକାଧାରରେ ରାଜନୀତିବିଜ୍ଞାନ, ସମାଜବିଜ୍ଞାନ, ଇତିହାସବିଜ୍ଞାନ, ମାନବବିଜ୍ଞାନ, ଅର୍ଥଶାସ୍ତ୍ର ତଥା ଆଇନଶାସ୍ତ୍ରରେ ଗଭୀର ଜ୍ଞାନ ଅର୍ଜନ କରିଥିଲେ । ପୃଥିବୀର ପ୍ରଧାନ ଦେଶମାନଙ୍କର ସମ୍ବିଧାନକୁ ସେ ଖୁବ୍ ଭଲ ଭାବରେ ଅଧ୍ୟୟନ କରି ଆମପାଇଁ ଯେଉଁ ସମ୍ବିଧାନ ପ୍ରଣୟନ କରି ଯାଇଛନ୍ତି, ସେଇଥିପାଇଁ ଏ ଦେଶ ତାଙ୍କ ପାଖରେ ଚିର କୃତଜ୍ଞ ରହିବ । ସେଇ ମହାମାନବ କିପରି ସମ୍ବିଧାନ ଚିଠା ପ୍ରସ୍ତୁତ କମିଟିର ଅଧ୍ୟକ୍ଷ ହେଲେ ଏବଂ ସମ୍ବିଧାନ ଚିଠା ପ୍ରସ୍ତୁତରେ ତଥା ସମ୍ବିଧାନ ପ୍ରଣୟନ ସଭାରେ ତାଙ୍କର କି ଭୂମିକା ଥିଲା ତାହା ଆଲୋଚନାର ବିଷୟ ।

୧୯୪୫ର ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ବ୍ରିଟିଶ ସରକାର ଭାରତକୁ ସ୍ୱାଧିନତା ଦେବା ବିଷୟରେ ଚିନ୍ତାକରି, ଭାରତର ନେତୃବୃନ୍ଦଙ୍କୁ ଉପଯୁକ୍ତ ପରାମର୍ଶ ଦେବାପାଇଁ କ୍ୟାବିନେଟ୍ ମିଶନ୍ Cabinet Mission ନାମରେ ଏକ ତିନିଜଣିଆ ପ୍ରତିନିଧି ଦଳ ଭାରତକୁ ପଠାଇଥିଲେ । ଏହି ମିଶନ ୧୯.୩.୧୯୪୬ରେ ସ୍ୱାଧୀନ ଭାରତ ପାଇଁ ଏକ ନିର୍ବାଚିତ ସମ୍ବିଧାନ ପ୍ରଣୟନ କମିଟି ବା Constituent Assembly ଗଠନ କରିବାକୁ ପରାମର୍ଶ ଦେଇଥିଲେ । ତଦନୁସାରେ ୧୯୬ ଜଣ ସଭ୍ୟ ନିର୍ବାଚିତ ହୋଇ ବିଭିନ୍ନ ପ୍ରଦେଶରୁ ଆସିଥିଲେ ।

ଏହି ସମୟରେ ଡଃ. ଆମ୍ବେଦକର ନିଜର ଅନୁଗାମୀମାନଙ୍କୁ କହିଥିଲେ ଯେ ସମ୍ବିଧାନ ହେଉଛି ଦେଶର ଶାସନ ବ୍ୟବସ୍ଥାର ଭିତ୍ତିଭୂମି । ଯଦି ଏହି ସମ୍ବିଧାନ ସଭାରେ ଦଳିତମାନଙ୍କ ଉପଯୁକ୍ତ ପ୍ରତିନିଧିତ୍ୱ ନ ରୁହେ ଏବଂ ସୁବିଧାବାଦିଗୋଷ୍ଠୀ ଏହାର ପ୍ରଣୟନ

ଦାୟିତ୍ୱରେ ରହନ୍ତି, ତାହେଲେ ଦଳିତ, ପତିତ ଅବହେଳିତ ଜାତିର ଲୋକଙ୍କ ଅବସ୍ଥାରେ କିଛି ପରିବର୍ତ୍ତନ ହେବାର ଆଶା କରାଯାଇ ନପାରେ । ତେଣୁ ସେ ନିଜେ ଏହି Constituent Assembly ରେ ରହିବାପାଇଁ ନିଜର ଇଚ୍ଛା ବ୍ୟକ୍ତ କରିଥିଲେ । ଦଳିତମାନଙ୍କ ସହଯୋଗରେ ସେ ବମ୍ବେ ଆସନରୁ ନିର୍ବାଚନ ଲଢ଼ି, ବିରୋଧି ଦଳର ବିପୁଳ ଅର୍ଥ ଏବଂ ବାହୁ ବଳରେ ପରାଜୟ ସ୍ୱୀକାର କରିବାକୁ ବାଧ୍ୟ ହୋଇଥିଲେ । ଏହି ସମୟରେ ବଙ୍ଗଳାର ପଛୁଆଶ୍ରେଣୀ ନେତା ମହାପ୍ରାଣ ଯୋଗେନ୍ଦ୍ରନାଥ ମଣ୍ଡଳ ଠିକ୍ ଅନୁଭବ କରିଥିଲେ ଯେ ଅନ୍ୟ କୌଣସି ଦଳିତ ପ୍ରତିନିଧି Constituent Assembly ରେ ଉଚ୍ଚବର୍ଣ୍ଣ ନେତାଙ୍କ ସହିତ ଯୁକ୍ତି ତର୍କ କରି ଦଳିତମାନଙ୍କ ଦାବିକୁ ପ୍ରତିଷ୍ଠିତ କରାଇ ପାରିବେ ନାହିଁ । ତେଣୁ ସେ ଡଃ ଆମ୍ବେଦକରଙ୍କୁ ବଙ୍ଗଳାରୁ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ଆମନ୍ତ୍ରଣ ଜଣାଇଥିଲେ ଏବଂ ଡଃ ଆମ୍ବେଦକର ବିଜୟୀ ହେଲେ ।

ନିର୍ବାଚିତ ସଦସ୍ୟମାନଙ୍କୁ ନେଇ ୯.୧୨.୧୯୪୬ ରେ Constituent Assembly ର ପ୍ରଥମ ବୈଠକ ହେଲା । ପ୍ରାଥମିକ ପର୍ଯ୍ୟାୟରେ ଡଃ ସଚ୍ଚିଦାନନ୍ଦ ସିହ୍ନାଙ୍କୁ ଶ୍ରୀ ଜି.ବି. କୃପାଳିନିଙ୍କ ପ୍ରସ୍ତାବ କ୍ରମେ ସଭାପତି ମନୋନୀତ କରାଗଲା । ତା'ର ପରବର୍ତ୍ତୀ ବୈଠକ ୧୦.୧୨.୧୯୪୬ରେ ଅନୁଷ୍ଠିତ ହେଲା ଏବଂ ଗୃହର ବିଧିବଦ୍ଧ ସଭାପତି ଭାବେ ଡଃ ରାଜେନ୍ଦ୍ର ପ୍ରସାଦଙ୍କୁ ସର୍ବ ସମ୍ମତିକ୍ରମେ ଗ୍ରହଣ କରାଗଲା । ୧୩.୧୨.୧୯୪୬ ରେ ସମ୍ବିଧାନ ପ୍ରଣୟନ ନିମନ୍ତେ କମିଟି ଗଠନ ସମ୍ପର୍କୀୟ ନୀତି ନିୟମ ଚିଠାର ପ୍ରସ୍ତାବ ପଣ୍ଡିତ ଜବାହରଲାଲ ନେହେରୁ ଉପସ୍ଥାପନା କଲେ ଏବଂ ଏହି ପ୍ରସ୍ତାବ ଉପରେ ତର୍କବିତର୍କ ତଥା ସଂଶୋଧନ ଚାଲିଥିବା ବେଳେ Dr. M.R. Jaykar ୧୬.୧୨.୧୯୪୬ ଦିନ ଏକ ଆଠ ଦଫା ସମ୍ବଳିତ ସଂଶୋଧନ ପ୍ରସ୍ତାବ ଆଗତ କରିଥିଲେ । ଏ ପ୍ରସ୍ତାବ ଗୃହରେ ଉତ୍ତେଜକ ବାତାବରଣ ସୃଷ୍ଟି କରିଥିଲା ଏବଂ ଗୃହର କାର୍ଯ୍ୟରେ ଅଚଳାବସ୍ଥା ସୃଷ୍ଟି କରିଥିଲା ।

ଗୃହର ଅଧ୍ୟକ୍ଷ ଡଃ ରାଜେନ୍ଦ୍ର ପ୍ରସାଦ ଏପରି ଘଡ଼ିସନ୍ଧି ମୁହୂର୍ତ୍ତରେ ତା. ୧୭.୧୨.୧୯୪୬ ଦିନ ଡଃ ଆମ୍ବେଦକରଙ୍କୁ ବିତର୍କରେ ଅଂଶଗ୍ରହଣ କରିବାକୁ ଆମନ୍ତ୍ରଣ କରିଥିଲେ କାରଣ ସେ ଭଲ ଭାବରେ ଜାଣିଥିଲେ ଯେ ଅଗାଧ ଜ୍ଞାନର, ଦକ୍ଷତାର ଏବଂ ବିଚକ୍ଷଣତାର ଅଧିକାରୀ ଡଃ ଆମ୍ବେଦକର ସାଂପ୍ରଦାୟିକ ତଥା ଜାତିଭିତ୍ତିକ ସମସ୍ୟାଗୁଡ଼ିକର ଏକମାତ୍ର ବିଶେଷଜ୍ଞ ।

ଏ ଆମନ୍ତ୍ରଣ ଏ ଦେଶର ବରିଷ୍ଠ ନେତାମାନଙ୍କୁ ନୁହେଁ ସ୍ୱୟଂ ଡଃ ଆମ୍ବେଦକରଙ୍କୁ ମଧ୍ୟ ବିସ୍ମିତ କରି ଦେଇଥିଲା । ଏହା ଥିଲା ତାଙ୍କର ଜ୍ଞାନର ଚରମ ପରୀକ୍ଷାର ସମୟ । କାରଣ ଡଃ ଆମ୍ବେଦକର ସାଂପ୍ରଦାୟିକ ସଂଖ୍ୟାଲଘୁଙ୍କ ବିରୁଦ୍ଧରେ କହିବା ନିଜର ନୀତି

ବିରୁଦ୍ଧ ଭାବୁଥିଲେ । ଏଣେ ସପକ୍ଷରେ କହିଲେ ସଂଖ୍ୟା ଗରିଷ୍ଠ କଂଗ୍ରେସ ଦଳ ତାଙ୍କୁ ଅପଦସ୍ଥ କରିବାକୁ ଅଣ୍ଟାଭିଡ଼ି ବସିଥିଲେ । ଏ ପରିସ୍ଥିତି ବିଷୟରେ ଡଃ ଆମ୍ବେଦକରଙ୍କ ଜୀବନୀର ନିରପେକ୍ଷ ତଥା ପ୍ରାମାଣିକ ରଚନାକାର ଡଃ ଧନଞ୍ଜୟ କୀର୍ ତାଙ୍କ ପୁସ୍ତକ Dr. Ambedkar, His life and Mission ରେ ଯେପରି ବର୍ଣ୍ଣନା କରିଛନ୍ତି ତାହା ଅବଶ୍ୟ ପ୍ରଣିଧାନ ଯୋଗ୍ୟ ।

ଡଃ ଆମ୍ବେଦକରଙ୍କୁ ମାତ୍ର ଦଶମିନିଟ ସମୟ ଦେଇ ନିଜର ମତାମତ ପ୍ରସ୍ତୁତ କରିବାକୁ ଅଧ୍ୟକ୍ଷ ନିର୍ଦ୍ଦେଶ ଦେଇଥିଲେ । ଏ ବିଷୟ, ଡଃ ଆମ୍ବେଦକର ନିଜର ଅଭିଭାଷଣର ପ୍ରାରମ୍ଭରେ ଏତିକି କମ୍ ସମୟରେ ନିଜର ତର୍କ ପ୍ରସ୍ତୁତ କରିବାଦ୍ୱାରା ଗୃହକୁ ଉପଯୁକ୍ତ ପରାମର୍ଶ ଦେବା ଅସମ୍ଭବ ବୋଲି କହିଥିଲେ ହେଁ ତାଙ୍କ ଅଭିଭାଷଣକୁ ଗୃହରେ ୮୦ ମିନିଟ୍ ସମୟ ଧରି ସଭ୍ୟମାନେ ଉତ୍ସୁକତାର ସହିତ ନୀରବରେ ଶୁଣିଥିଲେ ଏବଂ ଅଭିଭାଷଣ ଶେଷରେ ଘନଘନ କରତାଳି ତଥା ହର୍ଷ ଧ୍ୱନି ଅନେକ ସମୟ ପର୍ଯ୍ୟନ୍ତ ଶୁଣିବାକୁ ମିଳିଥିଲା ।

ଡଃ ଆମ୍ବେଦକର ପ୍ରଖର ଜ୍ଞାନର ପରିଚୟ ପାଇବା ପରେ Cabinet Mission ର ପରାମର୍ଶ କ୍ରମେ ଗଠିତ ମୌଳିକ ଅଧିକାର କମିଟି ଏବଂ ସଂଖ୍ୟାଲଘୁ ପରାମର୍ଶଦାତା କମିଟିରେ ସର୍ଦ୍ଦାର ପଟେଲ ଡଃ ଆମ୍ବେଦକରଙ୍କୁ ୨୪.୧.୧୯୪୭ ଦିନ ସଭ୍ୟ ଭାବରେ ମନୋନୟନ କରି ନେଲେ । ଏହା ବ୍ୟତୀତ ତାଙ୍କୁ ପଣ୍ଡିତ ନେହେରୁଙ୍କ ଅଧ୍ୟକ୍ଷତାରେ ଗଠିତ ତିନୋଟି କମିଟିରୁ ଗୋଟିଏ କମିଟି ଯଥା Union Constitution Committee ର ସଦସ୍ୟଭାବେ ଗ୍ରହଣ କରି ନିଆଗଲା ।

ଡଃ ଆମ୍ବେଦକର ଉପରୋକ୍ତ କମିଟି ଗୁଡ଼ିକରେ ସକ୍ରିୟ ଅଂଶ ଗ୍ରହଣକରି ଏଭଳି ଟିପ୍ପଣି ଉପସ୍ଥାପନ କରୁଥିଲେ ଯେ, ତାଙ୍କୁ ଛପାଯାଇ ଗୃହ ତଥା କମିଟିର ଅନ୍ୟ ସଦସ୍ୟମାନଙ୍କ ଅବଗତ ନିମନ୍ତେ ବିତରଣ କରାଯାଉଥିଲା । ଏସବୁ କମିଟିରେ ଡଃ ଆମ୍ବେଦକର ନିଜର ଦକ୍ଷତାକୁ ସର୍ବଶ୍ରେଷ୍ଠ ବୋଲି ପ୍ରମାଣିତ କଲେ । ଏପରିକି ଗୃହର ସମସ୍ତ ସଦସ୍ୟ ଅନୁଭବ କଲେ ଯେ ସମ୍ବିଧାନ ସଭାରେ ଡଃ ଆମ୍ବେଦକରଙ୍କ ଉପସ୍ଥିତି ଅପରିହାର୍ଯ୍ୟ ।

୧୫.୮.୧୯୪୭ରେ ଦେଶ ସ୍ୱାଧୀନ ହେଲା ଏବଂ ଦେଶ ବିଭାଜନ ରୂପକ ଦୁର୍ଭାଗ୍ୟର ଶିକାର ହେଲେ ଡଃ ଆମ୍ବେଦକର । ସେ ଯେଉଁ ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇ ଆସିଥିଲେ ତାହା ତତ୍କାଳୀନ ପୂର୍ବ ପାକିସ୍ଥାନର ଅଧୀନରେ ରହିବାରୁ ବାବାସାହେବ Constituent Assembly ର ଏଡ଼ାଇ ଅନ୍ୟ କୌଣସି ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇ ଆସିବା ଡଃ ଆମ୍ବେଦକରଙ୍କ ଆଶା ନଥିଲା ।

କିନ୍ତୁ ସମୟର ଚକ୍ର ଭିନ୍ନ ମୋଡ଼ ନେଲା । Dr. M.R. Jaykar ବମ୍ବେ ନିର୍ବାଚନ ମଣ୍ଡଳୀରୁ ଇସ୍ତଫା ଦେଇ ଡଃ ଆମ୍ବେଦକରଙ୍କୁ ପ୍ରତିଦ୍ୱନ୍ଦିତା କରିବାକୁ ଆହ୍ୱାନ ଜଣାଇଥିଲେ । ସେଇ ସମୟରେ ଡଃ ଆମ୍ବେଦକରଙ୍କୁ ପରମ ଶତ୍ରୁ ମନେ କରୁଥିବା ନେତୃବୃନ୍ଦ ସାହାଯ୍ୟ କରିବାକୁ ଆଗେଇ ଆସିଲେ । ଏପରିକି ଗୃହର ଅଧ୍ୟକ୍ଷ ଡଃ ରାଜେନ୍ଦ୍ର ପ୍ରସାଦ ୩୦.୬.୧୯୪୭ରେ ବମ୍ବେର ତତ୍‌କାଳୀନ ପ୍ରଧାନ ମନ୍ତ୍ରୀ Mr. B.G. Kherଙ୍କୁ ପତ୍ର ଲେଖି ଅନୁରୋଧ କରିଥିଲେ ଯେ ୧୪.୭.୧୯୪୭ରେ ହେବାକୁ ଥିବା ବମ୍ବେ ନର୍ବାଚନ ମଣ୍ଡଳୀରୁ ଡଃ ଆମ୍ବେଦକରଙ୍କୁ ଯେ କୌଣସି ପ୍ରକାରେ ବିଜୟୀ କରିବା ପାଇଁ ଉଦ୍ୟମ କରନ୍ତୁ ।

ଡଃ ଆମ୍ବେଦକର ୧୪.୭.୧୯୪୭ ପୂର୍ବରୁ ଅର୍ଥାତ୍ ୭.୭.୧୯୪୭ ଦିନ ନିର୍ଦ୍ୱନ୍ଦରେ ନିର୍ବାଚିତ ହୋଇ ଆସିଲେ । ଗୃହରେ ପ୍ରବେଶ କରିବା ମାତ୍ରେ ତାଙ୍କୁ ଆଇନ ମନ୍ତ୍ରୀ ଦାୟିତ୍ୱ ଦିଆଗଲା । ପରେ ପରେ ତାଙ୍କୁ ସମ୍ବିଧାନ ଚିଠା ପ୍ରଣୟନ କମିଟିର ସଭ୍ୟ ଏବଂ ତାପରେ ଅଧ୍ୟକ୍ଷଭାବେ ମନୋନୟନ କରାଗଲା ।

ଡଃ ଆମ୍ବେଦକର ପ୍ରଥମ ବିଜୟରେ ହିଁ ସନ୍ତୁଷ୍ଟ ଥିଲେ । ସେ ଭାବିଥିଲେ ଯେ Constituent Assembly କୁ ନିର୍ବାଚିତ ହୋଇ ଆସିବା ଦ୍ୱାରା କିଛି ଯଦି କରିବାରେ ଅସମର୍ଥ ହୁଅନ୍ତି ତଥାପି ଦଳିତ ସ୍ୱାର୍ଥ ବିରୋଧି ଯେ କୌଣସି ନିୟମକୁ ବିରୋଧ କରବାରେ ପଛଘୁଞ୍ଚା ଦେବେ ନାହିଁ । ପାରୁ ପର୍ଯ୍ୟନ୍ତ ଦଳିତମାନଙ୍କ ବିକାଶ ପାଇଁ ସଂଘର୍ଷ କରିବେ । ସେ କେବେ ଆଶା କରିନଥିଲେ ଯେ, ଯେଉଁ ସମ୍ବିଧାନରେ କେବଳ ଦଳିତ ସ୍ୱାର୍ଥ ଜଗିବା ପାଇଁ ସେ ଆସିଥିଲେ ସେଇ ସମ୍ବିଧାନର ଚିଠା ସେ ନିଜେ ପ୍ରସ୍ତୁତ କରିବେ ଏବଂ ପ୍ରଣୟନ କମିଟର ସର୍ବେସର୍ବା ହୋଇ ଅଧ୍ୟକ୍ଷ ପଦରେ ଅଧିଷ୍ଠିତ ହେବେ । ଏ ସମ୍ବନ୍ଧନରେ ମହାରାଷ୍ଟ୍ର ସରକାରଙ୍କ ଦ୍ୱାରା ପ୍ରତିଷ୍ଠିତ ଡଃ ବାବାସାହେବଙ୍କ ରଚନା ପ୍ରକାଶନ କମିଟିର ସଂପାଦକ ବସନ୍ତ ମୁନ୍‌ଙ୍କ ଟିପ୍ପଣୀ ପ୍ରଣିଧାନ ଯୋଗ୍ୟ । ସେ ଲେଖିଛନ୍ତି ଯେ, କଂଗ୍ରେସର ସବୁଠାରୁ ବଡ଼ ସମାଲୋଚ୍‌କ ଡଃ ଆମ୍ବେଦକର ସେତେବେଳେ କଂଗ୍ରେସର ଦୃଷ୍ଟିରେ ବନ୍ଧୁ ପାଲଟି ଯାଇଥିଲେ ଏବଂ ତାଙ୍କ ପାଇଁ ସେତେବେଳେ ଏକାଧାରରେ ଦାର୍ଶନିକ, ମାର୍ଗଦର୍ଶକ, ଆଇନଜ୍ଞ, ସମ୍ବିଧାନବିତ୍ ହୋଇ ଉଠିଥିଲେ ।

ଡଃ ଆମ୍ବେଦକର ମଧ୍ୟ ସମ୍ବିଧାନ ଚିଠା ପ୍ରଣୟନ କମିଟିର ଅଧ୍ୟକ୍ଷ ହେବାପରେ ତଥା ସଂବିଧାନ ଉପସ୍ଥାପନ କଲାବେଳେ ୨୫.୧୧.୧୯୪୯ରେ ନିଜର ପ୍ରାରମ୍ଭିକ ସୂଚନାରେ କହିଥିଲେ - "Constituent Assembly" କୁ ନିର୍ବାଚିତ ହୋଇ ଆସିବାରେ ଅନୁସୂଚିତ ଜାତିର ସ୍ୱାର୍ଥରକ୍ଷା ବ୍ୟତୀତ ମୋର ଅନ୍ୟ କୌଣସି ବଡ଼ ଆକର୍ଷଣ ନଥିଲା । ମୁଁ କେବେ ଆଶା କରନଥିଲି ଯେ, Constituent Assembly ମୋତେ ଆଉ କିଛି

ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ ପାଇଁ ଆମନ୍ତ୍ରିତ କରାଯିବ । ସେଇଥି ଯୋଗୁଁ ଯେତେବେଳେ ମୋତେ ସମ୍ବିଧାନର ଚିଠା ପ୍ରଣୟନ କମିଟିକୁ ମନୋନୟନ କଲେ, ମୁଁ ଆଶ୍ଚର୍ଯ୍ୟ ନହୋଇ ରହି ପାରି ନଥିଲି ଏବଂ ଯେତେବେଳେ ମୋତେ ଏହି କମିଟିର ଅଧ୍ୟକ୍ଷ କରିଦିଆଗଲା ମୁଁ ସ୍ତମ୍ଭୀଭୂତ ହୋଇ ଯାଇଥିଲି ।

ଏ ସବୁ ଦୃଷ୍ଟିରୁ ଡଃ ଆମ୍ବେଦକର ଯାହାଙ୍କୁ ଆମେ ଶ୍ରଦ୍ଧାରେ ବାବାସାହେବ କହୁ ନିଜର ଜ୍ଞାନ, ପ୍ରତିଭା, ଦକ୍ଷତା, ବିଚକ୍ଷଣତାର ବଳରେ ଶତ୍ରୁମାନଙ୍କ ମଧ୍ୟରେ ମଧ୍ୟ ନିଜର ସ୍ଥାନ ସୁଦୃଢ଼ କରିପାରିଥିଲେ । ନିଜ ଜୀବନରେ ଅଙ୍ଗେ ଅଙ୍ଗେ ଭୋଗିଥିବା ବର୍ଣ୍ଣ ବୈଷମ୍ୟ ଲାଞ୍ଛନା, ପ୍ରତାରଣା, ଅପମାନଙ୍କୁ ନିଜ ବୁକୁ ମଧ୍ୟରେ ଚାପିଧରି ଦେଶ ତଥା ଦେଶବାସୀଙ୍କ ପାଇଁ ଏକ ଉତ୍କୃଷ୍ଟ, ଆଦର୍ଶ ସମ୍ବିଧାନ ରଚନାର ସଂକଳ୍ପ ନେଲେ ।

ପୃଥିବୀର ସର୍ବବୃହତ ଭାରତୀୟ ସମ୍ବିଧାନକୁ ଧର୍ମ, ଜାତି, ରାଜନୈତିକ ପ୍ରଭାବରୁ ଊର୍ଦ୍ଧ୍ୱରେ ରଖି ଲେଖାଯାଇଥିବା ଏଭଳି ଏକ ନିରପେକ୍ଷ ସମ୍ବିଧାନ ପୃଥିବୀରେ ବିରଳ ।

ସମ୍ବିଧାନ ଚିଠା ପ୍ରସ୍ତୁତି କମିଟୀରେ ୭ ଜଣ ସଦସ୍ୟ ଥିଲେ ମଧ୍ୟ ଡଃ ଆମ୍ବେଦକରଙ୍କୁ ପ୍ରାୟ ଅଧିକାଂଶ କାର୍ଯ୍ୟ ତୁଲାଇବାକୁ ପଡ଼ିଥିଲା । ତାହା ଏହି କମିଟିର ଅନ୍ୟତମ ସଦସ୍ୟ ଶ୍ରୀ ଟି.ଟି. କ୍ରିଷ୍ଣାମାଚାରୀଙ୍କ ବକ୍ତବ୍ୟରୁ ସ୍ପଷ୍ଟ ହୋଇଯାଏ । ଶ୍ରୀ କ୍ରିଷ୍ଣାମାଚାରୀ କହିଥିଲେ "ଏ ସଂସଦ ସଭାର ସଦସ୍ୟମାନଙ୍କୁ ଭଲଭାବରେ ଜଣା ଯେ ଯେଉଁ ସାତ ଜଣ ସଦସ୍ୟଙ୍କ ସମ୍ବିଧାନ ଚିଠା ପ୍ରସ୍ତୁତି ପାଇଁ ମନୋନୀତ କରାଯାଇଥିଲା ତାଙ୍କ ମଧ୍ୟରୁ ଜଣେ ଇସ୍ତଫା ପ୍ରଦାନ କରିଥିଲେ ଏବଂ ତାଙ୍କ ସ୍ଥାନରେ ଆଉ ଜଣେ ନୂତନ ଭାବରେ ମନୋନୀତ ହୋଇଥିଲେ । ଜଣେ ମୃତ୍ୟୁବରଣ କରିଥିଲେ ଏବଂ ତାଙ୍କ ସ୍ଥାନ ସବୁଦିନ ପାଇଁ ଖାଲି ପଡ଼ିଥିଲା । ଜଣେ ଆମେରିକାରେ ରହୁଥିବାରୁ ତାଙ୍କ ସ୍ଥାନ ମଧ୍ୟ ରିକ୍ତ ରହିଥିଲା । ଅନ୍ୟ ଜଣେ ପ୍ରାଦେଶିକ ବ୍ୟାପାରରେ ବ୍ୟସ୍ତ ରହୁଥିବାରୁ ଚିଠା କମିଟୀର ବୈଠକରେ ବରାବର ଯୋଗ ଦେଇ ପାରୁନଥିଲେ । ଅନ୍ୟ ଦୁଇଜଣ ସଦସ୍ୟ ହୁଏତ ଅସୁସ୍ଥ ରହୁଥିବାରୁ ଦିଲ୍ଲୀ ନଗରୀରୁ ବହୁ ଦୂରରେ ରହୁଥିଲେ ଏବଂ ସବୁ ବୈଠକରେ ଯୋଗ ଦେବା ସମ୍ଭବପର ନଥିଲା । ଅନ୍ୟ ଅର୍ଥରେ ସମ୍ବିଧାନର ଚିଠା ପ୍ରଣୟନର ସଂପୂର୍ଣ୍ଣ ଦାୟିତ୍ୱ ଡଃ ଆମ୍ବେଦକରଙ୍କୁ ହିଁ ତୁଲାଇବାକୁ ପଡ଼ିଥିଲା ।

ସଂସଦର ରେକର୍ଡ଼ ଅନୁସାରେ ସମ୍ବିଧାନ ଚିଠା ପ୍ରଣୟନ କମିଟୀର ମୋଟ ୪୩ଟି ବୈଠକର ତିନୋଟି ବୈଠକରେ ସମସ୍ତ ସଦସ୍ୟ ଉପସ୍ଥିତ ଥିବାବେଳେ ୧୬ଟିରେ ୬ଜଣ, ୨୫ଟିରେ ୫ଜଣ, ୨୬ଟିରେ ୪ଜଣ, ୨୮ଟିରେ ୩ଜଣ ତଥା ୩୨ଟିରେ ମାତ୍ର ଦୁଇ ଜଣ ଉପସ୍ଥିତ ଥିଲେ । ଡଃ ଆମ୍ବେଦକର ସବୁବୈଠକ ଅର୍ଥାତ୍ ୪୩ଟି ଯାକ ବୈଠକରେ ନିଜର ଅସୁସ୍ଥତା ସତ୍ତ୍ୱେ ମଧ୍ୟ ଉପସ୍ଥିତ ଥିଲେ ।

ଡଃ ଆମ୍ବେଦକର ସମ୍ବିଧାନ ଚିଠା କମିଟିର ଅଧ୍ୟକ୍ଷ ହେବା ପୂର୍ବରୁ ଶ୍ରୀ ବେନେଗଲ୍ ନରସିଂହ ରାଓ ଓ.ଉ.ୱ ସମ୍ବିଧାନର ଏକ ମୂଳ ପ୍ରାରୁପା ରଚନା କରିଥିଲେ । ଏହି ଚିଠାରେ ମୋଟ ୨୪୩ଟି Article ତଥା ୧୩ଟି Schedule ଥିଲା । ଏହାର ଅଧିକାଂଶ Article Indian Act ୧୯୩୫ ରୁ ହିଁ ସଂଗୃହୀତ ହୋଇଥିଲା ଯେଉଁ Act ବ୍ରିଟିଶ ସରକାର ଗୋଲ ଟେବୁଲ ବୈଠକରେ ଗୃହୀତ ପ୍ରସ୍ତାବ ଗୁଡ଼ିକୁ ସ୍ଥାନ ଦେଇଥିଲେ । ଏହା ସର୍ବ ବିଦିତ ଯେ ଡଃ ଆମ୍ବେଦକର ଗୋଲ ଟେବୁଲ ବୈଠକର ପ୍ରତ୍ୟେକ ବୈଠକରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ଦଳିତମାନଙ୍କ ଦାବି ବ୍ୟତୀତ ଅନ୍ୟ ଦାବି ଗୁଡ଼ିକରେ ମଧ୍ୟ ସେ ନିଜର ପାଣ୍ଡିତ୍ୟ ଦ୍ୱାରା ବ୍ରିଟିଶ ସରକାରଙ୍କୁ ନିଜ ପ୍ରସ୍ତାବ ଗ୍ରହଣ କରିନେବାକୁ ବାଧ୍ୟ କରିଥିଲେ । ସେହି ନିୟମରୁ ଅଧିକାଂଶ ନିୟମକୁ Sir B.N. Rao ନିଜର ସମ୍ବିଧାନ ପ୍ରାରୁପରେ ସ୍ଥାନ ଦେଇଥିଲେ । କିନ୍ତୁ ଡଃ ଆମ୍ବେଦକର ଦାୟିତ୍ୱ ଗ୍ରହଣ କରିବା ପରେ ଉକ୍ତ ଚିଠାର ସଂଶୋଧନ ତଥା ପରିବର୍ତ୍ତନ କରି ତାକୁ ୩୧୫ଟି Article ତଥା ୮ଟି Schedule ବିଶିଷ୍ଟ କରି ଗୃହରେ ତର୍କ ବିତର୍କ ପାଇଁ ଉପସ୍ଥାପିତ କରିଥିଲେ । ଆମେ ଆଗରୁ କହିଛୁଁ ଯେ ସମ୍ବିଧାନ ସଭାକୁ ସାହାଯ୍ୟ କରିବା ପାଇଁ ସାତୋଟି ସବ୍ କମିଟି ଗଠିତ ହୋଇଥିଲା ଏବଂ ଡଃ ଆମ୍ବେଦକର ଏହି ସାତଟି ମଧ୍ୟରୁ ତିନୋଟିର ସଭ୍ୟ ଥିଲେ ତଥା ତାଙ୍କର ଟିପ୍ପଣିକୁ ଏହି ସବ୍ କମିଟି ଗୁଡ଼ିକ ସମ୍ମାନର ସହିତ ଗ୍ରହଣ କରି ନେଇଥିଲେ ।

ଭାରତର ପ୍ରଥମ ରାଷ୍ଟ୍ରପତି ଡଃ ରାଜେନ୍ଦ୍ର ପ୍ରସାଦ ସମ୍ବିଧାନ ଚିଠାକୁ ସ୍ୱୀକୃତି ଦେବା ପରେ ଯେଉଁ ଅଭିଭାଷଣ ଦେଇଥିଲେ ତହିଁରୁ ଡଃ ଆମ୍ବେଦକରଙ୍କୁ ଉତ୍ସର୍ଗୀକୃତ ନିଷ୍ଠାର ପ୍ରମାଣ ମିଳେ । ସେ କହିଥିଲେ "ଏ ଆସନରେ ଅଧିଷ୍ଠିତ ହୋଇ ମୁଁ ଦୈନନ୍ଦିନ ବିତର୍କରୁ ଉତ୍ତମ ଭାବରେ ହୃଦୟଙ୍ଗମ କରି ସମ୍ବିଧାନ ଚିଠା ପ୍ରଣୟନ କମିଟିର ସଦସ୍ୟମାନଙ୍କୁ ଏବଂ ବିଶେଷକରି ଏହାର ଅଧ୍ୟକ୍ଷ ଡଃ ଆମ୍ବେଦକରଙ୍କୁ ସେମାନଙ୍କ ଉତ୍ସର୍ଗୀକୃତ କାର୍ଯ୍ୟ ପାଇଁ ଆନ୍ତରିକ କୃତଜ୍ଞତା ଜଣାଉଛି । ଡଃ ଆମ୍ବେଦକର ନିଜର ଅସୁସ୍ଥତା ସତ୍ତ୍ୱେ ନିଷ୍ଠାର ସହିତ ଏ ମହାନ୍ କାର୍ଯ୍ୟକୁ ସମ୍ପନ୍ନ କରିଛନ୍ତି । ଏହା ଅନ୍ୟ ବ୍ୟକ୍ତି ପକ୍ଷେ ଅସମ୍ଭବ ଥିଲା । ତାଙ୍କୁ ସମ୍ବିଧାନ ଚିଠା ପ୍ରଣୟନ କମିଟିର ଅଧ୍ୟକ୍ଷ ଭାବେ ନିଯୁକ୍ତ ଦେବାର ଉପଯୁକ୍ତ ନିଷ୍ପତ୍ତି ନେବାରେ ଏ ଗୃହ କୌଣସି ଭୁଲ କରିନାହିଁ । ଡଃ ଆମ୍ବେଦକର ତାଙ୍କର ଏ ନିଯୁକ୍ତିର ଯଥାର୍ଥତା ପ୍ରତିପାଦନ କରି ପାରିଛନ୍ତି ତଥା ତାଙ୍କ ଦ୍ୱାରା ସମ୍ପାଦିତ ଏ କାମକୁ ଅଧିକ ଦିପ୍ତିମାନ କରି ଗଢ଼ି ତୋଳିଛନ୍ତି । ମୋର ଏ ପ୍ରସଂଶା କମିଟୀର ଅନ୍ୟ ସଦସ୍ୟମାନଙ୍କୁ ଅସହ୍ୟ ବୋଧ ହୋଇପାରେ । କିନ୍ତୁ ମୁଁ ଜାଣେ ସେମାନେ ମଧ୍ୟ ଅଧ୍ୟକ୍ଷଙ୍କ ଭଳି ଖୁବ୍ ନିଷ୍ଠାର ସହିତ ଏ ମହାନ୍ କାମରେ ସହଯୋଗ କରିଛନ୍ତି । ତେଣୁ ମୁଁ ଦେଶ ତରଫରୁ ସେମାନଙ୍କୁ ମଧ୍ୟ ଧନ୍ୟବାଦ ଜଣାଉଛି ।"

କେବଳ ଏତିକି ନୁହେଁ, ଚିଠା ସମ୍ବିଧାନ ଉପରେ ବିତର୍କ ହେଲାବେଳେ ଡଃ ଆମ୍ବେଦକର ସବୁ ପ୍ରଶ୍ନର ଉତ୍ତର ଏକା ଦେଉଥିଲେ । ବେଳେବେଳେ ତାଙ୍କୁ ଆକ୍ରାମଣାତ୍ମକ ପ୍ରଶ୍ନର ସମ୍ମୁଖୀନ ହେବାକୁ ପଡୁଥିଲା କିନ୍ତୁ ସେ ସବୁକୁ ସେ ଅତି ସହଜରେ ସମାଧାନ କରିଦେଉଥିଲେ । ସେ କହୁଥିଲେ ଯେ, ବିତର୍କରେ ତାଙ୍କୁ ବିରୋଧ କରୁଥିବା ସଦସ୍ୟଙ୍କ ବିନା ସମ୍ବିଧାନ ସଭାର ବିତର୍କ ବିରସ ହୋଇ ଯାଇଥାନ୍ତା । ଡଃ ଆମ୍ବେଦକର କେବଳ ଦଳିତମାନଙ୍କ ତ୍ରାଣକର୍ତ୍ତା ନଥିଲେ । ସେ ଥିଲେ ଶ୍ରମିକ ନେତା, ନାରୀ ଜାତିର ଉଦ୍ଧାରକ, ଶିଶୁ ଶ୍ରମିକର ମୁକ୍ତିଦାତା । ବଡ଼ଲାଟଙ୍କ କାର୍ଯ୍ୟକାରୀ ପରିଷଦରେ ମନ୍ତ୍ରୀ ଥିବାବେଳେ ସେ ଅନେକ ଆଇନ ପ୍ରବର୍ତ୍ତନ କରିବାରେ ସକ୍ଷମ ହୋଇଥିଲେ । Industrial Dispute Act, Working Hour Industrial Standing Order, Maternity leave, Child Labour Act ଭଳି ଅନେକ Bill ସେ ଆଗତ କରିଥିଲେ । ଏ ସବୁ ତାଙ୍କୁ ସମ୍ବିଧାନ ଚିଠା ପ୍ରଣୟନ ବେଳେ ଅନେକ ସାହାଯ୍ୟ କରି ପାରିଥିଲେ ଏବଂ ସେ ବିରୋଧି ସଭ୍ୟଙ୍କ ପ୍ରଶ୍ନର ସମାଧାନ ଅନାୟାସରେ କରି ଦେଇପାରୁଥିଲେ ।

ଚିଠା ସମ୍ବିଧାନ ଉପରେ ଟିକିନିଖି ବିତର୍କ ହୋଇ ସର୍ବ ଶେଷରେ ଏହା ୩୯୫ଟି ଉପଧାରାକୁ ବୃଦ୍ଧି ପାଇ ସ୍ୱୀକୃତୀ ଲାଭ କରିଥିଲା । ସମ୍ବିଧାନ ସଂଶୋଧନ ବ୍ୟବସ୍ଥା ପ୍ରସ୍ତାବ ଗ୍ରହଣ କରିଦେବା ପରେ ଡଃ ଆମ୍ବେଦକରଙ୍କ ଭୂମିକା କ'ଣ ଥିଲା ଏହା ଶ୍ରୀ ଏଚ୍.ଭି. କାମାଥଙ୍କ ଟିପ୍ପଣୀରୁ ଜଣାପଡ଼େ । ଡଃ ଆମ୍ବେଦକରଙ୍କୁ ଗୃହର ଅଧ୍ୟକ୍ଷ ବାରମ୍ବାର ପଚାରୁଥିଲେ ଯେ, ଏ ପ୍ରସ୍ତାବ ଗ୍ରହଣ ଯୋଗ୍ୟ କି ? ଏଥିରେ ଶ୍ରୀ କାମାଥ ଅସହିଷ୍ଣୁ ହୋଇ ଅଧ୍ୟକ୍ଷଙ୍କୁ ଥରେ ପ୍ରଶ୍ନ କରିଥିଲେ ଯେ, ଡଃ ଆମ୍ବେଦକର କ'ଣ ଗ୍ରହଣ କରି ନେଇଛନ୍ତି ଏବଂ କ'ଣ ଅଗ୍ରାହ୍ୟ କରି ଦେଇଛନ୍ତି ସେ ବିଷୟରେ ପଚାରିବାର କ'ଣ ଆବଶ୍ୟକତା ଅଛି ? ଉତ୍ତରରେ ଅଧ୍ୟକ୍ଷ କହିଥିଲେ, "ସବୁବେଳେ ନ ହେଲେ ମଧ୍ୟ ସମୟ ବିଶେଷରେ ଏହାର ନିହାତି ଆବଶ୍ୟକତା ରହିଛି ।"

ଏଥିରୁ ସ୍ପଷ୍ଟ ଜଣାପଡ଼େ ଯେ, ଡଃ ଆମ୍ବେଦକରଙ୍କ ମତାମତକୁ ଅଧ୍ୟକ୍ଷ ଅଧିକ ଗୁରୁତ୍ୱ ଦେଉଥିଲେ ମଧ୍ୟ ପ୍ରଦେଶର ସଦସ୍ୟ ସେଠ ଗୋବିନ୍ଦ ଦାସ ଡଃ ଆମ୍ବେଦକରଙ୍କ ପ୍ରତିଭାରେ ଆତ୍ମ ବିଭୋର ହୋଇ ତାଙ୍କୁ ବର୍ତ୍ତମାନ ଯୁଗର ମନୁ କହିବାକୁ ସଂକୋଚ କରି ନଥିଲେ । ସଦସ୍ୟ ଶ୍ରୀ ବି.ଏ. ମାଣ୍ଡଲୋଇ କହିଥିଲେ ଯେ, ଅନେକ ବିରୋଧାତ୍ମକ ବିତର୍କରେ ନିଜର ମତାମତକୁ ଖୁବ୍ ସୁନ୍ଦର ଭାବରେ ଉପସ୍ଥାପିତ କରି ଗୃହର ଉତ୍ତେଜନା ପ୍ରଶମିତ କରିବାରେ ଡଃ ଆମ୍ବେଦକର ସିଦ୍ଧହସ୍ତ ଥିଲେ ।

ପୂର୍ବ ପଞ୍ଜାବର ସଦସ୍ୟ ପଣ୍ଡିତ ଠାକୁର ଦାସ ଭାର୍ଗବ ସଂସଦ ଭବନରେ ଭାବବିହ୍ୱଳ ହୋଇ କହଥିଲେ, "ଏହି କମିଟୀର ଅଧ୍ୟକ୍ଷ ଡଃ ଆମ୍ବେଦକର ଯେଉଁଭଳି ଅକ୍ଲାନ୍ତ ପରିଶ୍ରମ

କରି ସଭ୍ୟତାର ଅତୁଳନୀୟ ଦକ୍ଷତା, ଦୃଢ଼ତା, ବିଜ୍ଞତା ପ୍ରଦର୍ଶନ କରି ତଥା ଆଧୁନିକ ସଭ୍ୟତାର ଅନୁଭବ ନେଇ ଏଇ ଗୃହରେ ସମ୍ବିଧାନକୁ ଗୃହୀତ କରାଇ ପାରିଛନ୍ତି, ବିତର୍କ ଗୁଡ଼ିକର ସନ୍ତୋଷଜନକ ସମାଧାନ ଉପସ୍ଥାପିତ କରିଛନ୍ତି ତାଙ୍କୁ ଭାଷାରେ ପ୍ରକାଶ କରି ପ୍ରଶଂସା କରିବାକୁ ମୁଁ ଅସମର୍ଥ । ତାଙ୍କ ମଧ୍ୟରେ ଫୁଟି ଉଠିଥିବା ଜନ ସାଧାରଣଙ୍କ ହିତାକାଂକ୍ଷାକୁ ନିଜେ ଖୁବ୍ ଭଲଭାବରେ ଅନୁଭବ କରୁଛି । ସେ ନିଜକୁ ଅନୁସୂଚିତ ଜାତିର ନେତା ଭାବେ ପରିଚିତ କରାଇଛନ୍ତି କିନ୍ତୁ ତାଙ୍କର ମହାନୁଭବ ଯୋଗୁଁ, ଆଜି ଆମମାନଙ୍କ ହୃଦୟରେ ଉଚ୍ଚତମ ଆସନ ଅଧିକାର କରିନେଇଛନ୍ତି । ମୋର ଆଶା ସେ ଦିନେ ନା ଦିନେ ନିଜର ସଂକୀର୍ଣ୍ଣ ଜାତିଭିତ୍ତିକ ନେତୃତ୍ୱରୁ ବାହାରି ଆସି କଂଗ୍ରେସ ଦଳର High Command ମଣ୍ଡଳୀରେ ଆସନ ଗ୍ରହଣ କରିବେ ।"

ଉତ୍ତର ପ୍ରଦେଶର ସଦସ୍ୟ Sri R.V. Dhulekar କହିଥିଲେ -"ଆମ ଆଗରେ ଉପସ୍ଥାପିତ ମହାନ୍ କାର୍ଯ୍ୟ ବାସ୍ତବିକ ଏକ ମୁସ୍କିଲ କାର୍ଯ୍ୟ ଥିଲା । ଡଃ ଆମ୍ବେଦକର ଏହାକୁ ସଂପାଦନ କରି ଏକ ମହାନ୍ କାର୍ଯ୍ୟ କରିଛନ୍ତି । ମୁଁ ତାଙ୍କୁ Hercules ଙ୍କ ସହିତ ତୁଳନା କରି ତାଙ୍କର ମର୍ଯ୍ୟାଦାହାନୀ କରିବାକୁ ଚାହେଁ ନାହିଁ । ସେ ପାଣ୍ଡବ ବୀର ଭୀମଙ୍କ ଭଳି ଅସମ୍ଭବ କାର୍ଯ୍ୟ ସଂପାଦନ କରି ନିଜର ଭୀମରାଓ ଆମ୍ବେଦକର ନାମକୁ ସାର୍ଥକ କରିଛନ୍ତି ।"

ଡଃ ଆମ୍ବେଦକରଙ୍କ ପ୍ରସଂଶାରେ ଶତମୁଖ ସଦସ୍ୟଙ୍କ ବକ୍ତବ୍ୟ ଗୁଡ଼ିକ ଏଇଠି ଉପସ୍ଥାପିତ କରିବା ସମ୍ଭବପର ନୁହେଁ । କିନ୍ତୁ ଏହା ଧ୍ରୁବ ଭଳି ସତ୍ୟ ଯେ, ଡଃ ଆମ୍ବେଦକରଙ୍କ ବିନା ଏ ଦେଶର ସମ୍ବିଧାନ ସ୍ୱୟଂ ସଂପୂର୍ଣ୍ଣ ହୋଇ ପାରିନଥାଆନ୍ତା କିମ୍ବା ସର୍ବଜନାଦୃତ ହୋଇ ପାରି ନଥାନ୍ତି । ଏ ସମ୍ବିଧାନ ଜନ ସାଧାରଣଙ୍କର ସମ୍ବିଧାନ ।

ଡଃ ଆମ୍ବେଦକରଙ୍କୁ ଏଭଳି ଏକ ମହାନ୍ କାର୍ଯ୍ୟ ପାଇଁ Colombia University ତାଙ୍କୁ L.L.d ଉପାଧିରେ ବିଭୁଷିତ କରିଥିଲେ । ଏ ସବୁ ସତ୍ତ୍ୱେ ମଧ୍ୟ ଡଃ ଆମ୍ବେଦକର କେବେ ନିଜକୁ ଏହାର ଏକ ମାତ୍ର ଶିଳ୍ପକାର ବୋଲି ଦାବି କରି ନାହାନ୍ତି । ତାଙ୍କୁ ଏ ସମ୍ମାନ ଏ ଦେଶର ନେତା, ସ୍ୱାଧୀନତା ସଂଗ୍ରାମୀ, ତଥା ଜନ ସାଧାରଣ ହିଁ ଦେଇଛନ୍ତି । ଆସନ୍ତୁ ଆଜିର ଏ ପବିତ୍ର ଦିବସରେ ସେଇ ଯୁଗନ୍ଧର ଭାରତ ରତ୍ନ ଡଃ ଭୀମରାଓ ରାମଜୀ ଆମ୍ବେଦକରଙ୍କ ପ୍ରତି ଆମର ବିନମ୍ର ଶ୍ରଦ୍ଧାଞ୍ଜଳୀ ଜଣାଇବା ।

# ଡକ୍ଟର ଆମ୍ବେଦକର ଓ ସାମାଜିକ ନ୍ୟାୟ

ରମେଶଚନ୍ଦ୍ର ମଲ୍ଲିକ

ଦଳିତ ଆନ୍ଦୋଳନର ଅନ୍ୟତମ ଅପ୍ରତିଦ୍ୱନ୍ଦୀ ସାରଥୀଭାବେ ଆମ୍ବେଦକରଙ୍କ ପରିଚୟ ସର୍ବଦା ସ୍ମରଣୀୟ । ଆମ୍ବେଦକର (୧୯୮୧-୧୯୫୬)ଙ୍କ ସାମାଜିକ ଆନ୍ଦୋଳନକୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରି ବିଚାର କରାଯାଇପାରେ । ସେଗୁଡ଼ିକ ହେଲା: ସମାଜ ସଂସ୍କାରମୂଳକ ଆନ୍ଦୋଳନ ଓ ଅନ୍ୟ ଦିଗଟି ସାମାଜିକ ନ୍ୟାୟ ଓ ମାନବୀୟ ଅଧିକାର ପ୍ରତିଷ୍ଠାମୂଳକ ଆନ୍ଦୋଳନ । ପ୍ରଥମ ଦିଗଟିରେ ଆମ୍ବେଦକର ଦଳିତମାନଙ୍କ ଅସ୍ମିତା, ସାମାଜିକ ସମତା, ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ପ୍ରତିଷ୍ଠାପାଇଁ ଦାବି, ଇଂରେଜି ଶିକ୍ଷା ପ୍ରଭୃତି ଦିଗକୁ ଗୁରୁତ୍ୱ ଦେଇଥିଲେ । ହିତକାରିଣୀ ସଭା (୧୯୨୪), ସମାଜ ସମତା ସଂଘ (୧୯୨୭), ମହାନ୍ କୂଅ ସତ୍ୟାଗ୍ରହ (୧୯୨୪), କାଲାରାମ ମନ୍ଦିର ସତ୍ୟାଗ୍ରହ (୧୯୩୦), ଶ୍ରମିକ ଦଳ (୧୯୩୦) ଓ ଅନୁସୂଚିତ ଜାତି ସଂଘ (୧୯୫୬) ପ୍ରଭୃତି ପ୍ରତିଷ୍ଠା କରି ଏହାରି ମାଧ୍ୟମରେ ଦଳିତମାନଙ୍କର ଅଧିକାର, ଶିକ୍ଷା ଓ ସମସ୍ୟା ବିଷୟରେ ସ୍ୱର ଉତ୍ତୋଳନ କରିଥିଲେ ।

ଦଳିତମାନଙ୍କର ସର୍ବାଙ୍ଗୀନ ଉନ୍ନତିପାଇଁ ଇଂରାଜୀ ଶିକ୍ଷାର ଅତ୍ୟନ୍ତ ଆବଶ୍ୟକତା ରହିଛି ବୋଲି ଏହାକୁ ଗୁରୁତ୍ୱ ଦେଇ ସେ ଦଳିତମାନଙ୍କପାଇଁ ସ୍ୱତନ୍ତ୍ର ଛାତ୍ରାବାସ, ପାଠାଗାର, ଅଧ୍ୟୟନ କେନ୍ଦ୍ର, ସାଂସ୍କୃତିକ କେନ୍ଦ୍ର ଓ ଦଳିତ ସାହିତ୍ୟ ରଚନା ପ୍ରଭୃତି କାର୍ଯ୍ୟକୁ ଅତ୍ୟନ୍ତ ଆବଶ୍ୟକ ବୋଲି ମନ୍ତବ୍ୟ ଦେଇଥିଲେ । ଦଳିତମାନଙ୍କପାଇଁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ପ୍ରସ୍ତୁତ ହେବା ଆବଶ୍ୟକ ବୋଲି ବିଚାର କରି ସେ ଦ୍ୱିତୀୟ ଗୋଲ୍ ଟେବୁଲ୍ ବୈଠକ (୧୯୩୧)ରେ ଇଂରେଜ ସରକାରଙ୍କୁ ଦାବିପତ୍ର ଉପସ୍ଥାପିତ କରିଥିଲେ । କିନ୍ତୁ ଏଭଳି ଜାତି-ଭିତ୍ତିକ ବିଭାଜନକୁ ଗାନ୍ଧୀ ଆଦୌ ଗ୍ରହଣ କଲେ ନାହିଁ । ଯାହା ଫଳରେ ଗାନ୍ଧୀ ଓ ଆମ୍ବେଦକରଙ୍କ ମଧ୍ୟରେ ମତାନ୍ତର ହୋଇ ୧୯୩୧ ରେ ପୁନାଚୁକ୍ତି (Poona pact) ସ୍ୱାକ୍ଷରିତ ହୋଇଥିଲା ।

ଆମ୍ବେଦକରଙ୍କ ସାମାଜିକ ଆନ୍ଦୋଳନର ଦ୍ୱିତୀୟ ଦିଗଟି ହେଉଛି ଭାରତୀୟ ସଂବିଧାନ ପ୍ରଣୟନ ଓ ସେଥିରେ ଦଳିତମାନଙ୍କପାଇଁ ସଂରକ୍ଷଣ ବ୍ୟବସ୍ଥା । ୧୯୪୭ ମସିହା ଅଗଷ୍ଟ ୯ ତାରିଖରେ ଆମ୍ବେଦକରଙ୍କ ଅଧ୍ୟକ୍ଷତାରେ ନୂତନ ସଂବିଧାନ ପ୍ରସ୍ତୁତ-ମଣ୍ଡଳୀ ପ୍ରତିଷ୍ଠା କରାଯାଇଥିଲା । ଏ ଦିଗରେ "Dr Ambedkar played two-fold role in the making constitution of India i.e., as a champion of

untouchables on the one hand as a constitutional expert on the other.") (Chitkara, 2002) । ଦଳିତମାନଙ୍କର ସାମାଜିକ ସମତା ଓ ସୁରକ୍ଷାପାଇଁ ସଂରକ୍ଷଣ ବ୍ୟବସ୍ଥା ରହିବା ଆବଶ୍ୟକ ବୋଲି ଆମ୍ବେଦକର ସଂବିଧାନ ପ୍ରସ୍ତୁତ-ମଣ୍ଡଳୀ ଗୃହରେ ଏକ ପ୍ରସ୍ତାବ ଯେତେବେଳେ ଆଗତ କଲେ, ଏହାର ପ୍ରତିବାଦ କରାଯାଇଥିଲା । ଫଳରେ ଆମ୍ବେଦକର ୩-୪ ଦିନ ପର୍ଯ୍ୟନ୍ତ ସଭାଗୃହକୁ ପ୍ରବେଶ କରି ନଥିଲେ । ତେଣୁ କଂଗ୍ରେସ ନେତାମାନେ ଆମ୍ବେଦକରଙ୍କର ଦୃଢ଼ ପ୍ରତିବାଦକୁ ସମ୍ମାନ ଦେଇ ତାଙ୍କ ପ୍ରସ୍ତାବରେ ରାଜି ହୋଇଥିଲେ, ଯାହା ଫଳରେ ଭାରତୀୟ ସଂବିଧାନରେ ଅନୁସୂଚିତ ଜାତି, ଜନଜାତି, ପଛୁଆବର୍ଗ ଓ ସଂଖ୍ୟାଲଘୁମାନଙ୍କପାଇଁ ସ୍ୱତନ୍ତ୍ର ଅନୁଚ୍ଛେଦରେ ସ୍ୱତନ୍ତ୍ର ବିଷୟମାନ ଉଲ୍ଲେଖ କରାଗଲା; ସେଗୁଡ଼ିକ ମଧ୍ୟରେ

1. Representation in Legislatures (Article-330)
2. Representation in Services (Article-336)
3. Grants for Educational Benefits (Article-337) ଆଦି ପ୍ରମୁଖ ।

ଏଥି ସହିତ ମୌଳିକ ଅଧିକାରଗୁଡ଼ିକରେ (Fundamental Rights) ମଧ୍ୟ ସ୍ୱତନ୍ତ୍ର ବ୍ୟବସ୍ଥା ରଖାଗଲା । ବିଶେଷ କରି ଅନୁଚ୍ଛେଦ - ୧୨, ୧୩, ୧୪, ୧୫, ୧୬, ୧୭, ୨୩, ୨୫, ୨୯, ୩୫, ୩୮, ୪୧, ୧୨୪, ୧୬୪, ୨୪୪ଏ, ୨୭୫, ୩୨୦, ୩୩୨, ୩୩୩, ୩୩୪, ୩୩୫, ୩୩୮, ୩୩୯, ୩୪୦, ୩୪୧, ୩୪୨, ୩୭୧, ୩୭୧ଏ, ୩୭୧ବି, ୩୭୧ସି ଆଦିରେ ଦଳିତମାନଙ୍କର ସୁରକ୍ଷା ଓ ସାମାଜିକ ସମତାପାଇଁ ବିଭିନ୍ନ ଦିଗରେ ସଂରକ୍ଷଣ ବ୍ୟବସ୍ଥା ରଖାଗଲା । ଏଥିପାଇଁ ଆମ୍ବେଦକରଙ୍କ ଅବଦାନ ସଦାସର୍ବଦା ସ୍ମରଣୀୟ ।

ସୌଜନ୍ୟ: ରମେଶଚନ୍ଦ୍ର ମଲିକ, *ଦଳିତ ଆନ୍ଦୋଳନ ଓ ଦଳିତ ସାହିତ୍ୟ*, ଡଃ କୃଷ୍ଣଚରଣ ବେହେରା ଓ ଶ୍ରୀ ରବିନ୍ଦ୍ରନାଥ ସାହୁ (ସଂ), ୨୦୦୭, କଟକ: ଓଡ଼ିଆ ଗବେଷଣା ପରିଷଦ ।

# ଭାରତରତ୍ନ ଡକ୍ଟର ଆମ୍ବେଦକର : ଜଣେ ଉପେକ୍ଷିତ ଦାର୍ଶନିକ

ଅଧ୍ୟାପକ ଗୋପବନ୍ଧୁ

ପୃଥିବୀର ସର୍ବ ବୃହତ୍ତମ ଗଣତାନ୍ତ୍ରିକ ରାଷ୍ଟ୍ରର ସମ୍ବିଧାନ ପ୍ରଣେତା ଭାବେ ଡକ୍ଟର ଭୀମରାଓ ରାମଜୀ ଆମ୍ବେଦକରଙ୍କ ପ୍ରସିଦ୍ଧି ସୁଦୂର ପ୍ରସାରୀ । କିନ୍ତୁ ଜଣେ ଉତ୍କୃଷ୍ଟମାନର ଦାର୍ଶନିକ ଭାବେ ବିଶ୍ୱ ଦରବାରରେ ତଥା ଭାରତବର୍ଷରେ ତାଙ୍କ ସମ୍ବନ୍ଧୀୟ ଅବଗତି ଅତ୍ୟନ୍ତ ସୀମିତ । ତାଙ୍କ ଦର୍ଶନର ଗୁଢ଼ତତ୍ତ୍ୱକୁ ବିଶ୍ଳେଷଣ କଲେ ସେ ଯେ ବିଶ୍ୱବିଖ୍ୟାତ ଦାର୍ଶନିକମାନଙ୍କ ତୁଳନାରେ କୌଣସି ଗୁଣରେ ନ୍ୟୁନ ନୁହନ୍ତି, ଏହା ସ୍ୱୀକାର କରିବାକୁ ପଡ଼ିଥାଏ । ତୁଳନାତ୍ମକ ଭାବେ ବିଚାର କଲେ ସେ ବିଶ୍ୱପ୍ରସିଦ୍ଧ ଦାର୍ଶନିକମାନଙ୍କ ମଧ୍ୟରେ ନିଜର ଆସ୍ଥାନ ଜମାଇ ବସିବା ନିଶ୍ଚିତ । କିନ୍ତୁ ଦୁଃଖର କଥା ବିଶ୍ୱ ଦାର୍ଶନିକ ମଞ୍ଚରେ ତ ତାଙ୍କର ନାମ ନାହିଁ, ଏପରିକି ଭାରତବର୍ଷରେ ମଧ୍ୟ ସେ ଜଣେ ଦାର୍ଶନିକ ଭାବେ ସ୍ୱୀକୃତି ଲାଭ କରିନାହାନ୍ତି ।

ଭାରତବର୍ଷରେ ଅନ୍ୟାନ୍ୟ ଦାର୍ଶନିକମାନଙ୍କ ତତ୍ତ୍ୱକୁ ଯେଉଁ ଗୁରୁତ୍ୱ ମିଳିଛି, ଆମ୍ବେଦକରଙ୍କ ପରି ଜଣେ ବିଶ୍ୱ ସ୍ତରୀୟ ଦାର୍ଶନିକଙ୍କ ତତ୍ତ୍ୱକୁ ସେହି ଗୁରୁତ୍ୱ ଦିଆଯାଇନାହିଁ । ବିଂଶ ଶତାବ୍ଦୀର ଭାରତୀୟ ଚିନ୍ତାନାୟକ ଓ ରାଷ୍ଟ୍ରନାୟକମାନଙ୍କ ବିଚାରଧାରାକୁ ଦର୍ଶନ ଶ୍ରେଣୀର ଅନ୍ତର୍ଭୁକ୍ତ କରାଯାଇ ମହାବିଦ୍ୟାଳୟ ସ୍ତରରେ ପାଠ୍ୟକ୍ରମର ପରିସରଭୁକ୍ତ କରାଯାଇଥିବା ବେଳେ, କୌଣସି ଦିଗରୁ ନିମ୍ନମାନର ହୋଇନଥିବା ଆମ୍ବେଦକରଙ୍କର ସୁନିୟନ୍ତ୍ରିତ-ଦଳିତ-ଉତ୍‌ଥାନ-ଚିନ୍ତନ ଦର୍ଶନବର୍ଗର ଅନ୍ତର୍ଭୁକ୍ତ ହୋଇପାରିନାହିଁ । ପାଠ୍ୟକ୍ରମମାନଙ୍କରେ ତାଙ୍କର ତାତ୍ତ୍ୱିକ ଚିନ୍ତନକୁ କିମ୍ବା ଏ ବିଷୟ ସମ୍ବଳିତ କୌଣସି ଲେଖାକୁ ପାଠ୍ୟକ୍ରମ ପରିସର ଅଦ୍ୟାବଧି କରାଯାଇନାହିଁ ।

ଆମ୍ବେଦକରଙ୍କର ଦର୍ଶନ, ପ୍ରଚାର ଓ ପ୍ରସାର ଲାଭ କରିନପାରିବା ପଶ୍ଚାତରେ ରହିଛି ଅସ୍ପୃଶ୍ୟ ଚିନ୍ତାଧାରା । ତାଙ୍କର ଜୀବଦ୍ଦଶା ମଧ୍ୟରେ ସେ ଯେ କେବଳ ଅସ୍ପୃଶ୍ୟତାର ଶିକାର ହୋଇଛନ୍ତି ତାହା ନୁହେଁ, ବରଂ ତାଙ୍କ ଅନ୍ତେ ତାଙ୍କର ସମସ୍ତ ଚିନ୍ତନ ଏବଂ ଏ ସମ୍ବନ୍ଧୀୟ ସମସ୍ତ ଲେଖନୀ ମଧ୍ୟ ଉନ୍ନତ ତାତ୍ତ୍ୱିକ ଚିନ୍ତନ ନିଶ୍ଚିତ ରୂପେ ଅନ୍ତତଃପକ୍ଷେ ଶିକ୍ଷା ପାଠ୍ୟକ୍ରମରେ ବିଷୟବସ୍ତୁ ଭାବେ ସ୍ଥାନ ପାଇଥାଆନ୍ତା ଓ ସମୟ ସମୟରେ ପତ୍ରପତ୍ରିକାମାନଙ୍କର ପୃଷ୍ଠାମାନ ମଣ୍ଡନ କରୁଥାନ୍ତା । ଯେହେତୁ ତାଙ୍କର ଦର୍ଶନ ଦଳିତ-

ଉତ୍‌ଥାନ କେନ୍ଦ୍ରିକ, ତେଣୁ ତଥାକଥିତ ଉଚ୍ଚ ସମାଜ ଏବଂ ଏମାନଙ୍କଦ୍ୱାରା ପରିଚାଳିତ ପତ୍ରପତ୍ରିକା ଆଲୋଚନା ପର୍ଯ୍ୟାଲୋଚନା, କାବ୍ୟ-କବିତା ଇତ୍ୟାଦି କୌଣସି କ୍ଷେତ୍ରରେ ଆମ୍ବେଦକରଙ୍କର ଦର୍ଶନକୁ ପୁରାଇ ଦିଆଯାଇନାହିଁ ।

ବିଶ୍ୱପ୍ରସିଦ୍ଧ ଦାର୍ଶନିକମାନଙ୍କ କ୍ଷେତ୍ରରେ ଦେଖାଯାଇଛି ଯେ, କୌଣସି ଦାର୍ଶନିକଙ୍କ ପ୍ରତିଷ୍ଠା ଦିଗରେ ତାଙ୍କର ପରବର୍ତ୍ତୀ ଅନୁଗାମୀ ଦାର୍ଶନିକମାନଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ । କାରଣ ଦର୍ଶନ ହେଉଛି ଏକ ପ୍ରବାହମାନ ଚିନ୍ତନ । କୌଣସି ଚିନ୍ତନ ଉପରେ ଯେତେ ଆଲୋଚନା ଓ ପର୍ଯ୍ୟାଲୋଚନା ହୋଇଥାଏ, ତାହା ସେତେ ପରିପୁଷ୍ଟ ହୋଇଥାଏ । କିନ୍ତୁ ପରିତାପର ବିଷୟ ଆମ୍ବେଦକରଙ୍କ ପରେ ତାଙ୍କର କୌଣସି ଅନୁଗାମୀ ତାଙ୍କର ଦର୍ଶନକୁ ପ୍ରସାରିତ କରିବାକୁ କିମ୍ବା ତାଙ୍କ ଦର୍ଶନର ଅପୂର୍ଣ୍ଣ ଦିଗକୁ ବିକଶିତ କରିବାପାଇଁ ଏପର୍ଯ୍ୟନ୍ତ ଆଗେଇ ଆସିନାହାନ୍ତି । ବୋଧହୁଏ ଦଳିତମାନଙ୍କ ମଧ୍ୟରେ ଏପରି ଜଣେ ବିଦ୍ୱାନ ଜାତ ହୋଇନାହାନ୍ତି, ଯେ କି ତାଙ୍କର ଦର୍ଶନର ବିକାଶ ଘଟାଇବ ଓ ବିଶ୍ୱ ଦରବାରରେ ପରିଚିତ କରାଇବ । କାରଣ ଏହା ଦଳିତମାନଙ୍କୁ ହିଁ କରିବାକୁ ପଡ଼ିବ, ଯେହେତୁ ଆମ୍ବେଦକର ଓ ତାଙ୍କର ଚିନ୍ତନ ମଧ୍ୟ ମନୁବାଦୀ ବୁଦ୍ଧିଜୀବୀଙ୍କ ଦୃଷ୍ଟିରେ ଅସ୍ପୃଶ୍ୟତାର ପରିସରଭୁକ୍ତ । ତେବେ ଏହା ନିଶ୍ଚିତ ଯେ, ଆମ୍ବେଦକର ଯଦି ଉଚ୍ଚ ଜାତିର ହୋଇଥାଆନ୍ତେ, ତେବେ ଦର୍ଶନ କ୍ଷେତ୍ରରେ ସେ ବିଶ୍ୱମାନ୍ୟତା ପ୍ରାପ୍ତ ହୋଇସାରିଥାନ୍ତେ ।

ଭାରତବର୍ଷରୁ ଜାତିପ୍ରଥାର ଉଚ୍ଛେଦ କରିବା ଥିଲା ତାଙ୍କ ସଂଗ୍ରାମ ଓ ଦର୍ଶନର ଅନ୍ତିମ ଲକ୍ଷ୍ୟ । ଏଥିପାଇଁ ସେ କାର୍ଲମାର୍କସ୍‌ଙ୍କ ପ୍ରଦତ୍ତ "ଶ୍ରେଣୀ-ସଂଘର୍ଷ" ତୁଲ୍ୟ "ଜାତି-ସଂଘର୍ଷ"ର ଏକ ପ୍ରାଞ୍ଜଳ ତାତ୍ତ୍ୱିକ ରୂପରେଖ ବିକଶିତ କରିଯାଇଛନ୍ତି । ଅନେକେ ଆମ୍ବେଦକରଙ୍କର "ଜାତି-ସଂଘର୍ଷ"କୁ ମାର୍କ୍ସଙ୍କର "ଶ୍ରେଣୀ-ସଂଘର୍ଷ" ର ଅନ୍ୟରୂପ ଭାବେ ବର୍ଣ୍ଣନା କରିଥାନ୍ତି । କିନ୍ତୁ ବାସ୍ତବପକ୍ଷେ ଦେଖିବାକୁ ଗଲେ ଆମ୍ବେଦକରଙ୍କର ଦର୍ଶନରେ ଅନେକ ମୌଳିକତା ରହିଛି । କାର୍ଲମାର୍କ୍ସଙ୍କ "ଶ୍ରେଣୀ-ସଂଘର୍ଷ" ସମ୍ପୂର୍ଣ୍ଣ ରୂପେ ଆର୍ଥିକ ବ୍ୟବସ୍ଥାର ପରିବର୍ତ୍ତନପାଇଁ ଉଦ୍ଦିଷ୍ଟ ଥିବାବେଳେ, ଆମ୍ବେଦକରଙ୍କ "ଜାତି-ସଂଘର୍ଷ" ସମ୍ପୂର୍ଣ୍ଣ ରୂପେ ସାମାଜିକ ପରିବର୍ତ୍ତନପାଇଁ ଉଦ୍ଦିଷ୍ଟ । ମାର୍କ୍ସଙ୍କର ଦ୍ୱନ୍ଦ୍ୱାବାଦରେ ସାମାଜିକ ବ୍ୟବସ୍ଥାର ତାରତମ୍ୟ ଆର୍ଥିକ ବ୍ୟବସ୍ଥାରୁ ସୃଷ୍ଟି ବୋଲି ବିଚାର କରାଯାଇଛି । ସବୁଠାରୁ ବଡ଼ କଥା ହେଲା "ଶ୍ରେଣୀ-ସଂଘର୍ଷ" ବହୁଳ ଭାବରେ ରକ୍ତାକ୍ତ ସଂଘର୍ଷ ଉପରେ ପର୍ଯ୍ୟବେଶିତ ।

ପ୍ରଥମେ ଆମ୍ବେଦକର ହେଉଛନ୍ତି ଜଣେ ଦାର୍ଶନିକ ଓ ପରେ ହେଉଛନ୍ତି ଜଣେ ସଂଗ୍ରାମୀ ଜନ-ନାୟକ । ତାଙ୍କ ଦର୍ଶନ ଯେପରି ତାଙ୍କ ସଂଗ୍ରାମକୁ ଦିଗ୍‌ଦର୍ଶନ ଦେଇଛି, ତାଙ୍କ ଜାତି-ବୈଷମ୍ୟର ତିକ୍ତ ଅନୁଭୂତି ସେହିପରି ତାଙ୍କ ଦର୍ଶନକୁ ସ୍ୱୟଂସମ୍ପୂର୍ଣ୍ଣ କରି ଗଢ଼ି

ତୋଳିବାରେ ସାହାଯ୍ୟ କରିଛି । ସେ ଜାତିପ୍ରଥାର ଉଚ୍ଛେଦପାଇଁ ଯେଉଁ ଦାର୍ଶନିକ ତତ୍ତ୍ୱର ସଂକଳନ କରିଛନ୍ତି, ସେହି ତତ୍ତ୍ୱକୁ ସେ ନିଜର ରାଜନୈତିକ ସଂଗ୍ରାମରେ ପ୍ରୟୋଗ କରିଯାଇଛନ୍ତି । ତେଣୁ ତାଙ୍କ ଦର୍ଶନରେ ତାତ୍ତ୍ୱିକ ଓ ପ୍ରୟୋଗାତ୍ମକ ପୂର୍ଣ୍ଣତା ପ୍ରାପ୍ତିପାଇଁ ତାଙ୍କଦ୍ୱାରା ଲିଖିତ ବିଭିନ୍ନ ପୁସ୍ତକ, ପତ୍ର-ପତ୍ରିକାରେ ପ୍ରକାଶିତ ବିଭିନ୍ନ ଲେଖନୀ ଓ ବକ୍ତୃତା ସମ୍ବନ୍ଧୀୟ ଟିପ୍ପଣୀ ତଥା ତାଙ୍କର ଜୀବନବ୍ୟାପୀ ସଂଗ୍ରାମୀ ଜୀବନର ଅନୁଧ୍ୟାନ ଓ ପର୍ଯ୍ୟାଲୋଚନା ଏକାନ୍ତ ଆବଶ୍ୟକ । ତେବେ ଭାରତୀୟ ସମାଜର ଜାତିପ୍ରଥା ଉପରେ ପ୍ରକୃତ ବିଶ୍ଳେଷଣ ଓ ଏହାର ବିଲୋପପାଇଁ ପ୍ରଦର୍ଶିତ ସଫଳ ମାର୍ଗ ସମ୍ବଳିତ ପୁସ୍ତକ "ଜାତିପ୍ରଥାର ବିଲୋପ" (Annihilation of Caste) ହେଉଛି ତାଙ୍କର ଶ୍ରେଷ୍ଠ ଦାର୍ଶନିକ ସଙ୍କଳନ । ଏହି ପୁସ୍ତକକୁ ହିଁ ଆମ୍ବେଦକରଙ୍କର 'ଦାସ୍ କ୍ୟାପିଟାଲ୍' ବୋଲି କୁହାଯାଇପାରେ । ଯେଉଁଥିରେ ସେ ଜାତିପ୍ରଥାକୁ ହୃଷ୍ଟପୁଷ୍ଟ ଓ ବଳବତ୍ତର କରୁଥିବା ଦିଗଗୁଡ଼ିକର ନିଖୁଣ ଚିତ୍ର ପ୍ରଦାନ କରିଛନ୍ତି ଏବଂ ଏହା ସହିତ ଦଳିତ ଆନ୍ଦୋଳନ ଜରିଆରେ କିପରି ଜାତିପ୍ରଥାର ବିନାଶ ଘଟାଯାଇପାରିବ, ତାହାର ମଧ୍ୟ ପୁଙ୍ଖାନୁପୁଙ୍ଖ ଆଲୋଚନା କରିଯାଇଛନ୍ତି । ତେଣୁ ଏହି ପୁସ୍ତକକୁ ହିଁ ଭାରତବର୍ଷର ଦଳିତ ଉତ୍‌ଥାନ ଆନ୍ଦୋଳନର ଦିଗ୍‌ଦର୍ଶକ ଭାବେ ଗ୍ରହଣ କରାଯାଇପାରେ ।

ଅବଶେଷରେ ଏହା ନିର୍ଦ୍ୱନ୍ଦ୍ୱରେ କୁହାଯାଇପାରେ ଯେ, କାର୍ଲମାର୍କ୍ସ ଯେଉଁପରି ଭାବେ ସାମ୍ୟବାଦୀ ଆନ୍ଦୋଳନର ତାତ୍ତ୍ୱିକ ସ୍ରଷ୍ଟା ଭାବେ ବିଶ୍ୱ ବିଦିତ, ଆମ୍ବେଦକର ମଧ୍ୟ ସେହିପରି ଭାବେ ଭାରତବର୍ଷରେ 'ସାମାଜିକ-ସମତା ଆନ୍ଦୋଳନ'ର ଉଭୟ ତାତ୍ତ୍ୱିକ ଓ ପ୍ରୟୋଗାତ୍ମକ ଜନକ ଭାବେ ସ୍ୱୀକୃତ । ପାର୍ଥକ୍ୟ ହେଉଛି ପୃଥିବୀର ସାମ୍ୟବାଦୀ ଆନ୍ଦୋଳନର ବିଜୟ ଘଟିଥିବା ବେଳେ ଭାରତବର୍ଷରେ ସାମାଜିକ-ସମତା ଆନ୍ଦୋଳନ ଉତ୍‌ଥାନ ଓ ପତନ ମଧ୍ୟରେ ଏବେ ମଧ୍ୟ ଅବ୍ୟାହତ ରହିଛି । ଭାରତବର୍ଷରେ ଏହି ଆନ୍ଦୋଳନର ପରିପକ୍ୱ ପୃଷ୍ଠଭୂମି ମଧ୍ୟରେ କେବଳ ଆବଶ୍ୟକ ହେଉଛି ଏପରି ଜଣେ ରାଷ୍ଟ୍ରନାୟକ, ଯେ କି ଆମ୍ବେଦକରଙ୍କର ସାମାଜିକ-ସମତା ତତ୍ତ୍ୱକୁ ଅକ୍ଷରେ ଅକ୍ଷରେ ଅନୁସରଣ କରିପାରୁଥିବ ଓ ଦଳିତ ଆନ୍ଦୋଳନକୁ ସଂଗଠିତ କରି ଆମ୍ବେଦକରଙ୍କର ଦାର୍ଶନିକ ତତ୍ତ୍ୱର ପ୍ରୟୋଗାତ୍ମକ ବିଜୟ ଆଣିପାରୁଥିବ ।

ସୌଜନ୍ୟ: ଅଧ୍ୟାପକ ଗୋପବନ୍ଧୁ, *ପ୍ରଗତିଶୀଳ ପତ୍ରିକା, ଅଧିକାର,* ୨୦୦୫, ଭାଗ-୧୨, ସଂଖ୍ୟା-୪ ।

# ଡକ୍ଟର ଆମ୍ବେଦକର ଓ ଦଳିତ ଚେତନା

ସରୋଜକୁମାର ସୁନା

ଭାରତୀୟ ସମ୍ବିଧାନର ପ୍ରଣେତା ଡକ୍ଟର ଭୀମରାଓ ଆମ୍ବେଦକର ଦଳିତମାନଙ୍କପାଇଁ ଏକ ନୂତନ ଚେତନାର କର୍ଣ୍ଣଧାର । ତାଙ୍କପାଇଁ ଦଳିତମାନଙ୍କ ଜୀବନରେ ଏକ ନୂଆ ରୂପରେଖ ସୃଷ୍ଟି ହେଲା । ଅନେକ ଦୁଃଖ କଷ୍ଟ ତଥା ପ୍ରତିବନ୍ଧକର ସମ୍ମୁଖୀନ ହୋଇ ସେ ଜୀବନ ରୂପକ ଦୁର୍ଗମ ପଥକୁ ଅତିକ୍ରମ କରିଥିଲେ । ତାଙ୍କ ଯୋଗୁଁ ଦଳିତମାନଙ୍କ ଜୀବନ ଆକାଶରେ ଏ ଦୀପ୍ତିମାନ ସୂର୍ଯ୍ୟର ଉଦୟ ହେଲା, ଯାହାର କିରଣ ଯୋଗୁଁ ଆଜି ବି ସମସ୍ତ ଦଳିତ ବର୍ଗ ଚେତନାର ପଥ ପାଇ ପାରୁଛନ୍ତି । ସେହି ଚିର ଅମ୍ଳାନ ପ୍ରତିଭାବାନ ବ୍ୟକ୍ତି ପ୍ରତ୍ୟେକ ସଚେତକ ଦଳିତ ହୃଦୟରେ ଚିରସ୍ମରଣୀୟ ଏବଂ ଚିର ନମସ୍ୟ ।

ଏହି ପ୍ରବାଦ ପୁରୁଷଙ୍କ ଜନ୍ମ ହୁଏ ୧୮୯୧ ମସିହା ଏପ୍ରିଲ ୧୪ ତାରିଖରେ, ତତ୍‌କାଳୀନ କେନ୍ଦ୍ରୀୟ ରାଜ୍ୟ (Central Province) ଅନ୍ତର୍ଗତ ମାହୁ ନାମକ ସ୍ଥାନରେ, ଯାହାକି ବର୍ତ୍ତମାନର ଇନ୍ଦୋର ନିକଟରେ ଅବସ୍ଥିତ । ତାଙ୍କ ବାପା ରାମ୍‌ଜୀ ସାକପାଲ୍ ସୈନ୍ୟବାହିନୀରେ କାମ କରୁଥିଲେ । ତେଣୁ ତାଙ୍କର ଜନ୍ମ ଏକ ସେନା ଛାଉଣୀରେ ହୋଇଥିଲା । ଜାତିରେ ଅସ୍ପୃଶ୍ୟ "ମାହାର" ହୋଇଥିବା କାରଣରୁ ସେ ସମୟର କଠୋର ମନୁବାଦୀ ଜାତି ବ୍ୟବସ୍ଥାର ଶିକାର ହୋଇ ସୁଦ୍ଧା ଡକ୍ଟର ଆମ୍ବେଦକର ଅସାଧାରଣ ଧୈର୍ଯ୍ୟ, ପରିଶ୍ରମ ଓ ଅଧ୍ୟବସାୟ ବଳରେ ପୂର୍ଣ୍ଣାଙ୍ଗ ଶିକ୍ଷା ପ୍ରାପ୍ତ କରିଥିଲେ । ସେ ଏକଧାରରେ ଜଣେ ବାଗ୍ମୀ, ଜ୍ଞାନୀ, ଦାର୍ଶନିକ, ଲେଖକ, ଅର୍ଥଶାସ୍ତ୍ରୀ, ସମାଜ ସଂସ୍କାରକ, ରାଜନୈତିକ ବିଜ୍ଞାନୀ, ଆଇନଜ୍ଞ ତଥା ଜଣେ ପ୍ରତିଭାବାନ୍ ରାଜନେତା ଥିଲେ ।

୧୯୫୬ ମସିହା ଡିସେମ୍ବର ୬ ତାରିଖରେ ୬୫ ବୟସରେ ଦିଲ୍ଲୀର ୨୬ ଅଲ୍ଲିପୁର ରୋଡ଼ ବାସଭବନରେ ତାଙ୍କର ପରିନିର୍ବାଣ ହୋଇଥିଲା । ତାଙ୍କର କର୍ମଭୂମି କୁହାଯାଉଥିବା ମହାରାଷ୍ଟ୍ରର ରାଜଧାନୀ, ମୁମ୍ବାଇ (ଦାଦର) ର ସମୁଦ୍ରକୂଳରେ ତାଙ୍କ ମର ଶରୀରକୁ ସମାଧିସ୍ଥ କରାଗଲା । ସେହି ପବିତ୍ର ସ୍ଥାନକୁ "ଚୈତ୍ୟ ଭୂମି" କୁହାଯାଏ ।

ଭାରତର ସାମାଜିକ, ରାଜନୈତିକ, ସାଂସ୍କୃତିକ ତଥା ବୌଦ୍ଧିକ କ୍ଷେତ୍ରରେ ଏକ ଅମ୍ଳାନ ପ୍ରତିଭା ରୂପେ ପ୍ରତୀୟମାନ ସେହି ମାନବ ପ୍ରେମୀଙ୍କ ମହାପ୍ରୟାଣ ଦିବସ ଆଜି ସାରା ବିଶ୍ୱରେ ପାଳନ କରାଯାଉଛି । ଆଜିର ଦିବସରେ ତାଙ୍କ କାର୍ଯ୍ୟକଳାପକୁ

ସ୍ମରଣ କରିବାକୁ ଗଲାବେଳେ ଦଳିତ, ବିଶେଷକରି ଆମ ସମାଜର ଅସ୍ପୃଶ୍ୟ ଶ୍ରେଣୀର ଉତ୍ଥାନ ସକାଶେ ତାଙ୍କର ଅହରହ ଉଦ୍ୟମ ସର୍ବାଗ୍ରେ ଦୃଷ୍ଟିକୁ ଆସେ ।

୧୯୨୭ର ମହଦ ସତ୍ୟାଗ୍ରହ, ୧୯୨୮ ର ଦଳିତ ରାଜନୈତିକ ସଂରକ୍ଷଣ ବ୍ୟବସ୍ଥାପାଇଁ ସାଇମନ କମିଶନ ପାଖରେ ଦାବୀପତ୍ର ପ୍ରଦାନ, ୧୯୩୦ ମାର୍ଚ୍ଚର ନାସିକ ମନ୍ଦିର ପ୍ରବେଶ ସତ୍ୟାଗ୍ରହ ତଥା ୧୯୩୦ ର ପ୍ରଥମ ଗୋଲ୍‌ଟେବୁଲ ବୈଠକ ଓ ୧୯୩୧ର ଦ୍ୱିତୀୟ ଗୋଲ୍‌ଟେବୁଲ ବୈଠକରେ ଅଂଶ ଗ୍ରହଣ କରି ଦଳିତ ସମସ୍ୟା ଉପସ୍ଥାପନ ପ୍ରଭୃତି ଘଟଣାବଳୀ ବାବାସାହେବ ଆମ୍ବେଦକରଙ୍କ ଜୀବନକାଳରେ ଦଳିତମାନଙ୍କ ମାନବିକ ଅଧିକାର ପ୍ରଶ୍ନକୁ କେନ୍ଦ୍ରକରି ତାଙ୍କଦ୍ୱାରା ଗ୍ରହଣ କରାଯାଇଥିବା ଗୋଟିଏଗୋଟିଏ ମାଇଲସ୍ତମ୍ଭ ।

## ଆମ୍ବେଦକର ଓ ବର୍ତ୍ତମାନର ଦଳିତ ଆନ୍ଦୋଳନ

ଆମ୍ବେଦକରଙ୍କ ସଂଗ୍ରାମମୟ ଜୀବନ ମଧ୍ୟରେ ଦେଇଥିବା ତିନୋଟି ଅମୂଲ୍ୟ ଉପଦେଶ "ଶିକ୍ଷା, ସଂଗ୍ରାମ ଓ ସଙ୍ଗଠନ" ଦଳିତ ଆନ୍ଦୋଳନର ଧ୍ୟେୟ ହେବା ଉଚିତ । ଏହି ଉପଦେଶ ପଛରେ ତାଙ୍କର ଉଦ୍ଦେଶ୍ୟ ଥିଲା, ଦଳିତମାନଙ୍କର ରାଜନୈତିକ ଶକ୍ତିର ଗଠନ, ସାମାଜିକ ପରିବର୍ତ୍ତନ ଏବଂ ଆର୍ଥିକ ମୁକ୍ତି । ଶିକ୍ଷା ଓ ଚେତନା ରାଜନୈତିକ ଜୀବନର ଏକ ଅପରିହାର୍ଯ୍ୟ ଅଙ୍ଗ । ଆତ୍ମନିର୍ଭରଶୀଳତା ଓ ଆତ୍ମସମ୍ମାନ ହେଉଛି ଆମ୍ବେଦକରବାଦର ଏକ ମୌଳିକ ତତ୍ତ୍ୱ । ଏଥିପାଇଁ ସେ ରାଜନୈତିକ ଶକ୍ତି ଉପରେ ବିଶେଷ ଗୁରୁତ୍ୱ ଦେଉଥିଲେ । ଏଠାରେ ବାବା ସାହେବଙ୍କ ଉକ୍ତ : "ରାଜନୈତିକ ଶକ୍ତି, ଗୋଟିଏ ରାଷ୍ଟ୍ରର ବନ୍ଦ ଥିବା ତାଲାଗୁଡ଼ିକୁ ଖୋଲିବାପାଇଁ ମୁଖ୍ୟ ଚାବିକାଠି" କୁ ସ୍ମରଣ କରାଯାଇପାରେ ।

ଦଳିତ ପ୍ରତିନିଧିମାନଙ୍କର ବ୍ୟକ୍ତିକୈନ୍ଦ୍ରିକ ଚିନ୍ତାଧାରା ଓ ସେମାନଙ୍କ ମଧ୍ୟରେ "ଏକତା" ର ଅଭାବରୁ ଦଳିତ ଆନ୍ଦୋଳନ ଶିଥିଳ ହୋଇଯାଇଛି । ଆମ୍ବେଦକରଙ୍କ ସମୟରୁ ତାଙ୍କ ବ୍ୟତୀତ ଦଳିତ ବର୍ଗର ଅନେକ ନେତୃବୃନ୍ଦ ମଧ୍ୟ ରାଜନୀତିରେ ଥିଲେ, କିନ୍ତୁ ସେମାନେ ଏତେ ଗୁରୁତ୍ୱର ସହିତ ତାଙ୍କର ଏକତା ହୋଇପାରିନଥିଲା, ଫଳତଃ ଆନ୍ଦୋଳନ ବ୍ୟାପକ ହୋଇପାରିନଥିଲା । ବର୍ତ୍ତମାନ ଦଳିତମାନଙ୍କ ମଧ୍ୟରେ ରାଜନୈତିକ ଚେତନା ବଢ଼ି ଚାଲିଛି । ତଥାପି ଏହି ଆନ୍ଦୋଳନ ଏକ ପୂର୍ଣ୍ଣାଙ୍ଗ ରୂପ ନେଇପାରୁନାହିଁ ।

୧୯୯୦ ମସିହାରେ ମଣ୍ଡଳ କମିଶନର ସୁପାରିଶକୁ କାର୍ଯ୍ୟକାରୀ କରିବା ନିଷ୍ପତ୍ତି ବିରୁଦ୍ଧରେ ଦେଶବ୍ୟାପୀ ଆଲୋଡ଼ନ ସୃଷ୍ଟି ହେଲା । ତାର ପରବର୍ତ୍ତୀ କାଳରେ ଜାତି

ବ୍ୟବସ୍ଥା ବିରୁଦ୍ଧରେ ପ୍ରଥମେ ସ୍ୱର ଉତ୍ତୋଳନ କରିଥିବା ଡକ୍ଟର ଆମ୍ବେଦକରଙ୍କୁ ଏକ ବ୍ୟାପକ ସାମାଜିକ ସ୍ୱୀକୃତି ମିଳିଛି । ଏହା ଏକ ବିଚିତ୍ର ବିଡ଼ମ୍ବନା ଯେ, ଏହି କାଳଖଣ୍ଡରେ ଦେଶରେ କ୍ଷମତାସୀନ ରାଜନେତାମାନେ ତାଙ୍କୁ "ଭାରତରତ୍ନ" ଉପାଧି ଦେବାପାଇଁ ନିଷ୍ପତ୍ତି ନେଲେ । ସବୁଠାରୁ ଉଲ୍ଲେଖଯୋଗ୍ୟ କଥା ହେଲା, ଭାରତର ରାଜନୈତିକ ତଥା ସାମାଜିକ ଜୀବନରେ ଆମ୍ବେଦକରଙ୍କ ବିଚାର ଓ କର୍ମର ଉପସ୍ଥିତି (ମରଣୋପରାନ୍ତ) ଗଭୀର ଭାବରେ ଅନୁଭୂତ ହୋଇଥିଲା । ଦଳିତ ଆନ୍ଦୋଳନର ବ୍ୟାପକତାକୁ ଦୃଷ୍ଟିରେ ରଖି "ଶୂଦ୍ର-ଦଳିତ ମିଳିତ ହୋଇ ଅନ୍ୟାନ୍ୟ ରାଜନୈତିକ ଶକ୍ତିକୁ ପରାସ୍ତ କରନ୍ତୁ" - ଦଳିତ ନେତା ମାନନୀୟ କାଂଶୀରାମଙ୍କ ଏହି ଆହ୍ୱାନକୁ ସ୍ମରଣ କରାଯାଇପାରେ । ଯାହାକି ସେ ଆରମ୍ଭରୁ କହି ଆସୁଥିଲେ । ଏହି ଚମତ୍କାର ଆହ୍ୱାନର ସଫଳତା ଉତ୍ତର ପ୍ରଦେଶ ରାଜନୀତିରେ ସ୍ପଷ୍ଟ ଦୃଶ୍ୟମାନ ହେଲା । ରାଜନୀତିରେ ଏହା ଏକ ନୂଆ ରଣନୀତି । ଦଳିତ-ଶୂଦ୍ର ଏବଂ ଉପଜାତି ମଧ୍ୟରେ ରାଜନୈତିକ ଧ୍ରୁବୀକରଣ ଯୋଗୁଁ ଏହା ସମ୍ଭବ ହେଲା । ଶୂଦ୍ର ଓ ଦଳିତର ମିଳନ ବା ଏକତା ରାଜନୀତି ମଧ୍ୟରେ ସୀମାବଦ୍ଧ ନକରି ଯଦି ସାମାଜିକ ସ୍ତରରେ ମଧ୍ୟ କାର୍ଯ୍ୟକାରୀ ହୁଅନ୍ତା, ତା' ହେଲେ ଗଣତନ୍ତ୍ରର ଫଳ ସମାଜର ନିମ୍ନ ବର୍ଗରେ ଥିବା ଲୋକ, ଗ୍ରାମାଞ୍ଚଳରେ ବାସକରି କଠୋର ସାମାଜିକ ବ୍ୟବସ୍ଥାର ଶିକାର ହେଉଥିବା ଲୋକଙ୍କ ପାଖକୁ ପହଞ୍ଚି ପାରନ୍ତା । କିନ୍ତୁ ଏସବୁପାଇଁ ପ୍ରତ୍ୟେକ ସ୍ତରରେ ଆଦର୍ଶ ଓ ସ୍ପଷ୍ଟବାଦୀ ନୀତିର ଆବଶ୍ୟକତା ରହିଛି । ଗତ ଦଶବର୍ଷର ଅନୁଭବରୁ ଏକଥା ସ୍ପଷ୍ଟ ହୋଇଯାଇଛି ଯେ, ଦଳିତ ଓ ଶୂଦ୍ର ଶ୍ରେଣୀ ମଧ୍ୟରେ ସାମାଜିକ ସ୍ତରରେ ଏକତା ପାଇଁ ଉଦ୍ୟମ କରାନଗଲେ ରାଜନୈତିକ ଏକତାର ଫଳ ଅତି ସ୍ୱଳ୍ପକାଳୀନ ଅଟେ ।

ଦଳିତ-ଶୂଦ୍ର ନେତାମାନଙ୍କର ସବୁଠାରୁ ବଡ଼ ଦୁର୍ବଳତା ହେଉଛି ସେମାନେ ଏକ କ୍ଷୁଦ୍ର ସ୍ୱାର୍ଥପର ସୀମିତ ହୋଇ ଉପରକୁ ଉଠିପାରୁ ନାହାନ୍ତି ଓ ତାଙ୍କ ମଧ୍ୟରେ ଏକତା ସୃଷ୍ଟି ହେଉନାହିଁ । ତେଣୁ ଅଧିକାଂଶ ଲୋକ ଗଣତନ୍ତ୍ରର ସ୍ୱାଦ ଜାଣିପାରୁନାହାନ୍ତି ଓ ଏକ ଆଦର୍ଶ ରାଷ୍ଟ୍ର ଗଠନ ହୋଇପାରୁ ନାହିଁ । ଏକ ଆଦର୍ଶ ରାଷ୍ଟ୍ର ଗଠନପାଇଁ ରାଷ୍ଟ୍ରର ସବୁ ସମସ୍ୟା ଯଥା : ଆର୍ଥିକ, ସାମାଜିକ, ରାଜନୈତିକ, ସାଂସ୍କୃତିକ, ଶିକ୍ଷା ସଂକ୍ରାନ୍ତୀୟ ଇତ୍ୟାଦି ବିଷୟରେ ଚିନ୍ତା କରି ସ୍ପଷ୍ଟ ନୀତି ଗ୍ରହଣ କରିବାକୁ ହେବ । ଦଳିତମାନଙ୍କର ସାମୂହିକ ଉନ୍ନତିପାଇଁ କେଉଁ ପ୍ରକାରର ଆର୍ଥିକ ନୀତିର ଆବଶ୍ୟକତା ଏବଂ ଏହାକୁ ରାଷ୍ଟ୍ରର ଆର୍ଥିକ ନୀତି ସହିତ କିପରି ସନ୍ତୁଳିତ ଭାବରେ ପରିଚାଳନା କଲେ ସାମୂହିକ ବିକାଶ ହେବ, ଏହା ଆଜିର ପ୍ରତ୍ୟେକ ସଚେତକ ଦଳିତ ପାଖରେ ଏକ ପ୍ରଶ୍ନବାଚୀ । ତେଣୁ ଏ ପ୍ରସଙ୍ଗରେ ଦଳିତ ବୁଦ୍ଧିଜୀବୀ, ଶିକ୍ଷାବିତ୍, ସମାଜସେବୀ, ଅର୍ଥ ବିଶାରଦ ତଥା

ଯୁବଗୋଷ୍ଠୀ ଚିନ୍ତା କରିବା ଆବଶ୍ୟକ । ନୋହିଲେ ସଂରକ୍ଷଣ ନୀତିଦ୍ୱାରା ଯେ ଦଳିତମାନଙ୍କର ଏକ ମୁଷ୍ଟିମେୟ ଶ୍ରେଣୀ ଲାଭାନ୍ୱିତ ହେଉଛନ୍ତି ଏବଂ ଗ୍ରାମାଞ୍ଚଳରେ ପଡ଼ିରହିଥିବା ଅସଂଖ୍ୟ ଅଶିକ୍ଷିତ ଓ ଦରିଦ୍ର ଜନସାଧାରଣ ଯେପରି ପଡ଼ି ରହିଛନ୍ତି, ତାଙ୍କର ବିକାଶ ତ ଦୂରର କଥା, ସେମାନେ ଏହି ସାମାଜିକ ଶୋଷଣ ଜାଲରୁ ମୁକ୍ତି ପାଇପାରିବେ ନାହିଁ ।

ବର୍ତ୍ତମାନ ପରିପ୍ରେକ୍ଷୀରେ ଦଳିତ-ଶୂଦ୍ରମାନଙ୍କର ସ୍ୱାର୍ଥରକ୍ଷାପାଇଁ ଯେଉଁ ପ୍ରକାରର ଆନ୍ଦୋଳନ ଆବଶ୍ୟକ, ସେହି ପ୍ରକାରର ଆନ୍ଦୋଳନର ପନ୍ଥା ଗ୍ରହଣ ନକଲେ ଜଗତୀକରଣ, ଉଦାରୀକରଣ ଓ ଘରୋଇକରଣର କୁପ୍ରଭାବରୁ ମୁକ୍ତି ମିଳିପାରିବ ନାହିଁ । ତେଣୁ ଆନ୍ଦୋଳନକୁ ଯଦି ଆଧୁନିକୀକରଣ କରାନଯାଏ, ତାହାହେଲେ ଦଳିତମାନଙ୍କର ଉକ୍ରଟ ବେକାରୀ ଓ ଦାରିଦ୍ର୍ୟ ପରି ଜାତୀୟ ସମସ୍ୟାଗୁଡ଼ିକର ସମାଧାନ ହୋଇପାରିବ ନାହିଁ ।

ଆଜିର ପରିପ୍ରେକ୍ଷୀରେ ଦଳିତ-ଶୂଦ୍ର ଶ୍ରେଣୀର ସ୍ୱାର୍ଥ କଥା ଚିନ୍ତା କଲାବେଳେ ବର୍ତ୍ତମାନ ଆମ ଦେଶରେ ଚାଲିଥିବା ଉଦାରୀକରଣ, ଘରୋଇକରଣ ଓ ଜଗତିକରଣ ପ୍ରକ୍ରିୟାର କୁପରିଣାମ ସଂକ୍ରାନ୍ତରେ ସଚେତନ ହେବାକୁ ପଡ଼ିବ । ଏହି ପ୍ରକ୍ରିୟା କାରଣରୁ ଉକ୍ରଟ ବେକାରୀ ତଥା ଆର୍ଥିକ ବିଷମତା ବଢ଼ିଚାଲିଛି । ସଂରକ୍ଷଣ ବ୍ୟବସ୍ଥା ଅପ୍ରାସଙ୍ଗିକ ହୋଇଚାଲିଛି । ଏହି ପ୍ରକ୍ରିୟା କାରଣରୁ ସବୁଠାରୁ ବେଶୀ କ୍ଷତିଗ୍ରସ୍ତ ହେଉଛନ୍ତି ଦଳିତ ଓ ଶୂଦ୍ର ଶ୍ରେଣୀ । ଏହି ପୃଷ୍ଠଭୂମିରେ ତଦ୍‌ଜନିତ ଆର୍ଥିକ ବୈଷମ୍ୟ ସାଙ୍ଗକୁ ସାମାଜିକ ସମସ୍ୟା ବିରୁଦ୍ଧରେ ଲଢ଼ିବାପାଇଁ ଆମ୍ବେଦକରଙ୍କ ବିଚାର ଓ ଆନ୍ଦୋଳନରୁ ପ୍ରେରଣା ନେଇ ପନ୍ଥା ସ୍ଥିର କରିବାକୁ ହେବ ।

ସୌଜନ୍ୟ :ସରୋଜ କୁମାର ସୁନା, *ପ୍ରଗତିଶୀଳ ପତ୍ରିକା, ଅଧିକାର*, ୨୦୦୫, ଭାଗ-୧୨, ସଂଖ୍ୟା-୪ ।

# ଯୁଗସ୍ରଷ୍ଟା ବାବାସାହେବ ଡଃ. ଆମ୍ବେଦକର

ଅଭିରାମ ମଲିକ

ଊନବିଂଶ ଶତାବ୍ଦୀର ଶେଷଭାଗରେ ଭାରତୀୟ ସମାଜ ପୁଣ୍ୟତାର ଶୀର୍ଷସ୍ତର ଅତିକ୍ରମ କରିଯାଇଥିଲା । ମନୁବାଦର କରାଳ ଛାୟା ସମାଜକୁ ବିକୃତ ତଥା ବିଭସ୍ତ କରିପକାଇଥିଲା । ସମାଜରେ କୁସଂସ୍କାର ଅନ୍ଧବିଶ୍ୱାସ କୁ-ରୀତି, ଛୁଆଁ-ଅଛୁଆଁ, ଉଚ୍ଚ-ନୀଚର ଭେଦଭାବ ସମାଜ ଜୀବନକୁ କଳଙ୍କିତ କରିଥିଲା, ଯଦ୍ୱାରା ଶୂଦ୍ର-ଅତିଶୂଦ୍ର ଜାତିଗୁଡ଼ିକ ପ୍ରତି ପଦକ୍ଷେପରେ ତଥାକଥିତ ଉଚ୍ଚଜାତିମାନଙ୍କଦ୍ୱାରା ନିର୍ଯ୍ୟାତିତ, ନିଷ୍ପେସିତ, ଶୋଷିତ, ଶାସିତ, ଲାଞ୍ଛିତ ଓ ଅପମାନିତ ହୋଇ ଅବାଞ୍ଛିତ ଜୀବନ ବିତାଇବାକୁ ବିବଶ ଥିଲେ । ଏପରିକି ସେମାନଙ୍କର ଜୀବନ ଧାରଣ ସ୍ୱେଚ୍ଛାଚାର ମଧ୍ୟରେ ମାନବିକ ମୂଲ୍ୟବୋଧ କବର ନେଇଥିଲା ।

ଏହିଭଳି ଏକ ଘଡିସନ୍ଧି ସମୟରେ ୧୮୯୧ ମସିହା ଏପ୍ରିଲ ମାସ ୧୪ ତାରିଖ ଦିନ ମଧ୍ୟପ୍ରଦେଶ ମାହୁ ନାମକ ସ୍ଥାନରେ ଏକ ଅସ୍ପୃଶ୍ୟ (ମାହାର) ପରିବାରରେ ଜନ୍ମଗ୍ରହଣ କରିଥିଲେ ଭୀମରାଓ ନାମକ ଏକ ଶିଶୁ ସନ୍ତାନ । ପରବର୍ତ୍ତୀ ସମୟରେ ଯାହାଙ୍କ ପ୍ରତିଭାରେ ସମଗ୍ର ଭାରତୀୟ ସମାଜ ଓ ରାଜନୀତିରେ ନବଜାଗରଣ ଅଭ୍ୟୁଦୟ ହୋଇଥିଲା ।

ଭୀମରାଓ ପ୍ରାଥମିକ ଶିକ୍ଷା ଆରମ୍ଭ ଦିନଠାରୁ ହିଁ ଛୁଆଁଅଛୁଆଁ, ଉଚ୍ଚ-ନୀଚ ଭେଦଭାବ ସମ୍ବନ୍ଧରେ ଅବଗତ ହୋଇଥିଲେ । ଏକ ପକ୍ଷରେ ଜଘନ୍ୟ ଦାରିଦ୍ର୍ୟ ଓ ଅନ୍ୟ ପକ୍ଷରେ ଅସ୍ପୃଶ୍ୟ ସମ୍ପ୍ରଦାୟରେ ଜନ୍ମ ହୋଇଥିବାରୁ ସେ ସଂସ୍କୃତ ଅଧ୍ୟୟନରୁ ବଞ୍ଚିତ ହୋଇଥିଲେ ଏବଂ ବାଧ୍ୟତାମୂଳକ ପାର୍ଶୀ ଅଧ୍ୟୟନ କରିବାକୁ ପଡ଼ିଥିଲା । ସେ ନିଜ ମନକୁ ପ୍ରଶ୍ନ କରୁଥିଲେ-'ଅନ୍ୟମାନଙ୍କ ଅପେକ୍ଷା ମୁଁ କେଉଁଥିରେ କମ୍' ? ଏଇ କୂଳ ଗୋତ୍ରରେ ମୋର ଜନ୍ମପାଇଁ ଦାୟୀକିଏ ? ଭଗବାନ କି ମୋର ପିତା ମାତା ? ବୁଢ଼ିଆଣୀଜାଲ ପରି ଏଇମିତି ଅନେକ ପ୍ରଶ୍ନ ତାଙ୍କ ମନରେ ଉଙ୍କି ମାରୁଥିଲା । ଶେଷରେ ସେ ଅବଗତ ହେଲେ ଯେ, ଏଥିପାଇଁ ଏ ସମାଜ ବ୍ୟବସ୍ଥା ଦାୟୀ ଏବଂ ସମାଜ ପରିଚାଳନା କରୁଥିବା କେତେକ ସ୍ୱାର୍ଥନ୍ୟସ୍ତ ଗୋଷ୍ଠୀ ହିଁ ଅଧିକତର ଦାୟୀ । ଏସବୁ ସତ୍ତ୍ୱେ ସେ ଥିଲେ ସହନଶୀଳ, ଅଧ୍ୟୟନଶୀଳ ଏବଂ ମନୋଯୋଗୀ ଛାତ୍ର; ଯାହାକି ତାଙ୍କୁ ବଡ଼ କରିବାର ଖୋରାକ ଯୋଗାଇ ଥିଲା । ସେ ସ୍ଥିତପ୍ରଜ୍ଞ ହେଲେ ଯେ, ଶିକ୍ଷା ହିଁ ଏ ସାମାଜିକ ବ୍ୟାଧିର ଦୂରୀକରଣ

ନିମନ୍ତେ ଏକମାତ୍ର ପତିକାରକ । ତେଣୁ ସେ ଗଭୀର ଅଧ୍ୟବସାୟ କରି ଶିକ୍ଷାଗତ ଯୋଗ୍ୟତାକୁ ହାସଲ କରିବାରେ ମନୋନିବେଶ କଲେ । ସେ ୧୯୦୭ ମସିହାରେ ବମ୍ବେର ଏଲଫିନ୍‌ଷ୍ଟୋନ୍ ହାଇସ୍କୁଲରୁ ମାଟ୍ରିକ ପାସ୍ କଲେ । ବହୁ ଅଭାବ ଅନଟନ ମଧ୍ୟରେ ସେ ଏଲ୍‌ଫିନ୍ ଷ୍ଟୋନ୍ କଲେଜରେ ନାମ ଲେଖାଇଲେ । ସେ ଜଣେ ମେଧାବୀ ଛାତ୍ର ଥିବାରୁ ବରୋଦା ମହାରାଜା ଶୟଜୀ ରାଓ ଗାଏକଓ୍ୱାର୍ଡ଼ ତାଙ୍କୁ ମାସିକ ୨୫ଟଙ୍କା ଏକ ବୃତ୍ତି ପ୍ରଦାନ କରିଥିଲେ । ଏହିପରିଭାବରେ ଉଦ୍ୟମୀ ଆମ୍ବେଦକର ୧୯୧୨ ମସିହାରେ ବି.ଏ.ଡିଗ୍ରୀ ହାସଲ କଲେ ଏବଂ ଏହାପରେ ଚୁକ୍ତି ମୁତାବକ ଆମ୍ବେଦକର ବରୋଦାର ସୈନ୍ୟ ବିଭାଗରେ ଲେଫ୍‌ଟନାଣ୍ଟ ପଦରେ ଚାକିରି କଲେ । ବରୋଦାର ସ୍ୱଳ୍ପକାଳୀନ ଚାକିରି ସଂପର୍କରେ ତାଙ୍କର ଖୁବ୍ ତିକ୍ତ ଅନୁଭୂତି ଥିଲା । ସେଠାରେ ସେ ଏତେବଡ଼ ପଦବୀରେ ରହି ମଧ୍ୟ ଅପମାନିତ ତଥା ଅସମ୍ମାନିତ ହୋଇଥିଲେ । ତେଣୁ ସେ ଚାକିରିପାଇଁ ଆଉ ବରୋଦାକୁ ନଯାଇ କିପରି ଅଧିକ ପଢ଼ିବେ ସେ ସଂପର୍କରେ ଚିନ୍ତା କରିବାକୁ ଲାଗିଲେ ।

ଏହି ସମୟରେ ବରୋଦା ମହାରାଜାଙ୍କଠାରୁ ବୃତ୍ତିପାଇଁ ୧୯୧୩ ମସିହା ଜୁଲାଇ ମାସରେ ଆମ୍ବେଦକର ଉଚ୍ଚ ଶିକ୍ଷାପାଇଁ ନ୍ୟୁୟର୍କରେ ପହଞ୍ଚିଥିଲେ । ସେଠାକାର ପରିବେଶ ଆମ୍ବେଦକରଙ୍କୁ ସ୍ୱାଧୀନ ଚେତା ହେବାକୁ ସଂପୂର୍ଣ୍ଣ ରୂପେ ସୁଯୋଗ ପ୍ରଦାନ କରିଥିଲା । ସେ ଅନୁଭବ କଲେ ଯେ ଛୁଆଁ-ଅଛୁଆଁ ରୂପକ ଭେଦଭାବପୂର୍ଣ୍ଣ ସାମାଜିକ ବନ୍ଦୀ ଦେଶରୁ ଆସି ମୁକ୍ତ ବିହଙ୍ଗମାନଙ୍କର ସ୍ୱାଧୀନ ଦେଶରେ ପହଞ୍ଚିଛନ୍ତି । ସେ ସେଠାରେ ଅକ୍ଳାନ୍ତ ପରିଶ୍ରମ କରି ଦୁଇବର୍ଷର କଠିନ ଅଧ୍ୟବସାୟ ପରେ ୧୯୧୫ ମସିହା ସେପ୍ଟେମ୍ବର ମାସରେ କଲମ୍ବିଆ ବିଶ୍ୱବିଦ୍ୟାଳୟରୁ ଅର୍ଥଶାସ୍ତ୍ରରେ ଏମ୍.ଏ.ଡିଗ୍ରୀ ପାଇଲେ ଏବଂ ଭାରତର ଜାତୀୟ ଆୟବ୍ୟୟ ସଂପର୍କରେ ଏକ ସନ୍ଦର୍ଭ ଲେଖି ୧୯୧୬ ମସିହାରେ ପି.ଏଚ୍.ଡ଼ି. ଡିଗ୍ରୀ ହାସଲ କରିବାର ଗୌରବ ଅର୍ଜନ କଲେ ।

୧୯୧୭ ମସିହା ଅଗଷ୍ଟ ମାସରେ ଆମେରିକାରୁ ଭାରତ ଫେରି ଆସିଲେ ଏବଂ ପୂର୍ବଚୁକ୍ତି ଅନୁଯାୟୀ ଆମେରିକାରୁ ଫେରି ଆମ୍ବେଦକର ବରୋଦା ରାଜ୍ୟର ପ୍ରତିରକ୍ଷା ସଚିବ (Defence Secretary) ଭାବେ ନିଯୁକ୍ତି ହୋଇଥିଲେ । କହିବା ବାହୁଲ୍ୟ ଯେ, କେବଳ ବରୋଦା ମହାରାଜାଙ୍କ ବ୍ୟତୀତ ଅନ୍ୟ କେହି ହେଲେ ତାଙ୍କୁ ଉକ୍ତ ସଫଳତାରେ ଅଭିନନ୍ଦନ ଜଣାଇଲେ ନାହିଁ । ବରଂ ଈର୍ଷା, ଘୃଣା ଓ ଅପମାନରେ ସେତେବେଳର ସମାଜ ତାଙ୍କୁ ନାକ ଟେକୁଥିଲା, ଏପରିକି ତାଙ୍କ ଅଫିସ୍‌ରେ ଥିବା ଉଚ୍ଚଜାତିର ପିଅନ ମଧ୍ୟ ତାଙ୍କ ପ୍ରତି ଦୁର୍ବ୍ୟବହାର ପ୍ରଦର୍ଶନ କରିବାକୁ କୁଣ୍ଠାବୋଧ କରୁନଥିଲା । ସେ ଏକଥା ବରୋଦା ମହାରାଜାଙ୍କୁ ଲିଖିତାକାରରେ ଜଣାଇଲେ ।

ମହାରାଜାଙ୍କର ନିର୍ଦ୍ଦେଶକ୍ରମେ ତାଙ୍କର ଦେୱାନ (Dewan) ଯଥାର୍ଥ ଘଟଣା ଯାଞ୍ଚ କଲେ । ଅଥଚ ଅତ୍ୟନ୍ତ ପରିତାପର ବିଷୟ ଏଇ ଯେ, ସେ ମଧ୍ୟ ଏ କାର୍ଯ୍ୟାବଳୀର ସମାଧାନପାଇଁ ନିଜକୁ ଅସମର୍ଥ ବୋଲି ପ୍ରକାଶ କଲେ ।

ପରିଶେଷରେ ଆମ୍ବେଦକର ଅନୁଭବ କଲେ ଯେ, ପିଅନର ତାଙ୍କ ପ୍ରତି ଅମାନୁଷିକ ବ୍ୟବହାରପାଇଁ ସେ ନିଜେ ଦାୟୀ ନୁହେଁ ବରଂ ଏଥିପାଇଁ ଦାୟୀ ଏ ଦେଶର ପ୍ରଚଳିତ କୁସଂସ୍କାରାଚ୍ଛନ୍ନ ସାମାଜିକ ପ୍ରଥା । ଏଇ କୁସଂସ୍କାର ବିରୋଧରେ ସଂଗ୍ରାମ କରିବାପାଇଁ ଚାକିରିରୁ ଇସ୍ତଫା ଦେଇ ୧୯୧୭ ମସିହାରେ ସେ ବମ୍ବେକୁ ଲେଉଟି ଆସିଲେ । ନଭେମ୍ବର ୧୯୧୮ରୁ ମାର୍ଚ୍ଚ ୧୯୨୦ ମସିହା ଯାଏ ସେ ବମ୍ବେସ୍ଥିତ ସିଡାନ୍‌ହମ୍ କଲେଜ (Sydenham College) ରେ ବାଣିଜ୍ୟ ଅର୍ଥଶାସ୍ତ୍ର ବିଭାଗରେ ଅଧ୍ୟାପକ ଦାୟିତ୍ୱ ତୁଲାଇଥିଲେ । ସେଠାରେ ତାଙ୍କର ଅଧ୍ୟାପନା ଛାତ୍ରମାନଙ୍କୁ ବିମୁଗ୍ଧ ଓ ଆକର୍ଷିତ କରୁଥିଲା । କିନ୍ତୁ ପବିତ୍ର ଗୁରୁ ପଦବାଚ୍ୟରେ ଏଇ ଅବସ୍ଥାରେ ମଧ୍ୟ ସେ ଛୁଆଁ-ଅଛୁଆଁ ଭେଦଭାବରୁ ବଞ୍ଚିତ ହୋଇନଥିଲେ ।

ସେ ଚିନ୍ତା କରୁବାକୁ ଲାଗିଲେ ଏତେ ଉଚ୍ଚ ଶିକ୍ଷିତ ହୋଇ ଯଦି ତାଙ୍କର ଏଭଳି ଅବସ୍ଥା ହୁଏ ତେବେ ସମାଜରେ ସାଧାରଣ ଜନତାଙ୍କ ପରିସ୍ଥିତି କିପରି ହୋଇଥିବ ? ଶେଷରେ ସେ ଏହି ସାଧାରଣ ଜନତାଙ୍କୁ ନ୍ୟାୟ ଦେବାକୁ ବାରିଷ୍ଟରୀ ପଢ଼ିବାକୁ ମନସ୍ଥ କଲେ ଏବଂ କୋହ୍ଲାପୁର ମହାରାଜା ଛତ୍ରପତି ଶାହୁଜୀଙ୍କ ସାହାଯ୍ୟ ପାଇ ୧୯୨୦ ମସିହାରେ ଲଣ୍ଡନ ଅଭିମୁଖେ ଯାତ୍ରା କଲେ । ସେଠାରେ ସେ ଆଇନ, ଅର୍ଥନୀତି, ରାଜନୀତି ଅଧ୍ୟୟନ କରି ଡି.ଏସ୍.ସି., ବାର-ଏଟ୍-ଲ ଡିଗ୍ରୀ ହାସଲ କରି ୧୯୨୩ରେ ସ୍ୱଦେଶ ଫେରି ଆସିଲେ । ତତ୍‌କାଳୀନ ଭାରତର ଆମ୍ବେଦକରଙ୍କ ଭଳି ଉଚ୍ଚ ଶିକ୍ଷାବିତ୍ ପ୍ରାୟ ନଥିଲେ । ଏତଦ୍‌ବ୍ୟତୀତ ଇଂରାଜୀ, ଉର୍ଦ୍ଦୁ, ମରାଠୀ, ହିନ୍ଦୀ, ସଂସ୍କୃତ, ଲାଟିନ୍ ଓ ପାର୍ଶୀ ଭାଷାରେ ମଧ୍ୟ ତାଙ୍କର ଅଗାଧ ପ୍ରବେଶ ଥିଲା । ଏଭଳି ଏକ ଉଚ୍ଚଶିକ୍ଷିତ ବ୍ୟକ୍ତି ଭାରତୀୟ ସମାଜରେ ତାଙ୍କର ପ୍ରକୃତ ସମ୍ମାନ ନ ପାଇ ଚିର ଲାଞ୍ଛିତ ଅସ୍ପୃଶ୍ୟ ଭାବରେ ବିବେଚିତ ହେଉଥିଲେ ।

ଘୃଣାଜନିତ ଅପମାନ ଏବଂ ବୈପ୍ଳବିକ ଅଗ୍ନିଶିଖା ତାଙ୍କ ଅନ୍ତରରେ ସବୁବେଳେ ପ୍ରଜ୍ୱଳିତ ହେଉଥିଲା । ସାମାଜିକ ବୈଷମ୍ୟ ଓ ଅନ୍ୟାୟ ବିରୁଦ୍ଧରେ ଲଢ଼ିବାପାଇଁ ବିଭିନ୍ନ ପ୍ରକାର ପଥ ଅବଲମ୍ବନ ପୂର୍ବକ ସେ ପ୍ରତିଜ୍ଞାବଦ୍ଧ ହେଲେ ।

ସମାଜରେ ପ୍ରଚଳିତ କୁ-ପ୍ରଥା ଓ ଭେଦଭାବ ବିରୋଧରେ ଆନ୍ଦୋଳନ କରିବାକୁ ଆଇନ୍ ବ୍ୟବସାୟ ଆରମ୍ଭ କରିଥିଲେ । ୧୯୨୪ ମସିହା ମାର୍ଚ୍ଚ ୯ ତାରିଖରେ

'ବହିଷ୍କୃତ ହିତକାରିଣୀ ସଭା' ନାମରେ ଏକ ସଂଗଠନ ଗଠନ କଲେ, ଯାହା ଦଳିତମାନଙ୍କ ମଧ୍ୟରେ ଜାଗରଣ ସୃଷ୍ଟି, ଦାରିଦ୍ର୍ୟ ଦୂରୀକରଣ, ନିଶା ନିବାରଣ ଆଦି କାର୍ଯ୍ୟକ୍ରମମାନ ସଂଗଠନ ହାତକୁ ନେଲା । ସେହି ସମୟରେ ସର୍ବସାଧାରଣ କୂଅ ପୋଖରୀରୁ ଅସ୍ପୃଶ୍ୟମାନଙ୍କୁ ଅଧିକାର ନଥିଲା । ତା ସହିତ ମନ୍ଦିର ପ୍ରବେଶ ନିଷେଧ ଥିଲା । ସାମାଜିକ ନିୟମକୁ ପ୍ରତିହତ କରିବାକୁ ଏହା ବିରୁଦ୍ଧରେ ସେ ସତ୍ୟାଗ୍ରହ ଆରମ୍ଭ କଲେ । ଡଃ. ଆମ୍ବେଦକରଙ୍କ ଏହି ସାମାଜିକ ସଂସ୍କାର କାର୍ଯ୍ୟକ୍ରମକୁ କଟୁ ସମାଲୋଚନା କରି ତତ୍‌କାଳୀନ ଉଚ୍ଚଜାତିମାନଙ୍କଦ୍ୱାରା ପରିଚାଳିତ ପତ୍ରପତ୍ରିକାଗୁଡ଼ିକ ତୀବ୍ର ବିରୋଧକରି ବିଭିନ୍ନ ଲେଖାମାନ ପ୍ରକାଶ କଲେ । ତେଣୁ ଦଳିତମାନଙ୍କ ଅଧିକାର ହାସଲପାଇଁ ଉଦ୍ଦିଷ୍ଟ ଆନ୍ଦୋଳନକୁ ସାଧାରଣ ଜନତାଙ୍କ ନିକଟରେ ପହଞ୍ଚାଇବାକୁ ଦଳିତ ସଂଗଠନମାନଙ୍କଦ୍ୱାରା ବିଭିନ୍ନ ପତ୍ରପତ୍ରିକା ପ୍ରକାଶିତ ହେବାର ଆବଶ୍ୟକତାକୁ ଡଃ ଆମ୍ବେଦକର ଅନୁଭବ କରିଥିଲେ । ତେଣୁ ଦଳିତ ଗୋଷ୍ଠୀକୁ ସାମାଜିକ ଚେତନାରେ ଉଦ୍‌ବୁଦ୍ଧ କରିବାପାଇଁ ସେ ୧୯୨୦ ମସିହାରେ 'ମୂକନାୟକ' ଅର୍ଥାତ୍ ମୂକମାନଙ୍କର ନେତା ହୋଇ ଏକ ମରାଠୀ ପାକ୍ଷିକ ପତ୍ରିକା ପ୍ରକାଶ କଲେ; ଯେଉଁ ପତ୍ରିକାରେ ଦଳିତମାନଙ୍କର ସାମାଜିକ, ଅର୍ଥନୈତିକ, ସାଂସ୍କୃତିକ ଓ ଶିକ୍ଷାଗତ ଯୋଗ୍ୟତାର ଅଧିକାରକୁ ସାବ୍ୟସ୍ତ କଲେ । ପୁନଶ୍ଚ ସମାଜର ନିଷ୍ପେସିତ ଶ୍ରେଣୀର ଲୋକଙ୍କ ଭାଷାରେ ବିରୋଧ କରିବା ସହିତ ଦଳିତମାନେ ସଂଘବଦ୍ଧ ହୋଇ ସେମାନଙ୍କ ଅଧିକାର ହାସଲ କରିବାକୁ ଆହ୍ୱାନ ଦେଲେ । ୧୯୧୯ ମସିହାରେ ପ୍ରଥମ ଭାରତ ଶାସନ ଆଇନ୍‌ର ସଂଶୋଧନପାଇଁ ୧୯୨୮ରେ ସାଇମନ୍ କମିଶନ ଭାରତ ଆସିଲେ । କଂଗ୍ରେସ ନେତୃତ୍ୱରେ ସର୍ବଦଳୀୟ ବୈଠକ ବସି ଏକ ସମ୍ବିଧାନ ଚିଠା ପ୍ରସ୍ତୁତ କଲେ । ସେଥିରେ ମୁସଲମାନଙ୍କ ଦାବୀ ବିଷୟରେ ଏବଂ ଦଳିତମାନଙ୍କ ସଂପର୍କରେ କୌଣସି କଥା ଉଲ୍ଲେଖ ରହିଲା ନାହିଁ ।

ଫଳରେ ଡଃ. ଆମ୍ବେଦକର ଏହାର ପ୍ରତିବାଦରେ ଘୋଷଣା କଲେ ଯେ, ଯଦି ଉଚ୍ଚବର୍ଣ୍ଣ ସମାଜ ଓ କଂଗ୍ରେସ ଦଳିତମାନଙ୍କ ଅବସ୍ଥାର ଉନ୍ନତିପାଇଁ କାର୍ଯ୍ୟ ନ କରନ୍ତି ତେବେ ସେ ଦଳିତମାନଙ୍କୁ ନେଇ ସ୍ୱତନ୍ତ୍ର ବାସସ୍ଥାନ ଦାବୀ କରିବେ । 'ବହିଷ୍କୃତ ହିତକାରିଣୀ' ସଭାପକ୍ଷରୁ ସାଇମନ୍ କମିଶନ୍‌ଙ୍କୁ ସେ ଏକ ସ୍ମାରକପତ୍ର ପ୍ରଦାନ କରି ଚାକିରି କ୍ଷେତ୍ରରେ, ନିର୍ବାଚନ ମଣ୍ଡଳୀରେ ଏବଂ ମନ୍ତ୍ରୀମଣ୍ଡଳରେ ଦଳିତମାନଙ୍କପାଇଁ ସ୍ଥାନ ସଂରକ୍ଷଣ ଦାବୀ କଲେ ।

ଭାରତ ସଂପର୍କରେ ସର୍ବଶେଷ ଆଲୋଚନାପାଇଁ ଲଣ୍ଡନଠାରେ ୧୯୩୦ ମସିହା ନଭେମ୍ବର ୧୨ ତାରିଖରେ ପ୍ରଥମ ଗୋଲ୍‌ଟେବୁଲ ବୈଠକ ଆହ୍ୱାନ କରାଗଲା ।

ଏଥିରେ କଂଗ୍ରେସର କୌଣସି ପ୍ରତିନିଧି ଯୋଗ ଦେଇନଥିଲେ ମଧ୍ୟ ଦଳିତମାନଙ୍କ ପକ୍ଷରୁ ଡଃ. ଆମ୍ବେଦକର ଯୋଗଦେଇ ଭାରତର ଦଳିତମାନଙ୍କ ଅବସ୍ଥା ସେମାନେ ଉଚ୍ଚ ଜାତିଗୁଡ଼ିକଦ୍ୱାରା ନିର୍ଯ୍ୟାତୀତ ହୋଇ କିଭଳି ପଶୁତୁଲ୍ୟ ଜୀବନଯାପନ କରୁଛନ୍ତି, ସେ ସମ୍ପର୍କରେ ନିଜର ସାରଗର୍ଭକ ଭାଷଣଦ୍ୱାରା ବ୍ରିଟିଶ୍ ସରକାରଙ୍କୁ ଅବଗତ କରାଇଲେ । ତାଙ୍କର ଏହି ତଥ୍ୟଭିତ୍ତିକ ତର୍ଜମାଗୁଡ଼ିକ ଇଂଲଣ୍ଡର 'ଦି ଟାଇମ୍‌ସ' ପତ୍ରିକାରେ ପ୍ରକାଶିତ ହୋଇଥିଲା । ଦଳିତଙ୍କ ଏଭଳି ଅବସ୍ଥାପାଇଁ ଏଠାକାର ଉଚ୍ଚବର୍ଗ ସହିତ ଇଂରେଜମାନଙ୍କୁ ମଧ୍ୟ ସେ ଦୋଷୀରୂପେ ସାବ୍ୟସ୍ତ କଲେ ।

୧୯୩୧ ମସିହା ସେପ୍ଟେମ୍ବର ୭ ତାରିଖରେ ଦ୍ୱିତୀୟ ଗୋଲଟେବୁଲ୍ ବୈଠକ ଆରମ୍ଭ ହେଲା । ଏହି ବୈଠକରେ ଗାନ୍ଧିଜୀଙ୍କୁ ନିମନ୍ତ୍ରଣ ନଥିଲା । କିନ୍ତୁ ସେ ସେଠାରେ ଉପସ୍ଥିତ ହୋଇ ହିନ୍ଦୁ, ମୁସଲମାନ ଓ ଶିଖ୍‌ମାନଙ୍କ କଥା ପ୍ରସ୍ଥାପନା କଲେ ମଧ୍ୟ ଦଳିତମାନଙ୍କ ସଂପର୍କରେ କୌଣସି ଆଲୋଚନା କଲେ ନାହିଁ । ଫଳରେ ସେଠାରେ ଗାନ୍ଧୀ ଏବଂ ଆମ୍ବେଦକର ମଧ୍ୟରେ ବିଭେଦ ଦେଖାଦେଲା । ଆମ୍ବେଦକର ନିଜର ଓଜସ୍ୱିନୀ ତର୍କ ମାଧ୍ୟମରେ ବ୍ରିଟିଶ ଯଥାର୍ଥ ଦାବୀଗୁଡ଼ିକ ଖଣ୍ଡନ କରିବାକୁ କୌଣସି ଉପାୟ ନ ପାଇ ଶେଷରେ ଇଂରେଜ ସରକାର ତାହାକୁ ମାନିନେଲେ । ଏହି ବୈଠକର ଫଳାଫଳସ୍ୱରୂପ ୧୯୩୨ ମସିହାରେ କମ୍ୟୁନାଲ୍ ଆୱାର୍ଡ଼ ମାଧ୍ୟମରେ ଦଳିତମାନଙ୍କ ଅଧିକାର ଘୋଷଣା କଲେ । ଏହାକୁ ବିରୋଧ କରି ଗାନ୍ଧିଜୀ ଆମରଣ ଅମଶନ ଆରମ୍ଭ କଲେ । ଯଦ୍ୱାରା ପରିସ୍ଥିତି ଚାପରେ ଡଃ. ଆମ୍ବେଦକର ଗାନ୍ଧୀଙ୍କ ସହିତ ବହୁ ଆଲୋଚନା ପର୍ଯ୍ୟାଲୋଚନା ପରେ ଏକ ଚୁକ୍ତି ସ୍ୱାକ୍ଷରିତ ହେଲା ଯାହା 'ପୁନାଚୁକ୍ତି' ନାମରେ ପରିଚିତ ।

୧୯୩୫ ଭାରତ ଶାସନ ଆଇନ୍ ଅନୁଯାୟୀ ୧୯୩୭ ମସିହାରେ ପ୍ରଦେଶମାନଙ୍କୁ ସ୍ୱାୟତ୍ତ ଶାସନର ସୁବିଧା ପ୍ରଦାନ କରାଗଲା । ୧୯୪୧ ମସିହାରେ ଇଂରେଜ ସରକାର ସେନାବାହିନୀ କମିଟି ଗଠନ କଲେ । ଏହି କମିଟିରେ ଡଃ. ଆମ୍ବେଦକରଙ୍କୁ ଜଣେ ସଦସ୍ୟ ରୂପେ ମନୋନୀତ କରାଗଲା । ୧୯୪୨ ମସିହା ଜୁନ୍ ମାସରେ ସେ ଭାଇସ୍‌ରୟଙ୍କ କାଉନ୍‌ସିଲ୍‌ରେ ଶ୍ରମ ମନ୍ତ୍ରୀ ଭାବେ ନିଯୁକ୍ତି ପାଇଲେ । ଏହି ପଦବୀରେ ସେ ଚାରି ବର୍ଷ ରହି ସମଗ୍ର ଭାରତର ଦଳିତ ଓ ଶ୍ରମିକମାନଙ୍କ ଉନ୍ନତିପାଇଁ ଯଥେଷ୍ଟ କାର୍ଯ୍ୟକଲେ । କ୍ୟାବିନେଟ ମିଶନ ଯୋଜନା ଅନୁଯାୟୀ ପ୍ରତ୍ୟେକ ରାଜ୍ୟ ବିଧାନସଭାରୁ ସଭ୍ୟମାନେ ଶାସନ ବିଧାୟକ (ସମ୍ବିଧାନ) ସଭାକୁ ନିର୍ବାଚିତ ହେଲେ । ଡଃ. ଆମ୍ବେଦକର ମଧ୍ୟ ବଙ୍ଗଳାରୁ ଏହି ସଭାକୁ ନିର୍ବାଚିତ ହେଲେ । ସମ୍ବିଧାନ ନିର୍ମାଣର ସମସ୍ତ ଦାୟିତ୍ୱ ଡଃ. ଆମ୍ବେଦକରଙ୍କ ଉପରେ ଥିଲା ।

ବାବାସାହେବ ଡଃ. ଆମ୍ବେଦକର ୩୯୫ ଧାରା ବିଶିଷ୍ଟ ଭାରତ ସମ୍ବିଧାନ ନିର୍ମାଣ ମାତ୍ର ୧୧୪ ଦିନରେ କରିଥିଲେ । କିନ୍ତୁ ସମ୍ବିଧାନ ସଂଶୋଧନପାଇଁ ୨୪୭୩ ଟି ପ୍ରଶ୍ନର ଉତ୍ତର ଦେବାକୁ ପଡ଼ିଥିଲା । ଏହିଭଳି ୨ବର୍ଷ ୧୧ମାସ ୧୭ଦିନରେ ସମ୍ବିଧାନ ଶେଷ ହୋଇଥିଲା । ୧୯୪୯ ମସିହା ନଭେମ୍ବର ୨୬ ତାରିଖରେ ୩୯୫ ଟି ଅନୁଚ୍ଛେଦ ଓ ୮ଟି ଅନୁସୂଚୀ ରୂପେ ଏହା ଗୃହୀତ ହେଲା ଏବଂ ୧୯୫୦ ମସିହା ଜାନୁୟାରୀ ୨୬ ତାରିଖରେ ଏହା କାର୍ଯ୍ୟକାରୀ ହେଲା ।

ମହିଳାମାନଙ୍କୁ ପୁରୁଷମାନଙ୍କ ଭଳି ସମାନ ଅଧିକାର ଦେବାପାଇଁ ସେ ହିନ୍ଦୁକୋଡ୍ ବିଲ୍ ପ୍ରସ୍ତୁତ କରି ୧୯୫୧ ମସିହା ସେପ୍ଟେମ୍ବର ୧୭ ତାରିଖରେ ପାର୍ଲାମେଣ୍ଟରେ ଉପସ୍ଥାପନ କଲେ । ମାତ୍ର ଦେଶର ସମସ୍ତ ବ୍ରାହ୍ମଣବାଦୀ ନେତୃତ୍ୱ ସମେତ କଂଗ୍ରେସ ସାଂସଦମାନଙ୍କ ବିରୋଧ କାରଣରୁ ତାହା ଗୃହୀତ ହୋଇ ପାରିଲା ନାହିଁ । ସମ୍ବିଧାନରେ ଓବିସିମାନଙ୍କ ଚିହ୍ନଟକରଣ ସମେତ ସଂରକ୍ଷଣ ସଂପର୍କରେ କମିଟି ଗଠନପାଇଁ ଧାରା ୩୪୦ରେ ଉଲ୍ଲେଖ କରିଥିଲେ । ନେହେରୁ କମିଟି ଗଠନରେ ବିଳମ୍ବ କରିବାରୁ ବାବାସାହେବ ମହିଳା ଓ ଓବିସିମାନଙ୍କୁ ଅଧିକାର ଦେବାକୁ ୧୯୫୧ ମସିହା ସେପ୍ଟେମ୍ବର ୨୭ ତାରିଖରେ କେନ୍ଦ୍ରମନ୍ତ୍ରୀମଣ୍ଡଳରୁ ଇସ୍ତଫା ଦେଇଥିଲେ ।

ଏହାପରେ ସେ ଏହି ଦେଶର ମୂଳନିବାସୀ ତଥା ଅନୁସୂଚିତ ଜାତି, ଜନଜାତି, ପଛୁଆବର୍ଗ ଓ ଧର୍ମପରିବର୍ତ୍ତିତ ସଂଖ୍ୟାଲଘୁମାନଙ୍କୁ ଏକତ୍ରିତ କରି ବିଦେଶୀ ଆର୍ଯ୍ୟ ବ୍ରାହ୍ମଣବାଦୀଙ୍କ ପଞ୍ଝା ମଧ୍ୟରୁ ମୁକୁଳାଇ ସ୍ୱାଧୀନ କରିବାକୁ ନିଜର ଉଦ୍ୟମକୁ ଜୋରଦାର କଲେ । ଶେଷରେ ବାବାସାହେବ ସମତା, ମମତା, ପ୍ରଜ୍ଞା ଓ ଭାତୃତ୍ୱର ପ୍ରତୀକ ବୌଦ୍ଧ ଧର୍ମ ଗ୍ରହଣ କରିବାକୁ ମନସ୍ଥ କରି ୧୯୫୬ ମସିହା ଅକ୍ଟୋବର ୧୪ ତାରିଖରେ ନିଜର ୫ ଲକ୍ଷରୁ ଉର୍ଦ୍ଧ୍ୱ ଅନୁଗାମୀମାନଙ୍କ ସହ ବୌଦ୍ଧ ଧର୍ମ ଗ୍ରହଣ କଲେ । ଦୀକ୍ଷା ଗ୍ରହଣ ପରେ ପୁନଃଜନ୍ମ ହେଲା ବୋଲି ସେ କହିଥିଲେ ଏବଂ ବାକିତକ ଜୀବନ ବୌଦ୍ଧ ଧର୍ମ ପ୍ରଚାରରେ ବିତାଇ ଭାରତକୁ ବୌଦ୍ଧମୟ କରିବାକୁ ସିଦ୍ଧାନ୍ତ ଗ୍ରହଣ କଲେ । ୧୯୫୬ ମସିହା ନଭେମ୍ବର ୧୫ ତାରିଖରେ ନେପାଳରେ ଅନୁଷ୍ଠିତ ବୌଦ୍ଧ ସମ୍ମିଳନୀରେ ଯୋଗଦେଲେ । ୧୯୫୬ ମସିହା ଡିସେମ୍ବର ୬ ତାରିଖରେ ଏହି ମହାନ କ୍ରାନ୍ତିକାରୀ ସଂଗ୍ରାମୀ, ମୂଳନିବାସୀମାନଙ୍କର ମୁକ୍ତିମସିହା, ଭାରତର ଶ୍ରେଷ୍ଠ ଜ୍ଞାନୀ, ନାରୀ ସମାଜର ମୁକ୍ତିଦାତା ଶେଷ ନିଶ୍ୱାସ ତ୍ୟାଗ କଲେ । ତାଙ୍କର ପରିନିର୍ବାଣ ପରେ ଦେଶ ବିଦେଶରୁ ଶୋକ ବାର୍ତ୍ତାମାନ ଆସିଲା । କିଏ ତାଙ୍କୁ ଆଧୁନିକ ମନୁ କହିଲେ ତ କିଏ ବିଂଶ ଶତାବ୍ଦୀର ସ୍ମୃତିକାର କହିଲେ । କିଏ ଭାରତର

ଜନସନ୍ କହିଲେ ତ କିଏ ତାଙ୍କୁ ଭାରତର ବୁକର ୱାଶିଂଟନ କହିଲେ । ଅନ୍ୟ କିଏ ତାଙ୍କୁ ଭାରତର ଆବ୍ରାହମ୍ ଲିଙ୍କନ୍ କହିଲେ ତ କିଏ ଭାରତର ମାର୍ଟିନ ଲୁଥର କିଙ୍ଗ୍ କହିଲେ । ପୁଣି କିଏ ତାଙ୍କୁ ଭାରତର ପଲ ରବର୍ଟ ସନ୍ କହିଲେ । ଅନ୍ୟ କିଏ ତାଙ୍କୁ ଥୋମସ୍ ଜେଫରସନ୍ କହିଲେ । ୧୯୯୦ରେ ଭାରତ ସରକାର ତାଙ୍କୁ ଭାରତରତ୍ନ କହିଲେ । ବୌଦ୍ଧ ଅନୁଗାମୀମାନେ ତାଙ୍କୁ ବୌଧିସତ୍ତ୍ୱ କହିଲେ । ପୁଣି ୨୦୦୪ ରେ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ ତାଙ୍କୁ ଦି ଫାଉଣ୍ଡିଙ୍ଗ୍ ଫାଦର ଅଫ୍ ମଡର୍ଣ୍ଣ ଇଣ୍ଡିଆ କହିଲେ ।

ବାବାସାହେବ ରାଷ୍ଟ୍ରବ୍ୟାପୀ କ୍ରାନ୍ତି ଫଳରେ ସେ ଏହି ସମାଜକୁ ଉପଯୁକ୍ତ ଅଧିକାର ଦେବାକୁ ସକ୍ଷମ ହେଲେ । ଯେଉଁ ଗାନ୍ଧୀ, ପଟେଲ୍ ଓ କଂଗ୍ରେସ କହିଥିଲେ ଯେ ଡଃ.ଆମ୍ବେଦକରଙ୍କପାଇଁ ସମ୍ବିଧାନ ସଭାର ଦ୍ୱାର ତ ବନ୍ଦ ଏପରିକି ଝରକା ଓ ସ୍କାଇଲାଇଟ୍ ମଧ ବନ୍ଦ, ସେ କେମିତି ଏହି ଗୃହକୁ ପ୍ରବେଶ କରିବେ ? ପୁଣି ଏହି ନେତାମାନେ ତାଙ୍କୁ ସମ୍ବିଧାନ ଚିଠା କମିଟିର ଚେୟାରମ୍ୟାନ୍ କରିବାକୁ ବାଧ୍ୟହେଲେ । ଏହାର ମୂଳରେ ରହିଛି ବାବାସାହେବଙ୍କ ସଫଳ ରାଷ୍ଟ୍ରବ୍ୟାପୀ ଆନ୍ଦୋଳନ । ବର୍ତ୍ତମାନ ଏହି ରାଷ୍ଟ୍ରବ୍ୟାପୀ ଆନ୍ଦୋନଳ ଧ୍ୱଂସ ହୋଇଯାଇଛି । ତେଣୁ ପୁନଶ୍ଚ ସେହି ରାଷ୍ଟ୍ରବ୍ୟାପୀ ଆନ୍ଦୋଳନକୁ ସଫଳକରି ଏହି ସମାଜକୁ ସ୍ୱାଧୀନତା ଆନ୍ଦୋଳନପାଇଁ ପ୍ରସ୍ତୁତ କରି ମହାସଂଗ୍ରାମ କରିପାରିଲେ ହିଁ ଆମେ ବାବାସାହେବଙ୍କ ସ୍ୱପ୍ନର ଭାରତ ତିଆରି କରିପାରିବା ।

ସୌଜନ୍ୟ : ଅଭିରାମ ମଲ୍ଲିକ୍, *ଟାଇମସ୍ ଅଫ୍ ମୂଳନିବାସୀ*, ୨୦୦୯ ।

# ପ୍ରାବନ୍ଧିକା/ପ୍ରାବନ୍ଧିକ ପରିଚୟ

୧. **ଶ୍ରୀମତୀ ଶାନ୍ତିପ୍ରିୟା ଜେମା**
ଓଡ଼ିଶାର ସ୍ୱନାମଧନ୍ୟା ସମାଜସେବିକା ଓ ସଂସ୍କାରଧର୍ମୀ ଲେଖିକା ।

୨. **ଡକ୍ଟର ହରେକୃଷ୍ଣ ମହତାବ**
ମହାନ୍ ସ୍ୱାଧିନତା ସଂଗ୍ରାମୀ, ସଂଗଠକ, ଐତିହାସିକ, ସୁ-ସାହିତ୍ୟିକ, ଭାରତର କେନ୍ଦ୍ରମନ୍ତ୍ରୀ, ବମ୍ବେର ରାଜ୍ୟପାଳ, ଓଡ଼ିଶାର ଖ୍ୟାତନାମା ମୁଖ୍ୟମନ୍ତ୍ରୀ ଓ ପ୍ରଜାତନ୍ତ୍ରର ପ୍ରତିଷ୍ଠାତା ।

୩. **ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ**
ଉତ୍କଳ ବିଶ୍ୱବିଦ୍ୟାଳୟର ଅବସରପ୍ରାପ୍ତ ରାଜନୀତିବିଜ୍ଞାନ ପ୍ରଫେସର ଓ ସୁପରିଚିତ ଆଇନଜୀବୀ ।

୪. **ଡକ୍ଟର ମାୟାଧର ମାନସିଂହ**
ଓଡ଼ିଶାର ବିଶିଷ୍ଟ କବି ଓ ଶିକ୍ଷାବିତ୍ ।

୫. **ଶ୍ରୀ ସୁରେନ୍ଦ୍ର ମହାନ୍ତି**
ଓଡ଼ିଶାର ଅପ୍ରତିଦ୍ୱନ୍ଦ୍ୱୀ କଥାକାର ଓ ସାଂସଦ ।

୬. **ଶ୍ରୀ ବଳରାଜ ମାଧୋକ**
ଭାରତୀୟ ଜନସଂଘର ସଭାପତି, ପ୍ରଜାପରିଷଦ ପାର୍ଟିର ପ୍ରତିଷ୍ଠାତା ଓ ସାଂସଦ ।

୭. **ଶ୍ରୀ ଗୋବିନ୍ଦଚନ୍ଦ୍ର ସେଠ**
ଓଡ଼ିଶାର ପୂର୍ବତନ ମନ୍ତ୍ରୀ, ସମାଜସେବୀ ଓ ସଂସ୍କାରଧର୍ମୀ ଲେଖକ ।

୮. **ଶ୍ରୀ ଯୋଗେନ୍ଦ୍ର ମହାନନ୍ଦ**
ସମାଜସେବୀ ଓ ସଂସ୍କାରଧର୍ମୀ ଲେଖକ ।

୯. **ଶ୍ରୀ ମଧୁ ଲିମାୟେ**
ସ୍ୱନାମଧନ୍ୟ ସାଂସଦ ଓ ସମାଜସେବୀ ।

୧୦. **ଡକ୍ଟର ପ୍ରବୋଧକୁମାର ମିଶ୍ର**
ସମ୍ବଲପୁର ବିଶ୍ୱବିଦ୍ୟାଳୟର ଇତିହାସର ପ୍ରଫେସର ଓ ଉତ୍ତର-ଓଡ଼ିଶା ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ।

୧୧. **ଡକ୍ଟର ଅତୁଲଚନ୍ଦ୍ର ପ୍ରଧାନ**
ଉତ୍କଳ ବିଶ୍ୱବିଦ୍ୟାଳୟର ଅବସରପ୍ରାପ୍ତ ଇତିହାସ ପ୍ରଫେସର ।

୧୨. ଡକ୍ଟର ଜୟକୃଷ୍ଣ ବରାଳ

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ରାଜନୀତିବିଜ୍ଞାନ ପ୍ରଫେସର ଓ ପୂର୍ବତନ କୁଳପତି ।

୧୩. ଡକ୍ଟର ସୂର୍ଯ୍ୟନାରାୟଣ ମିଶ୍ର

ଉତ୍କଳ ବିଶ୍ୱବିଦ୍ୟାଳୟର ଅବସରପ୍ରାପ୍ତ ରାଜନୀତିବିଜ୍ଞାନ ପ୍ରଫେସର ଓ ପ୍ରାବନ୍ଧିକ ।

୧୪. ଡକ୍ଟର ରାଧାକାନ୍ତ ନାୟକ

ଅବସରପ୍ରାପ୍ତ ଭାରତୀୟ ପ୍ରଶାସନିକ ସେବା ଅଧିକାରୀ, ସମାଜସେବୀ ଓ NISWASSର ପ୍ରତିଷ୍ଠାତା ।

୧୫. ଡକ୍ଟର ସର୍ବେଶ୍ୱର ଦାଶ

ଓଡ଼ିଶାର ଅନ୍ୟତମ ଶିକ୍ଷାବିତ୍ ଓ ପ୍ରାବନ୍ଧିକ ।

୧୬. ଡକ୍ଟର ବସନ୍ତକୁମାର ମଲ୍ଲିକ

ଉତ୍କଳ ବିଶ୍ୱବିଦ୍ୟାଳୟର ଇତିହାସ ପ୍ରଫେସର, ଆମ୍ବେଦକର ଅଧ୍ୟୟନ କେନ୍ଦ୍ରର ନିର୍ଦ୍ଦେଶକ ଓ ପ୍ରଗତିବାଦୀ ପ୍ରାବନ୍ଧିକ ।

୧୭. ଡକ୍ଟର ଧନେଶ୍ୱର ସାହୁ

ଓଡ଼ିଶାର ଉଚ୍ଚଶିକ୍ଷା ବିଭାଗର ଅବସରପ୍ରାପ୍ତ ଦର୍ଶନ ପ୍ରାଧ୍ୟାପକ, ସଂସ୍କାରଧର୍ମୀ ହେତୁବାଦୀ ସୁବକ୍ତା ଓ ସାହିତ୍ୟିକ ।

୧୮. ଶ୍ରୀ ସୌରୀବନ୍ଧୁ କର

ଓଡ଼ିଶାର ସ୍ୱନାମଧନ୍ୟ ସାହିତ୍ୟିକ ଓ ସମାଜସେବୀ ।

୧୯. ଶ୍ରୀମତୀ ସୁପ୍ରିୟା ମଲ୍ଲିକ

ଓଡ଼ିଶା ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶାଳୟର ଉପ-ନିର୍ଦ୍ଦେଶକ ଓ ସ୍ୱନାମଧନ୍ୟା ଗାଳ୍ପିକା ।

୨୦. ଡକ୍ଟର ଭଗବାନ ପ୍ରକାଶ

ଓଡ଼ିଶାର ଅନ୍ୟତମ ଶିକ୍ଷାବିତ୍ ଓ ଆଲୋଚକ ।

୨୧. ଶ୍ରୀ ପ୍ରଭାତକୁମାର ନନ୍ଦ

ପାରାଦ୍ୱୀପ ବନ୍ଦର ଟ୍ରଷ୍ଟର ପୂର୍ବତନ ସଚିବ ।

୨୨. ଶ୍ରୀ ଗୌରଚନ୍ଦ୍ର ଖମାରୀ

ଓଡ଼ିଶାର ବିଶିଷ୍ଟ ସମାଜସେବୀ ଓ କୃଷକନେତା ।

୨୩. ଡକ୍ଟର ପୂର୍ଣ୍ଣଚନ୍ଦ୍ର ମଲ୍ଲିକ

ଓଡ଼ିଶାର ଉଚ୍ଚଶିକ୍ଷା ବିଭାଗର ଅବସରପ୍ରାପ୍ତ ଓଡ଼ିଆ ଭାଷା ସାହିତ୍ୟ ପ୍ରାଧ୍ୟାପକ ଓ ସୁପରିଚିତ ନାଟ୍ୟକାର ।

୨୪. ଶ୍ରୀ ମାନସ ବେହେରା

ଓଡ଼ିଶାର ଉଚ୍ଚଶିକ୍ଷା ବିଭାଗର ରାଜନୀତିବିଜ୍ଞାନ ପ୍ରାଧାପକ ଓ ସୁପରିଚିତ ପ୍ରାବନ୍ଧିକ ।

୨୫. ଡକ୍ଟର ପ୍ରଶାନ୍ତକୁମାର ପ୍ରଧାନ

ଓଡ଼ିଶାର ଉଚ୍ଚଶିକ୍ଷା ବିଭାଗର ଇତିହାସ ପ୍ରାଧାପକ ଓ ସୁପରିଚିତ ଗବେଷକ ।

୨୬. ଶ୍ରୀ ବାଳକୃଷ୍ଣ ନାଗ

ଓଡ଼ିଶା ବିଦ୍ୟୁତ୍ ବିଭାଗର ଅବସରପ୍ରାପ୍ତ ଅର୍ଥ ପରିଚ୍ଛଳକ ।

୨୭. ଡକ୍ଟର ରମେଶଚନ୍ଦ୍ର ମଲ୍ଲିକ

ଉତ୍କଳ ବିଶ୍ୱବିଦ୍ୟାଳୟ ଶିକ୍ଷା ଗବେଷଣା ପ୍ରକଳ୍ପର ଗବେଷଣା ତତ୍ତ୍ୱାବଧାରକ ଓ ସୁପରିଚିତ ପ୍ରାବନ୍ଧିକ ।

୨୮. ଅଧ୍ୟାପକ ଗୋପବନ୍ଧୁ

ଓଡ଼ିଶା ଉଚ୍ଚଶିକ୍ଷା ବିଭାଗର ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରାଧାପକ ଓ ସମାଜସେବୀ ।

୨୯. ଶ୍ରୀ ସରୋଜକୁମାର ସୁନା

ଓଡ଼ିଶାର ସୁପରିଚିତ ସଂସ୍କାରଧର୍ମୀ ପ୍ରାବନ୍ଧିକ ।

୩୦. ଶ୍ରୀ ଅଭିରାମ ମଲ୍ଲିକ

*ଟାଇମ୍ସ ଅଫ୍ ମୂଳନିବାସୀ* ପତ୍ରିକାର ସଂପାଦକ, ସମାଜସେବୀ ଓ ସୁସଂଗଠକ ।

# ସହାୟକ ପ୍ରବନ୍ଧ ଓ ଗ୍ରନ୍ଥସୂଚୀ


କର, ସୌରୀବନ୍ଧୁ, ୨୦୦୩, *ମୂକ ଜନତାର ନାୟକ ବାବାସାହେବ ଆମ୍ବେଦକର,* ଭୁବନେଶ୍ୱର: ମହାବୀର ପ୍ରକାଶନ ।

ଜେମା, ଶାନ୍ତିପ୍ରିୟା, ୧୯୭୮, *ଡକ୍ଟର ଭୀମରାଓ ଆମ୍ବେଦକର,* କଟକ: ପୁଷ୍ପଗିରି ପ୍ରକାଶନୀ ।

ଦାଶ, ସର୍ବେଶ୍ୱର, ୨୦୧୨, *ବାବାସାହେବ ଆମ୍ବେଦକର* (ଚତୁର୍ଥ ସଂସ୍କରଣ), କଟକ: କିଶୋର ସାହିତ୍ୟ ମନ୍ଦିର ।

ପ୍ରଧାନ, ଅତୁଲଚନ୍ଦ୍ର, ୧୯୯୧, ଭାରତୀୟ ରାଜନୀତିରେ ଡଃ ଆମ୍ବେଦକରଙ୍କ ଭୂମିକା, *ଉତ୍କଳ ପ୍ରସଙ୍ଗ, ଭାଗ-୪୭, ସଂଖ୍ୟା-୧୦,* ଭୁବନେଶ୍ୱର: ଓଡ଼ିଶା ଲୋକସମ୍ପର୍କ ବିଭାଗ ।

ବେହେରା, କୃଷ୍ଣଚରଣ ଓ ରବିନ୍ଦ୍ରନାଥ ସାହୁ, ୨୦୦୭, *ଦଳିତ ଆନ୍ଦୋଳନ ଓ ଦଳିତ ସାହିତ୍ୟ* (ସଂ), କଟକ: ଓଡ଼ିଆ ଗବେଷଣା ପରିଷଦ ।

ମହାନ୍ତି, ସୁରେନ୍ଦ୍ର, ୨୦୦୮, *ପଥ ଓ ପୃଥିବୀ,* ଦ୍ୱିତୀୟ (ପୁନଃମୁଦ୍ରଣ), କଟକ: ଫ୍ରେଣ୍ଡସ୍ ପବ୍ଲିଶର୍ସ ।

ମଲିକ, ବସନ୍ତକୁମାର, ୧୯୯୦, ଭାରତରତ୍ନ ଡକ୍ଟର ଆମ୍ବେଦକର, *ଉତ୍କଳ ପ୍ରସଙ୍ଗ,* ଭାଗ-୪୬, ସଂଖ୍ୟା-୧୦, ଭୁବନେଶ୍ୱର: ଓଡ଼ିଶା ଲୋକସମ୍ପର୍କ ବିଭାଗ ।

......................, ୧୯୯୧, ଓଡ଼ିଶାର ସମୃଦ୍ଧି ଦିଗରେ ଆମ୍ବେଦକରଙ୍କ ଭୂମିକା, *ଉତ୍କଳ ପ୍ରସଙ୍ଗ,* ଭାଗ-୪୭, ସଂଖ୍ୟା-୭, ଭୁବନେଶ୍ୱର: ଓଡ଼ିଶା ଲୋକସମ୍ପର୍କ ବିଭାଗ ।

......................, ୧୯୯୧, ଆଧୁନିକ ଭାରତ ନିର୍ମାଣରେ ବାବାସାହେବ ଆମ୍ବେଦକର, *ଉତ୍କଳ ପ୍ରସଙ୍ଗ,* ଭାଗ-୪୮, ସଂଖ୍ୟା-୧, ଭୁବନେଶ୍ୱର: ଓଡ଼ିଶା ଲୋକସମ୍ପର୍କ ବିଭାଗ ।

......................, ୧୯୯୨, ଆମେ ଓ ଆମ ଗଣତନ୍ତ୍ର, *ଉତ୍କଳ ପ୍ରସଙ୍ଗ,* ଭାଗ-୪୮, ସଂଖ୍ୟା-୬, ଭୁବନେଶ୍ୱର: ଓଡ଼ିଶା ଲୋକସମ୍ପର୍କ ବିଭାଗ ।

......................, ୧୯୯୧, ବିଂଶ ଶତାବ୍ଦୀର ସୂର୍ଯ୍ୟ ଓ ଏକବିଂଶ ଶତାବ୍ଦୀର ଆଲୋକ, *ସମ୍ବାଦ* (୧୪ ଏପ୍ରିଲ), ଭୁବନେଶ୍ୱର ।

ମାନସିଂହ, ମାୟାଧର(ମୁଖ୍ୟ ସଂକଳକ), ୧୯୬୩, *ସଂକ୍ଷିପ୍ତ ଓଡ଼ିଆ ଜ୍ଞାନକୋଷ (Encyclopaedia Orissana)*, କଟକ: ମହାରାଜା ଶ୍ରୀ ରାମଚନ୍ଦ୍ର ଉତ୍କଳ ୟୁନିଭରସିଟି ପ୍ରେସ୍ ।

ମିଶ୍ର, ପ୍ରବୋଧକୁମାର, ୨୦୧୧, *ଡକ୍ଟର ବାବାସାହେବ ଭୀମରାଓ ଆମ୍ବେଦକର,* କଟକ: ବିଦ୍ୟାପୁରୀ ।

ସେଠ, ଗୋବିନ୍ଦଚନ୍ଦ୍ର, ୧୯୮୩, *ଏ ଯୁଗର ମନୁ ଡକ୍ଟର ଆମ୍ବେଦକର,* ଭୁବନେଶ୍ୱର: ଶ୍ରୀଜଗନ୍ନାଥ ପ୍ରିଣ୍ଟର୍ସ ।

**ଇଂରାଜୀ**

Chitkara, M.G.2002. *Ambedkar and Social Justice*. New Delhi: Aptt Publishing Corporations.

Iyer, Justice. V.R. Krishna. 1990. *Dr Ambedkar and the Dalit Future*. Delhi: B.R. Publishing Corporation.

Keer, Dhananjaya, 1954. *Dr. Ambedkar: Life and Mission*. Bombay: Popular Prakashan.

Kuber, W.N 1973. *Dr. Ambedkar: A Critical Study*. (First print). New Delhi: Peoples' Publishing House.

Mathew, Thomas. 1991. *Ambedkar: Reform or Revolution*. New Delhi: Segment Books.

Omvedt, Gail. 1995. *Dalit Visions*. Hyderabad: Orient Longman.

Pradhan, Atul Chandra. 1986. *The Emergence of the Depressed Classes*. Bhubaneswar: Bookland International.

Sangharakshita, 1986. *Ambedkar & Buddhism*. Glasgow: Windhorse Publications.